# ଆମ ଓଡ଼ିଆ ଆମର ଓଡ଼ିଶା

## ଭାଷଣ ପ୍ରବନ୍ଧ ଓ ସାକ୍ଷାତ୍‌କାର

ଜଗନ୍ନାଥ ପ୍ରସାଦ ଦାସ




ଭୁବନେଶ୍ୱର

# ଆମ ଓଡ଼ିଆ ଆମର ଓଡ଼ିଶା

ଲେଖକ
ଜଗନ୍ନାଥ ପ୍ରସାଦ ଦାସ

ପ୍ରକାଶନ :
ଶିକ୍ଷାସନ୍ଧାନ, ଏନ୍.ଡି-୭, ଭି.ଆଇ.ପି. ଏରିଆ
ନୂଆପଲ୍ଲୀ, ଭୁବନେଶ୍ୱର - ୭୫୧୦୧୫
ମୁଦ୍ରଣ : ଶିକ୍ଷା ପ୍ରକାଶନୀ,
ଏନ୍.ଡି-୭, ଭି.ଆଇ.ପି. ଏରିଆ
ନୂଆପଲ୍ଲୀ, ଭୁବନେଶ୍ୱର - ୭୫୧୦୧୫
ପ୍ରଥମ ପ୍ରକାଶନ : ୨୦୧୫
ମୂଲ୍ୟ : ୧୨୦/-
ଆଇଏସ୍‌ବିଏନ୍ : ୧୩:୯୭୮-୮୧-୮୭୯୮୨-୬୯-୨

---

**AMA ODIA AMARA ODISHA**

**Jagannath Prasad Das**

Published by :
Sikshasandhan, ND-7, VIP area, Nayapally
Baramunda, Bhubaneswar 751015
Printed at :
Siksha Prakashani, ND-7, VIP area, Nayapally
Baramunda, Bhubaneswar 751015
First Edition : 2015
Price : 120/-
ISBN : 13 : 978-81-87982-69-2

# ମୁଖବନ୍ଧ

ଜଣେ ଯଶସ୍ୱୀ କବି, ଗାଳ୍ପିକ ଓ ଔପନ୍ୟାସିକ ଭାବରେ ଜଗନ୍ନାଥ ପ୍ରସାଦ ଦାସ(ଜେପି) ଓଡ଼ିଶା ଓ ଓଡ଼ିଶାର ବାହାରେ ପରିଚିତ। ପାଞ୍ଚ ଦଶନ୍ଧି ଉତ୍ସର୍ଗୀକୃତ ସାଧନା ତାଙ୍କୁ ଆଣି ଦେଇଛି ଅଜସ୍ର ପାଠକୀୟ ଶ୍ରଦ୍ଧା ଓ ଆନୁଷ୍ଠାନିକ ସ୍ୱୀକୃତି। କବି, ଗାଳ୍ପିକ ଓ କଳା ଐତିହାସିକ ଭାବରେ ପ୍ରସିଦ୍ଧି ଲାଭ କରିଥିବା ଜେପିଙ୍କ ପ୍ରତିଭାର ଉଜ୍ଜ୍ୱଳ ସ୍ୱାକ୍ଷର ସାହିତ୍ୟର ଅନ୍ୟାନ୍ୟ ଅନେକ ବିଭାଗରେ ମଧ୍ୟ ଦେଖିବାକୁ ମିଳେ। ପ୍ରବନ୍ଧ, ବକ୍ତୃତା ଓ ସାକ୍ଷାତ୍‌କାର ମାଧ୍ୟମରେ ସେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିକୁ ସମୃଦ୍ଧ କରିଛନ୍ତି। ନିଜ ବିଷୟରେ କହିବାକୁ ବା ଲେଖିବାକୁ ସ୍ୱଭାବତଃ କୁଣ୍ଠିତ ଜେପି ଅଳ୍ପ କେତୋଟି ସାକ୍ଷାତ୍‌କାରରେ ଏ ବିଷୟରେ ତାଙ୍କର ଆଭିମୁଖ୍ୟ ସ୍ପଷ୍ଟ କରିଦେଇଛନ୍ତି। ଯେଉଁ କେତୋଟି ହାତଗଣତି ସାକ୍ଷାତ୍‌କାର ସେ ଦେଇଛନ୍ତି ସେଗୁଡ଼ିକରୁ ସଂସ୍କୃତି ଓ ସାହିତ୍ୟ ସଂପର୍କରେ ତାଙ୍କର ମୌଳିକ ଓ ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀ ସହିତ ପରିଚିତ ହେବାର ସୁଯୋଗ ମିଳେ।

ଜେପିଙ୍କର ଆଉ ଗୋଟିଏ ବିଶେଷତ୍ୱ ହେଲା ଯେ ସେ ବକ୍ତୃତା ଦେବାପାଇଁ ଆମନ୍ତ୍ରିତ ହେଲେ ନିଜର ବକ୍ତବ୍ୟକୁ ଲେଖି ପ୍ରଦାନ କରନ୍ତି। ଏହି ଦୃଷ୍ଟିରୁ ଦେଖିବାକୁ ଗଲେ ତାଙ୍କ ଦ୍ୱାରା ପ୍ରଦତ୍ତ ବକ୍ତୃତାଗୁଡ଼ିକ ସୁଚିନ୍ତିତ ପ୍ରବନ୍ଧଠାରୁ କୌଣସି ଗୁଣରେ ଭିନ୍ନ ନୁହଁନ୍ତି। ୨୦୦୭ ମସିହାରେ ଜେପି ବିଷୁବ ମିଳନ ଅବସରରେ ତାଙ୍କ ପ୍ରଥମ ବକ୍ତୃତା ଦେଇଥିଲେ। ଅନ୍ୟ ବକ୍ତୃତାଗୁଡ଼ିକରେ ସେ କବିତା ପାଠୋତ୍ସବ, ପରିବେଶ ଆଦି ବିଷୟଗୁଡ଼ିକ ଉପରେ ସୁଚିନ୍ତିତ ମନ୍ତବ୍ୟ ଦେଇଛନ୍ତି।

୨୦୧୪ ମସିହାରେ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ଉପରେ ଗୋଟିଏ ପ୍ରବନ୍ଧ ଏକ ପ୍ରତିଷ୍ଠିତ ଓଡ଼ିଆ ଦୈନିକ ଖବରକାଗଜରେ ପ୍ରକାଶିତ ହୁଏ। ଏହା ପରଠାରୁ ଓଡ଼ିଶାର ଭାଷା, ସାହିତ୍ୟ, ଇତିହାସ ଓ ରାଜନୀତି ଉପରେ ତାଙ୍କ ରଚିତ ଅନେକ ପ୍ରବନ୍ଧ ସମ୍ବାଦପତ୍ରରେ ପ୍ରକାଶ ପାଇ ସାରିଲାଣି। ସେଥିମଧ୍ୟରୁ କେତୋଟି ପାଠକମାନଙ୍କ ଭିତରେ ବେଶ୍ କିଛି ଆଲୋଡ଼ନ ସୃଷ୍ଟି କରିଛି।

ଶିକ୍ଷାସନ୍ଧାନ ଦ୍ୱାରା ପ୍ରକାଶିତ ଏହି ସଂକଳନରେ ଜେପିଙ୍କ ସହ କେତୋଟି ସାକ୍ଷାତ୍‌କାର ତାଙ୍କର କିଛି ବକ୍ତୃତା ଓ ପ୍ରବନ୍ଧ ସ୍ଥାନିତ ହୋଇଛି। ଆଶା ପାଠକମାନେ ତାଙ୍କ ବହୁମୁଖୀ

ପ୍ରତିଭାର ଆଉ ଏକ ଦିଗ ସଂପର୍କରେ ଏ ପୁସ୍ତକ ପଢ଼ି ଅବଗତ ହେବେ ଓ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗକୁ ତାଙ୍କର ମୂଲ୍ୟବାନ ଅବଦାନ ସଂପର୍କରେ ଧାରଣା ପାଇପାରିବେ ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଜେପିଙ୍କର ଇଂରାଜୀରେ ଲିଖିତ ପ୍ରବନ୍ଧ ଓ ବକ୍ତୃତା ଏବଂ ସେ ଦେଇଥିବା କିଛି ସାକ୍ଷାତ୍କାର Reflection on Literature and Culture ଶୀର୍ଷକ ଏକ ସଂକଳନରେ ସ୍ଥାନ ପାଇଛି । ଏହି ପୁସ୍ତକଟି ରୂପାନ୍ତର ପ୍ରକାଶନ ସଂସ୍ଥା ଦ୍ୱାରା ୨୦୦୯ ମସିହାରେ ପ୍ରକାଶିତ ହୋଇଥିଲା ।

ଯତୀନ୍ଦ୍ର କୁମାର ନାୟକ
ଇଂରାଜୀ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ

# ସୂଚୀ

ଭାଷାଣ ଓ ପ୍ରବନ୍ଧ

ସାକ୍ଷାତ୍‌କାର

# ଆମେ ଓଡ଼ିଆ ଆମର ଓଡ଼ିଆ

ବନ୍ଧୁଗଣ !

ଆଜି ସଂଧ୍ୟାରେ ଏପରି ଏକ ଉତ୍ସବରେ ଆପଣମାନଙ୍କୁ ଭେଟିବାର ସୁଯୋଗ ଦେଇଥିବାରୁ ମୁଁ ସର୍ବପ୍ରଥମେ ପ୍ରଜାତନ୍ତ୍ର ପ୍ରଚାର ସମିତିକୁ ମୋର କୃତଜ୍ଞତା ଜଣାଉଛି ।

ଆଜିକାଲି ଭଳି ଯେତେବେଳେ ଓଡ଼ିଶାରେ ଏତେ ବେଶି ସାହିତ୍ୟ ଅନୁଷ୍ଠାନ ନଥିଲା, ଅଥବା ମାଳ ମାଳ ଖବରକାଗଜ ଓ ପତ୍ରିକା ପ୍ରକାଶ ପାଉନଥିଲା, ଡକ୍ଟର ମହତାବଙ୍କ ଦିଗଦର୍ଶନରେ ପ୍ରଜାତନ୍ତ୍ର ପ୍ରଚାର ସମିତି ଥିଲା ଓଡ଼ିଆ ସଂସ୍କୃତିର କେନ୍ଦ୍ରସ୍ଥଳ । ପ୍ରଜାତନ୍ତ୍ରର ସାହିତ୍ୟ ପୃଷ୍ଠା ଓ ଝଙ୍କାର ଥିଲେ ଓଡ଼ିଆ ସାହିତ୍ୟର ଉତ୍କର୍ଷର ମାପକାଠି । ଝଙ୍କାରରେ ଲେଖା ପ୍ରକାଶ ପାଇଥିବା ସେତେବେଳେ ଓଡ଼ିଆ ସାହିତ୍ୟ ଜଗତରେ ସ୍ୱୀକୃତି ପାଇବା ବୁଝାଉଥିଲା । ଆମ ସମୟର ଅଧିକାଂଶ ଲେଖକ ଏହି ପ୍ରଜାତନ୍ତ୍ର ପ୍ରଚାର ସମିତିର ପରିସରରୁ ବାହାରିଥିଲେ ।

ପ୍ରଜାତନ୍ତ୍ର ଓ ଝଙ୍କାର ସହିତ ମୋର ବ୍ୟକ୍ତିଗତ ସଂପର୍କ ଦୀର୍ଘ ପଚାଶ ବର୍ଷରୁ ଉର୍ଦ୍ଧ୍ୱ । ପ୍ରଜାତନ୍ତ୍ର ବାର୍ଷିକ ବିଷୁବ ମିଳନ ଉତ୍ସବ ସବୁବେଳେ ଓଡ଼ିଶାର ପ୍ରମୁଖ ସାହିତ୍ୟିକ ସଭା ଥିଲା ଏବଂ ୧୯୫୨ରେ କଲେଜ ଛାତ୍ର ଭାବରେ ସେ ବର୍ଷର ବିଷୁବ ମିଳନରେ ଯୋଗ ଦେଇ ସେଥିରେ ଭାଗ ନେବାର ମୋର ମନେ ଅଛି । ଓଡ଼ିଶା ବାହାରକୁ ଯିବା ପର୍ଯ୍ୟନ୍ତ ମୁଁ ନିୟମିତ ଏହି ସଭାରେ ଯୋଗ ଦେଉଥିଲି । ଏତେ ବର୍ଷ ପରେ ସେହି ବିଷୁବ ମିଳନରେ ଯୋଗ ଦେବା ମୁଁ ଆନନ୍ଦ ଓ ଗର୍ବର ବିଷୟ ବୋଲି ମନେ କରୁଛି ।

ଆପଣମାନେ ଏହି ଉତ୍ସବରେ ବିଭିନ୍ନ ବିଦ୍ୱାନ ବକ୍ତାମାନଙ୍କ ପାଖରୁ ଅନେକ ପାଣ୍ଡିତ୍ୟପୂର୍ଣ୍ଣ ଭାଷଣ ଶୁଣିବେ । ଓଡ଼ିଆ ଭାଷା ଓ ସାହିତ୍ୟ ବା ଅନ୍ୟ କୌଣସି ବିଷୟରେ ମୋର କୌଣସି ବିଧିବଦ୍ଧ ଅଧୟନ ବା ଗବେଷଣା ନାହିଁ । ତେଣୁ, ମୋର ଏ ବିଷୟରେ ଯାହା କିଛି ସାମାନ୍ୟ ଚିନ୍ତା ବା ଧାରଣା ଅଛି, ତାକୁ ମୁଁ ଅତି ସାଧାରଣ ଭାବରେ ଆପଣମାନଙ୍କୁ କହିବି ।

ଆମେ ଓଡ଼ିଆ ଲୋକମାନେ ବୋଧହୁଏ ସ୍ୱଭାବତଃ ନୈରାଶ୍ୟବାଦୀ । ସେଥିପାଇଁ ଆମମାନଙ୍କ ଚିନ୍ତାଧାରାର ଗୋଟିଏ କ୍ରମାଗତ ମୂଳ ଭାବ ହେଲା ଯେ ଆମର ଆଗରୁ ସବୁ କିଛି ଭଲ ଥିଲା ଏବଂ ବର୍ତ୍ତମାନ ସବୁକିଛି ଭ୍ରଷ୍ଟ ଓ ନିକୃଷ୍ଟ । ଅନ୍ୟ ଭାବଟି ହେଲା, ପୂର୍ବ ଗୌରବ ଫେରି ପାଇବା ପାଇଁ ଆମକୁ କିଛି କରିବାକୁ ହେବ । ସଂକ୍ଷେପରେ କହିଲେ, ଗୋଟିଏ ଧାରା ହେଲା 'କି ଥିଲା ଏ ରାଜ୍ୟ କି ହୋଇଛି ଆଜ' ଏବଂ ଅନ୍ୟଟି ହେଲା 'ଉଠ କଙ୍କାଳ, ଜାଗ ଦୁର୍ବଳ' । ଯାହା ଯେତେ ପୁରୁଣା ତା ସେତେ ଉତ୍କୃଷ୍ଟ – ଏ ଭଳି ଏକ

ମତରେ ବିଶ୍ୱାସ କରୁଥିବାରୁ ଆମର ଗବେଷକମାନେ କିଛି ଚିତ୍ରକଳା ଓ ସାହିତ୍ୟକୁ ସେଗୁଡ଼ିକ ପ୍ରକୃତରେ ଅଙ୍କା ଓ ଲେଖା ହୋଇଥିବା ସମୟରୁ ଅନେକ ପୂର୍ବରୁ ତିଆରି ହୋଇଥିବାର ପ୍ରମାଣ କରିବାକୁ ଚେଷ୍ଟା କରିଥାନ୍ତି।

ଏହି ମନୋଭାବ ନେଇ କେହି କେହି କହୁଛନ୍ତି ଯେ ଓଡ଼ିଆ ଭାଷା କ୍ରମେ କ୍ରମେ ମରି ମରି ଯାଉଛି ଯେ ଭଳି ପୃଥିବୀର ୩୫୦୦ଟି ଭାଷା ଭାଷାବିଦ୍‌ମାନଙ୍କ ମତରେ ମୃତ୍ୟୁମୁଖୀ। ଏହି ମୃତ୍ୟୁମୁଖୀ ଭାଷାମାନଙ୍କ ସହିତ ଓଡ଼ିଆ ଭାଷାକୁ ଯୋଡ଼ିବାର କୌଣସି ଯୁକ୍ତି ନାହିଁ। ଓଡ଼ିଆ ଭାଷା ମରଣମୁଖକୁ ଯାଉଥିବାର ପ୍ରମାଣ ସ୍ୱରୂପ କୁହାଯାଉଛି ଯେ ଓଡ଼ିଆ ଲୋକ ବର୍ତ୍ତମାନ ସେମାନଙ୍କ ବାହାଘର ନିମନ୍ତ୍ରଣ ପତ୍ର ଇଂରେଜୀରେ ଲେଖୁଛନ୍ତି, ଓ ଓଡ଼ିଆ ପିଲାମାନେ ଘରେ ବାପା ମା'ଙ୍କୁ ଡାଡି ଓ ମମ୍ମି ବୋଲି ଡାକୁଛନ୍ତି। ଏ ଭଳି ଗୋଟିଏ ସିଦ୍ଧାନ୍ତ ସେତିକି ଭ୍ରମାତ୍ମକ ଯେତିକି ସଂଘ ପରିବାରର ଆଶଙ୍କା ଯେ ବଜାରରେ Valentine's Day Card ବିକ୍ରି ହେଲେ ଭାରତୀୟ ସଂସ୍କୃତି ନଷ୍ଟଭ୍ରଷ୍ଟ ହୋଇଯିବ। ଓଡ଼ିଆ ଭାଷା ଅଢ଼େଇ ଦିନିଆ ଛଇ ନୁହେଁ, ତେଣୁ ଚାରିଟି ଇଂରେଜ ଶବ୍ଦ ଆସି ତାକୁ ଶେଷ କରିଦେବାର କୌଣସି ଆଶଙ୍କା ନାହିଁ। ନିମନ୍ତ୍ରଣ ପତ୍ର ଓ ବାପାମାଙ୍କୁ କିପରି ଡାକିବ, ଏ ସବୁ ସାମାଜିକ ଚଳଣି, ଭାଷା ସହିତ ଏହାର କୌଣସି ସମ୍ବନ୍ଧ ନାହିଁ। ଆମେ ସମାଜର ଉଚ୍ଚବର୍ଗର ଲୋକମାନେ ସବୁବେଳେ ଇଂରେଜୀ ନିମନ୍ତ୍ରଣ ପତ୍ର ଓ ଡାଡି ମମ୍ମି ସଂସ୍କୃତିରେ ଥିଲୁ। ସମାଜ ତତ୍ତ୍ୱ କହୁଥିବା ବ୍ରାହ୍ମଣୀକରଣ ପ୍ରକ୍ରିୟାରେ ବର୍ତ୍ତମାନ ତଥାକଥିତ ନିମ୍ନବର୍ଗର ଲୋକ ଏହା ବ୍ୟବହାର କରୁଥିବାରୁ ସେ କଥା ଆମ ପାଇଁ ଦୃଷ୍ଟିକଟୁ ହେଉଛି। ଆମେ ଚାହୁଁ ଯେ ଆମେ କିଛି ଏଲିଟ୍ ବା ବିଶିଷ୍ଟ ବର୍ଗର ଲୋକ ହିଁ ରାଣୀଙ୍କ ଇଂରେଜୀ ବ୍ୟବହାର କରିବୁ। ଅନ୍ୟ ଭାବରେ କହିଲେ, ଆମେ ଚାହୁଁ କେବଳ ଆମେ କିଛି ଲୋକ କୋକ୍ ଓ ପେପ୍‌ସି ପିଇବୁ, ଅନ୍ୟମାନେ କାଞ୍ଜିପାଣି ଓ ତୋରାଣି ପିଇବେ।

ଆଉ ଗୋଟିଏ ଉଦାହରଣ ଦିଆଯାଉଛି ଯେ ଆମର ପିଲାମାନେ ଆଉ ଓଡ଼ିଶାର ଗଛପତ୍ର ଜନ୍ତୁଜନ୍ତୁ ଓ ଓଡ଼ିଆ ପିଠାପଣା ବିଷୟରେ ଜାଣୁନାହାନ୍ତି ଏବଂ ଏ ଶବ୍ଦ ସବୁ କ୍ରମେ କ୍ରମେ ଓଡ଼ିଆ ଅଭିଧାନରୁ ଲୋପ ପାଇଯିବ। ପିଲାମାନେ କିଛି ଶବ୍ଦ ଜାଣୁ ନ ଥିବାର ସରଳ କାରଣ ହେଲା ଯେ ସେମାନେ ଏ ସବୁ ଜିନିଷ ଦେଖୁନାହାନ୍ତି ବା ଖାଉ ନାହାନ୍ତି। ତା ବଦଳରେ ସେମାନେ ଅନ୍ୟ ଜିନିଷ ଦେଖୁଛନ୍ତି, ଜାଣୁଛନ୍ତି ଓ ଖାଉଛନ୍ତି। ଶହେ ବର୍ଷ ତଳେ ପିଲାମାନେ ଯାହା ଜାଣୁଥିଲେ, ପଚାଶ ବର୍ଷ ତଳେ ତା'ଠାରୁ ଭିନ୍ନ ବିଷୟରେ ଜାଣୁଥିଲେ ଏବଂ ଆଜିର ପିଲାମାନେ ଆହୁରି ଭିନ୍ନ ବିଷୟରେ ଜାଣୁଛନ୍ତି। ସେହି ଅନୁସାରେ ଶବ୍ଦର ସମ୍ଭାର ମଧ୍ୟ ବଦଳୁଛି। ଏହା ହେଉଛି ପ୍ରଗତିର ଲକ୍ଷଣ, ଦୁଃଖ କରିବାର କାରଣ ନୁହେଁ।

ଭାଷାର ଦୁର୍ଦ୍ଦଶାର ଆଉ ଗୋଟିଏ ଉଦାହରଣ ଦିଆଯାଉଛି ଓଡ଼ିଆ ଭାଷାରେ ଅନ୍ୟ ଭାଷା, ବିଶେଷରେ ହିନ୍ଦୀର ଅନୁପ୍ରବେଶ। ଏ କଥା ସତ ଯେ ଆମର ଦୈନନ୍ଦିନ କଥାବାର୍ତ୍ତାରେ ହିନ୍ଦୀ ଫିଲ୍ମ ମାଧ୍ୟମରେ ଅନେକ ହିନ୍ଦୀ ଶବ୍ଦ ବ୍ୟବହୃତ ହେଉଛି। ଏକ ସମୟରେ ଓଡ଼ିଶାରେ ସମସ୍ତେ ଚା, ସିଗାରେଟ ଓ ମଦ ଖାଇବା କହୁଥିଲେ, ଆଜିକାଲି ଅନେକେ ଚା, ସିଗାରେଟ

ଓ ମଦ ପିଉଛନ୍ତି। ଖବରକାଗଜ ଓଲଟାଇଲେ ଆପଣ ଏ ଭଳି ପ୍ରୟୋଗ ଦେଖିବେ : ଏହି ସହାୟତା ଓଟ ମୁହଁରେ ଜୀରା ସଦୃଶ, ଶ୍ରୀମତୀ ଗ୍ଲାଡିସ୍ ତାଙ୍କ ସ୍ୱାମୀଙ୍କ ଅଧୁରା ସ୍ୱପ୍ନକୁ ସାକାର କଲେ, ସରକାରଙ୍କର ନୂତନ ସୁବିଧା ସୃଷ୍ଟି କରିବାର ଔକାତ ନାହିଁ, ସଚ୍ଚା ପ୍ରେମ ନିଭାଇଲେ ପ୍ରେମୀ ଯୁଗଳ, ବିଶେଷଜ୍ଞମାନେ ଏହାର ପର୍ଦାଫାସ କରିଛନ୍ତି। ଅନେକେ ଏ ପ୍ରକାର ବ୍ୟବହାରକୁ ଆତଙ୍କର ସହିତ ଦେଖୁଛନ୍ତି। ଅନେକ ଦିନ ତଳେ ଆମମାନଙ୍କର ଏପରି ଏକ ଭୟ ଥିଲା ବଙ୍ଗଳା ଭାଷା ସଂପର୍କରେ। ଅନ୍ତତଃ ଜଣେ ଓଡ଼ିଆ ଲେଖକ କହିଥିଲେ ସେ ବଙ୍ଗଳା ପଢ଼ନ୍ତି ନାହିଁ କାଳେ ସେ ତା ଦ୍ୱାରା ପ୍ରଭାବିତ ହୋଇଯିବେ ବୋଲି। ମୋ ମତରେ ଏ ଭଳି ଭିନ୍ନ ଭାଷାରୁ ଆସୁଥିବା ଶବ୍ଦର ବ୍ୟବହାରରେ ଆମର ଭୟ ପାଇବା କଥା ନୁହେଁ, ଖୁସି ହେବା କଥା। ଯେଉଁ ଭାଷା ଯେତେ ସହଜରେ ଅନ୍ୟ ଭାଷାର ଶବ୍ଦକୁ ନିଜର କରିପାରେ, ତାକୁ ସେତିକି ପ୍ରଗତିଶୀଳ ଓ ଉନ୍ନତ ଭାବିବା ଉଚିତ।

ଭାଷାର ନିୟମ ହେଲା ଯେ ତାହା ସମୟ କ୍ରମେ ବଦଳିବ। ଫକୀର ମୋହନ ସେନାପତି ଯେଉଁ ପ୍ରକାର ଶବ୍ଦ ବ୍ୟବହାର କରୁଥିଲେ ଓ ଯେଉଁ ଭାଷାରେ ଲେଖୁଥିଲେ, ବର୍ତ୍ତମାନ ଓଡ଼ିଆରେ ସେ ପ୍ରକାର ବ୍ୟବହାର ହେଉନାହିଁ। ଏପରିକି ଛମାଣ ଆଠଗୁଣ୍ଠ ଲେଖା ହେବାର ତିରିଶ ବର୍ଷ ଭିତରେ ଓଡ଼ିଆ ଭାଷା ଏତେ ବଦଳି ଯାଇଥିଲା ଯେ ପାଠକମାନଙ୍କର ସୁବିଧା ପାଇଁ ଏହି ଉପନ୍ୟାସର ନୂଆ ସଂସ୍କରଣରେ ବୁଝି ନ ହେବା ଶବ୍ଦମାନଙ୍କର ଏକ glossary ଯୋଡ଼ି ସେ ଶବ୍ଦମାନଙ୍କର ଅର୍ଥ ଦିଆଯାଇଥିଲା। ଏହି ଶବ୍ଦ ତାଲିକାରେ ପ୍ରାୟ ସାତଶହ ଶବ୍ଦ ଥିଲା। ଅର୍ଥାତ୍ ଫକୀରମୋହନଙ୍କ ପରବର୍ତ୍ତୀ ପୀଢ଼ୀର ପାଠକ ଏହି ଉପନ୍ୟାସର ସାତ ଶହ ଶବ୍ଦ ସହିତ ପରିଚିତ ନଥିଲେ।

ଆମମାନଙ୍କୁ ଆଉ ଗୋଟିଏ ଖଣ୍ଡିଆଭୂତର ଆତଙ୍କ ଦେଖା ଦେଉଛି : ସେଇଟି ହେଲା ଇଂରେଜୀ ଶିକ୍ଷାର ପ୍ରସାର। ପିଲାମାନଙ୍କୁ କେଉଁ ବୟସରୁ ଇଂରେଜୀ ପଢ଼ାଇବା ଉଚିତ ସେ ବିଷୟରେ ମତଭେଦ ଥିଲେ ମଧ୍ୟ କେହି ଆଉ ଇଂରେଜୀ ଶିକ୍ଷାର ବିରୋଧୀ ନୁହନ୍ତି। ଅନେକ ପ୍ରଦେଶ, ଯେଉଁମାନେ ପିଲାଙ୍କ ସ୍କୁଲରୁ ଇଂରେଜୀକୁ ବିଦାୟ କରିଦେଇଥିଲେ, ସେମାନେ ମଧ୍ୟ ତାକୁ ପାଛୋଟି ଆଣିଲେଣି। ଏଥିରେ ମଧ୍ୟ ଭୟଭୀତ ହେବାର କାରଣ ନାହିଁ। ଇଂରେଜୀ ଆମର ହୃଦୟର ଭାଷା ନୁହେଁ ଓ ହୋଇ ନ ପାରେ। ଅଧିକାଂଶଙ୍କ ପାଇଁ ଏହା ଆମର ସାହିତ୍ୟର ଭାଷା ମଧ୍ୟ ନୁହେଁ। ତା ହେଉଛି ଆମର ହାଲୁକା କଥାବାର୍ତ୍ତା, କିଣାବିକା, ବାଣିଜ୍ୟବେପାର ଓ ଚାକିରି ପାଇବାର ଭାଷା। ଆମ ପାଇଁ ଏଇଟି ଗୋଟିଏ ଭାଷା ନୁହେଁ ଏଇଟି ଗୋଟିଏ tool ବା କାମ କରିବାର ଉପକରଣ, ଏଇଟି ଗୋଟିଏ skill ବା କାରିଗରି କୁଶଳତା। ଭାଷାର ଏ ଭଳି ବ୍ୟବହାର ନୂଆ କଥା ନୁହେଁ। ଇଂରେଜୀ ପୂର୍ବରୁ ଭାରତୀୟମାନେ ଅଢ଼େଇ ଶହ ବର୍ଷ କାଳ ପର୍ସିଆନ୍ ପଢୁଥିଲେ। ଭାଷା ଓ ସାହିତ୍ୟରେ ମଧ୍ୟ ପର୍ସିଆନ ଶବ୍ଦ ପଶୁଥିଲା, ଯାହାର ଅନ୍ୟତମ ଉଦାହରଣ ଛ ମାଣ ଆଠଗୁଣ୍ଠ। ତା ପୂର୍ବରୁ ଭାରତରେ ସଂସ୍କୃତର ମଧ୍ୟ ଠିକ୍ ଏହିପରି ରାଜକୀୟ ବ୍ୟବହାର ଥିଲା। କାଳିଦାସଙ୍କ

ନାଟକରେ କେବଳ ରାଜା, ବ୍ରାହ୍ମଣ ଉଚ୍ଚବର୍ଗ ଲୋକଙ୍କର ସଂଳାପ ଥିଲା ସଂସ୍କୃତରେ, ସ୍ତ୍ରୀ ଓ ନୀଚବର୍ଗର ଚରିତ୍ରମାନଙ୍କର ସଂଳାପ ଥିଲା ଅପଭ୍ରଂଶ ଓ ପ୍ରାକୃତରେ। ସେତେବେଳେ ଯଦି ବିବାହ ନିମନ୍ତ୍ରଣ ପଠାଇବାର ପ୍ରଥା ଥାନ୍ତା, ତେବେ କେବଳ ରାଜପ୍ରାସାଦରୁ ବାହାରୁଥିବା ପତ୍ର ହିଁ ସଂସ୍କୃତରେ ଲେଖା ହୋଇଥାନ୍ତା, ଏବଂ ଅନ୍ୟ କେହି ସଂସ୍କୃତ ନିମନ୍ତ୍ରଣ ପତ୍ର ପଠାଇଲେ ତାହା ନିଶ୍ଚୟ ରାଜଦ୍ରୋହ ବୋଲି ଦଣ୍ଡନୀୟ ହୋଇଥାନ୍ତା !

ଯେଉଁମାନେ ଇଂରେଜୀ ପଢ଼ିବେ ସେମାନେ ଯେ ଓଡ଼ିଆ ପଢ଼ିବେ ନାହିଁ, ଏ ଭଳି କୌଣସି ନିୟମ ନାହିଁ। ଅନ୍ୟ ପ୍ରଦେଶମାନଙ୍କରେ ମଧ୍ୟ ଇଂରେଜୀ ଶିକ୍ଷା ପ୍ରତି ପ୍ରାଧାନ୍ୟ ଦିଆଯାଉଛି, କିନ୍ତୁ ସେଠାରେ ପିଲାମାନେ ଇଂରେଜୀ ସହିତ ନିଜ ଭାଷା କହୁଛନ୍ତି, ଶିଖୁଛନ୍ତି, ପଢୁଛନ୍ତି। ପିଲାମାନଙ୍କୁ ନିଜ ଭାଷା ପ୍ରତି ଆକୃଷ୍ଟ କରିବାର ଉପାୟ ହେଲା ଭଲ ଶିଶୁ ସାହିତ୍ୟ। ଯଦି ପଡ଼ୋଶୀ ବଙ୍ଗଳାର ପିଲାମାନେ ଇଂରେଜୀ ସହିତ ବଙ୍ଗଳା ବି ପଢୁଛନ୍ତି, ତାର ଏକ ମୁଖ୍ୟ କାରଣ ଆବୋଲ ତାବୋଲ। ଇଂରେଜୀ ପଢୁଆ ବଙ୍ଗାଳୀମାନଙ୍କୁ ନିଜ ଭାଷାରୁ ଦୂରେଇ ନ ଯିବାର ପ୍ରଧାନ ଯୁକ୍ତି ହେଉଛନ୍ତି ରବୀନ୍ଦ୍ରନାଥ।

ସେଥିପାଇଁ ଭାଷାକୁ ବଞ୍ଚାଇ ରହିବାର ଶ୍ରେଷ୍ଠ ଉପାୟ ହେଉଛି ଭଲ ସାହିତ୍ୟ ତିଆରି କରିବା। ଯେଉଁ ଭାଷାଭାଷୀ ଲୋକସଂଖ୍ୟା କମ୍ ଓ ଯେଉଁ ଭାଷାରେ ସାହିତ୍ୟ ନାହିଁ, ତା'ର ନିଶ୍ଚିହ୍ନ ହୋଇଯିବାର ସମ୍ଭାବନା ଥାଇପାରେ, କିନ୍ତୁ ଚାରି କୋଟି ଲୋକ କହୁଥିବା ଭାଷା ଏବଂ ଯେଉଁ ଭାଷାରେ ଜଗନ୍ନାଥ ଦାସଙ୍କ ଭାଗବତ, ସାରଳା ଦାସଙ୍କ ମହାଭାରତ, ବଳରାମ ଦାସଙ୍କ ଲକ୍ଷ୍ମୀପୁରାଣରୁ ଆରମ୍ଭ କରି ସଚ୍ଚି ରାଉତରାୟ ଓ ଗୋପୀନାଥ ମହାନ୍ତିଙ୍କ ଲେଖାମାନ ଅଛି, କେହି ସେ ଭାଷାର ତିଳତର୍ପଣ କରି obituary ଲେଖିବାର ଦୁଃସାହସ କରିବ ନାହିଁ।

ଓଡ଼ିଆ ଭାଷାର ଭବିଷ୍ୟତ ଭଳି ଓଡ଼ିଆ ସାହିତ୍ୟର ଭବିଷ୍ୟତ ବିଷୟରେ ମଧ୍ୟ ସନ୍ଦେହ ପ୍ରକାଶ ପାଉଛି, କାରଣ ଓଡ଼ିଶାରେ ବିରାଟ ପାଠକ ସଂପ୍ରଦାୟ ନାହାନ୍ତି। ଓଡ଼ିଶାରେ ବୋଧହୁଏ ସବୁ ସମୟରେ କମ ପାଠକ ଥିଲେ। ଅବଶ୍ୟ ଏକ ସମୟରେ – ସପ୍ତଦଶ ଅଷ୍ଟାଦଶ ଶତାବ୍ଦୀରେ– ଭାଗବତ ଯୋଗୁ ଓଡ଼ିଶାରେ ଏକ ବ୍ୟାପକ ପାଠକ ଗୋଷ୍ଠୀ ଥିଲେ, ଯାହା ବଙ୍ଗଳାରେ ନଥିଲେ। ସେତେବେଳେ ଓଡ଼ିଶାରେ ପଢ଼ିପାରୁଥିବା ସ୍ତ୍ରୀ ଲୋକଙ୍କ ସଂଖ୍ୟା ବଙ୍ଗଳାଠାରୁ ଅନେକ ବେଶି ଥିଲା।

କେତେ ବର୍ଷ ଧରି ଦେଶର ପ୍ରକାଶନ କ୍ଷେତ୍ରରେ ଯେଉଁ ଅବ୍ୟବସ୍ଥା ଓ ମାନ୍ଦା ଭାବ ଦେଖାଯାଇଛି, ତା'ର କାରଣ ହେଲା ଯେ ବହି ସବୁ ଛପା ହେଉଛି କେବଳ ଜଣେ ପାଠକଙ୍କ ପାଇଁ । ସେ ପାଠକ ହେଲେ ରାଜା ରାମମୋହନ ରାୟ। ଏହି ଭଦ୍ରବ୍ୟକ୍ତିଙ୍କ ଯୋଗୁ ବହି ସବୁର ଦାମ ଆଉ ସାଧାରଣ ପାଠକମାନଙ୍କ ସାମର୍ଥ୍ୟ ଭିତରେ ରହିଲା ନାହିଁ, ଏବଂ ବହି ବିକ୍ରେତାମାନେ ପାଠକମାନଙ୍କ ପାଖକୁ ନଯାଇ ପାଇକାରୀ ଓ ଥୋକ ବିକ୍ରିରେ ଆଗ୍ରହୀ ହେଲେ। ଅତ୍ୟନ୍ତ ଆନନ୍ଦର ବିଷୟ ଯେ ଓଡ଼ିଶାରେ ବର୍ତ୍ତମାନ ରାଜା ରାମମୋହନଙ୍କ ରାଜତ୍ୱର ଉପଯୁକ୍ତ ଜବାବ ବାହାରିଲାଣି। ତା ହେଉଛି ସାରା ଓଡ଼ିଶାରେ ପୁସ୍ତକମେଳାର

ସଂସ୍କୃତି। ଆଗରୁ କମିଟି ପସନ୍ଦ କରିଥିବା ବହି ଚଢ଼ା ଦାମରେ ଥିବା-ନ-ଥିବା ତଥାକଥିତ ପାଠାଗାରମାନଙ୍କର ଆଲମାରି ଥାକକୁ ଯୋଗାଣ ହେବା ପରିବର୍ତ୍ତେ ବର୍ତ୍ତମାନ ପାଠକମାନେ ଚାହୁଁଥିବା ବହି ସେମାନେ ଦେଇପାରିବା ଦାମରେ ସିଧାସଳଖ ସେମାନଙ୍କ ହାତରେ ପହଞ୍ଚିପାରୁଛି। ବର୍ତ୍ତମାନ ବହି ଛପା ହେଉଚି ପୁସ୍ତକମେଳାର ପାଠକମାନଙ୍କୁ ଆଖି ଆଗରେ ରଖି। ଦେଖିଲେ ହିଁ ଜାଣି ହେବ କେଉଁ ବହି ରାଜାଙ୍କ ଆଲମାରି ପାଇଁ ଏବଂ କେଉଁଟି ପ୍ରଜାଙ୍କ ପଢ଼ା ଟେବୁଲ ପାଇଁ। ପୁସ୍ତକମେଳା ଓଡ଼ିଆ ସାହିତ୍ୟର ଭବିଷ୍ୟତ ପାଇଁ ଏକ ଅଭିନନ୍ଦନୀୟ ପଦକ୍ଷେପ।

ଏଇ ସବୁ ଦୃଷ୍ଟିରୁ ଦେଖିଲେ ମୁଁ କହିବି ଯେ ଆମର ସାହିତ୍ୟ ବେଶ ଭଲରେ ଅଛି ଏବଂ ଆମର ଭାଷା ଓ ସାହିତ୍ୟ ମରିଯାଉଛନ୍ତି ବୋଲି କହି କାନ୍ଦ ବୋବାଳି କରିବାର କୌଣସି ଆବଶ୍ୟକତା ନାହିଁ।

ଏ ଭଳି ସଭା ସମିତିରେ ଅନେକ ସମୟରେ ପ୍ରଶ୍ନ କରାଯାଇଥାଏ, ଓଡ଼ିଆ ସାହିତ୍ୟର ଉନ୍ନତି ପାଇଁ କ'ଣ କରାଯିବା ଉଚିତ। ମତେ ଏ ଭଳି ପ୍ରଶ୍ନ କରାଗଲେ ମୋର ଉତ୍ତର ହେବ: ଯୁବକ ଓ ତରୁଣ ସାହିତ୍ୟକାରଙ୍କ ପ୍ରୋତ୍ସାହିତ କରାଯାଉ ଓ ସେମାନଙ୍କୁ ସେମାନଙ୍କର ମାନ୍ୟ ଦିଆଯାଉ। ବର୍ତ୍ତମାନ ଭାରତର ଜନସଂଖ୍ୟାର ସତୁରି ପ୍ରତିଶତରୁ ବେଶି ଲୋକଙ୍କର ବୟସ ୩୫ ବର୍ଷରୁ କମ୍। ସେଇମାନଙ୍କର ପ୍ରତିନିଧି ଆଗକୁ ଆସନ୍ତୁ । କ୍ରିକେଟ ଭଳି ସାହିତ୍ୟରେ ମଧ୍ୟ ପୁରୁଣା ଖେଳାଳି ଯାଇ ନୂଆ ଖେଳାଳି ଆସନ୍ତୁ।(ଏଠାରେ ମୁଁ ଖେଳାଳି ଶବ୍ଦ ଉଭୟ ଖେଳ ଓ ସାହିତ୍ୟ ପାଇଁ ଭାବିଚିନ୍ତି ବ୍ୟବହାର କରୁଛି।) ପତ୍ରପତ୍ରିକାରେ ସେମାନଙ୍କୁ ସତୁରି ପ୍ରତିଶତରୁ ଅଧିକ ସ୍ଥାନ ଦିଆଯାଉ। ଯୁବ ଲେଖକ ଲେଖିକାମାନେ ହିଁ ସାହିତ୍ୟକୁ ନୂଆ ଭାବ, ଭାଷା, ଚିନ୍ତାଧାରା, ବିଚାର ବିବେଚନା ଓ ନୂଆ ଆଙ୍ଗିକ ଦେଇ ପାରିବେ।

ତା ହେଲେ ପ୍ରଶ୍ନ ଉଠିବ, ବିଚରା ବୟସ୍କ ଲେଖକମାନେ କୁଆଡ଼େ ଯିବେ। (ମୁଁ ଏଠାରେ ଭାବିଚିନ୍ତି ବରିଷ୍ଠ ବଦଳରେ ବୟସ୍କ ଶବ୍ଦ ବ୍ୟବହାର କରୁଛି।) ସୌଭାଗ୍ୟବଶତଃ ସେମାନଙ୍କ ପାଇଁ ସାହିତ୍ୟରେ ଅନେକ ମର୍ଯ୍ୟାଦାପୂର୍ଣ୍ଣ କାମ ରହିଛି। ବୟସ୍କ ଲେଖକମାନେ ନିଜର ନୀରସ ଆତ୍ମଜୀବନ ଚରିତ ଲେଖିବେ ଓ ଧାର୍ମିକ ପ୍ରବଚନ ଦେବେ। ବୟସ୍କ ଲେଖକମାନେ ପୁସ୍ତକର ଲୋକାର୍ପଣ କରିବେ। ସେମାନେ ସାହିତ୍ୟିକ ଅନୁଷ୍ଠାନମାନଙ୍କରେ ପୁରସ୍କାର ବିତରଣୀ ଇତ୍ୟାଦିରେ ପୌରୋହିତ୍ୟ କରିବେ। ଆଉ ମଧ୍ୟ ସେମାନେ ଯାଇ ସାହିତ୍ୟ ଉତ୍ସବକୁ ଉଦ୍‌ଘାଟନ କରିବେ।

ଏତିକି କହି ମୁଁ ଆଜିର ଏହି ବିଷୁବ ମିଳନ ଉତ୍ସବକୁ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରୁଛି। ଧନ୍ୟବାଦ।

*(ପ୍ରଜାତନ୍ତ୍ର ପ୍ରଚାର ସମିତି ବିଷୁବ ମିଳନ ୧୩ ଏପ୍ରିଲ ୨୦୦୭ରେ ପ୍ରଦତ୍ତ ଭାଷଣ)*

# ଓଡ଼ିଆ ଅନୁବାଦ : ଆଦାନ-ପ୍ରଦାନ

ସାହିତ୍ୟ ଅନୁବାଦର ଏକ ସାଧାରଣ ନିୟମ ହେଉଛି ଏପରି : କୌଣସି ଭାଷାର ପାଠକ ଓ ପ୍ରକାଶକ(କିମ୍ବା କେହି ଅନୁବାଦକ ବ୍ୟକ୍ତିଗତ ରୁଚି ଯୋଗୁ) ଆଗ୍ରହୀ ହେଲେ ସେହି ଭାଷାଭାଷୀ ଅନୁବାଦକ ଅନ୍ୟ ଭାଷାର ସାହିତ୍ୟକୁ ଅନୁବାଦ କରିଥାନ୍ତି। ଏହି ନିୟମ ଅନୁଯାୟୀ ଓଡ଼ିଆ ଅନୁବାଦକ ବଙ୍ଗଳା, ହିନ୍ଦୀ, ଇଂରେଜୀ ଓ ଅନ୍ୟ ଭାଷାର ବହି ଓଡ଼ିଆକୁ ଅନୁବାଦ କରିଥାନ୍ତି। ଏହି ପ୍ରକ୍ରିୟାରେ ଅନ୍ୟ ଭାଷାମାନଙ୍କର ଜଣାଶୁଣା, ଜନପ୍ରିୟ ଓ ଉଚ୍ଚମାନର ବହି ସବୁ ଓଡ଼ିଆ ପାଠକମାନଙ୍କୁ ପଢ଼ିବାକୁ ମିଳୁଛି। ଏ ଗୋଟିଏ ଉତ୍ତମ ଓ ସ୍ୱାଗତଯୋଗ୍ୟ ବ୍ୟବସ୍ଥା।

ଓଡ଼ିଆରୁ ଅନ୍ୟ ଭାଷାକୁ ଅନୁବାଦ ବେଳକୁ କିନ୍ତୁ ଏ ନିୟମ କାର୍ଯ୍ୟକାରୀ ହୁଏ ନାହିଁ। ଓଡ଼ିଆ ସାହିତ୍ୟ ବିଷୟରେ ବିଶେଷ ଧାରଣା ନଥିବାରୁ ଓଡ଼ିଶା ବାହାରେ ଓଡ଼ିଆ ବହି ପଢ଼ିବା ପାଇଁ କାହାର ଆଗ୍ରହ ନାହିଁ। ତା ବ୍ୟତୀତ ଅନେକ ଓଡ଼ିଆ ଲୋକ ବଙ୍ଗଳା, ଇଂରେଜୀ ଓ ହିନ୍ଦୀ ଭାଷା ଜାଣୁଥିବା ବେଳେ କ୍ୱଚିତ ଅଣଓଡ଼ିଆ ଲୋକ ଓଡ଼ିଆ ପଢ଼ି ଲେଖି ଜାଣନ୍ତି। ତା'ର ଅର୍ଥ, ଓଡ଼ିଶା ବାହାରେ ନା ଅଛି ଓଡ଼ିଆ ବହି ପଢ଼ିବାର ଆଗ୍ରହ, ନା ଅଛନ୍ତି ଓଡ଼ିଆରୁ ଅନ୍ୟ ଭାଷାରେ ଅନୁବାଦ କରିବାର ଲୋକ।

ଏହି କାରଣରୁ ଓଡ଼ିଆ ଭାଷାରୁ ଅନ୍ୟ ଭାଷାରେ ଅନୁବାଦ କରିବାର ଦାୟିତ୍ୱ ପଡୁଛି ଓଡ଼ିଆ ଲୋକଙ୍କ ଉପରେ। ବଙ୍ଗଳା, ଇଂରେଜୀ ଓ ହିନ୍ଦୀ ଜାଣିଥିବା ଓଡ଼ିଶାର ଲୋକ ହିଁ ଏହି ଅନୁବାଦମାନ କରୁଛନ୍ତି।(ଏହି ତିନୋଟି ଭାଷା ବ୍ୟତୀତ ଓଡ଼ିଆ ସାହିତ୍ୟରୁ ଅନ୍ୟ ଭାଷାକୁ ରୂପାନ୍ତର କରାଯାଉଛି ଅନୁବାଦରୁ ଅନୁବାଦ ମାଧ୍ୟମରେ, ସାହିତ୍ୟ ଏକାଡେମି, ନ୍ୟାଶନାଲ ବୁକ ଟ୍ରଷ୍ଟ ଭଳି ସଂସ୍ଥା ଆନୁକୂଲ୍ୟରେ)। ଅଧିକାଂଶ କ୍ଷେତ୍ରରେ ଏହି ଅନୁବାଦମାନ କରାଯାଉଛି ଲେଖକମାନଙ୍କର ନିଜସ୍ୱ ଉଦ୍ୟମରେ ଏବଂ ଲେଖକମାନଙ୍କର ନିଜ ଖର୍ଚ୍ଚରେ। ଏହି ଅନୁବାଦ ପାଇଁ ବାହାରେ ପ୍ରକାଶକ ମିଳୁ ନଥିବାରୁ ସେ ସବୁ ଅନେକ ସମୟରେ ଲେଖକମାନଙ୍କ ଖର୍ଚ୍ଚରେ ଓଡ଼ିଶା ଭିତରେ ଛପା ଓ ପ୍ରକାଶିତ ହେଉଛି। କହିବା ବାହୁଲ୍ୟ, ଓଡ଼ିଶା ବାହାରେ ଏ ପ୍ରକାର ବହିର ପ୍ରସାରଣ ନାମକୁ ମାତ୍ର। ଏ ଭଳି ବାଛ ବିଚାର ନ ଥିବା ପ୍ରକ୍ରିୟାରେ ଅଳ୍ପ କିଛି ବହି ଅନୁବାଦିତ ଓ ପ୍ରକାଶିତ ହେଉଥିବା ବେଳେ ଅନେକ ଭଲ ବହି ଓଡ଼ିଶା ବାହାରେ ପ୍ରସାରିତ ହୋଇ ପାରୁନାହିଁ।

ବଙ୍ଗଳା-ଓଡ଼ିଆ ଅନୁବାଦର ଆଦାନ-ପ୍ରଦାନ ଆହୁରି ସମସ୍ୟାଜନକ। ବଙ୍ଗଳାରୁ

ଓଡ଼ିଆକୁ ଆଦାନର ବନ୍ୟା ଛୁଟୁଥିବା ବେଳେ ଓଡ଼ିଆରୁ ବଙ୍ଗଳାକୁ ପ୍ରଦାନର ମରୁଡ଼ି ଅବସ୍ଥା। କାନାଡ଼ାର ଅନୁବାଦ ବିଷୟର ପ୍ରଫେସର ପଲ୍ ସଁପିୟେ ହିସାବ କରି ଦେଖାଇଛନ୍ତି ଯେ ୧୯୬୦ରୁ ୧୯୯୫ ପଞ୍ଚତିରିଶ ବର୍ଷ ଭିତରେ ଓଡ଼ିଆରୁ ବଙ୍ଗଳାକୁ ମାତ୍ର ୨୧ଟି ବହି ଅନୁବାଦିତ ହୋଇଥିବା ବେଳେ ବଙ୍ଗଳାରୁ ଓଡ଼ିଆକୁ ୨୦୭ଟି ବହି ଅନୁବାଦିତ ହୋଇଛି। ଯଦି ଆମେ ୧୯୬୦ ପୂର୍ବ ଶହେ ବର୍ଷର ଆଦାନ-ପ୍ରଦାନକୁ ହିସାବକୁ ନେଉ, ଏହି ବହିର ସଂଖ୍ୟା ଓଡ଼ିଆକୁ ଶହ ଶହ ଓ ବଙ୍ଗଳାକୁ ଆଙ୍ଗୁଠି ଗଣତି ହେବ। ଅନ୍ୟ ଭାଷା ତୁଳନାରେ ବଙ୍ଗଳାକୁ ଏତେ ବହି ଓଡ଼ିଆ ହେଉଥିବାର ଗୋଟିଏ କାରଣ ହୋଇପାରେ ପଡ଼ୋଶୀ ଭାଷା ଅନୁବାଦ କରିବାର ସହଜତା। (ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଜୀବନ ଚରିତର ଓଡ଼ିଆ ଅନୁବାଦ କରିବା ବେଳେ ଫକୀରମୋହନ କହିଥିଲେ ଯେ ଦୁଇ ଭାଷା ମଧ୍ୟରେ ବିଶେଷ ପାର୍ଥକ୍ୟ ନାହିଁ।) ବଙ୍ଗଳାରୁ ଓଡ଼ିଆ କରିବା ଯେତିକି ସହଜ, ଓଡ଼ିଆରୁ ବଙ୍ଗଳା କରିବା ନିଶ୍ଚୟ ସେତିକି ସହଜ, ତେବେ ଏହି ରାସ୍ତାଟି ସବୁବେଳେ ଏକତରଫା ହୋଇ ରହିଛି। ଏହାର ଭଲ ଦିଗଟି ହେଲା ଯେ ବଙ୍ଗଳା ଭଳି ଏକ ସମୃଦ୍ଧ ସାହିତ୍ୟ ଓଡ଼ିଆ ପାଠକମାନଙ୍କୁ ଅନାୟାସ ଉପଲବ୍‌ଧ ହେଉଛି।

ଐତିହାସିକ କାରଣରୁ ଓଡ଼ିଶା ଅନେକ ଦିନ ବଙ୍ଗଳାର ଉପନିବେଶ ଭଳି ରହି ଆସିଥିଲା। ଓଡ଼ିଶା ଅଧିକାର କରିବା ପଚାଶ ବର୍ଷ ପୂର୍ବରୁ ଇଂରେଜମାନେ ବଙ୍ଗଳା ଦଖଲ କରିଥିଲେ, ତେଣୁ ବଙ୍ଗାଳୀମାନେ ସେତିକି ଆଗରୁ ଇଂରେଜୀ ଓ ଆଧୁନିକତା ଶିଖିଥିଲେ ଏବଂ ସେଥିପାଇଁ ଓଡ଼ିଆମାନଙ୍କ ସହିତ ଉନ୍ନାସିକ ବ୍ୟବହାର କରୁଥିଲେ। ଯଦିଓ ବର୍ତ୍ତମାନ ପରିସ୍ଥିତି ସଂପୂର୍ଣ୍ଣ ବଦଳିଯାଇଛି, ବଙ୍ଗାଳୀମାନେ ଓଡ଼ିଆ ସାହିତ୍ୟ ବିଷୟରେ ଜାଣିବା ପାଇଁ ଅଥବା ଓଡ଼ିଆ ପଢ଼ିବା ଶିଖିବା ପାଇଁ କୌଣସି ଆଗ୍ରହ ଦେଖାଇ ନାହାନ୍ତି। ଏ କଥା ଭଣା ଅଧିକେ ଅନ୍ୟ ଅଣ-ଓଡ଼ିଆମାନଙ୍କ ପ୍ରତି ମଧ୍ୟ ପ୍ରଯୁଜ୍ୟ।(ସୁଖର କଥା, ଇଂରେଜୀ ଅନୁବାଦ ମାଧ୍ୟମରେ କିଛି ବହି, ଯଥା : ଛ ମାଣ ଆଠ ଗୁଣ୍ଠ, ପରଜା ପ୍ରସିଦ୍ଧି ଲାଭ କରିବା ପରେ ଭାରତର ବିଭିନ୍ନ ଅଞ୍ଚଳର ପାଠକ ଏହି ବହିମାନଙ୍କରେ ଆଗ୍ରହ ଦେଖାଉଛନ୍ତି।)

ଓଡ଼ିଆ ସାହିତ୍ୟକୁ ବାହାରେ ପ୍ରସାର କରିବାକୁ ହେଲେ ଅନୁବାଦ ଓ ପ୍ରକାଶନ ପାଇଁ ସାହିତ୍ୟ ଅନୁଷ୍ଠାନମାନଙ୍କୁ ବିଧିବଦ୍ଧ ଯୋଜନା କରିବାକୁ ହେବ। ସେ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟର ଅନୁବାଦ ଓ ପ୍ରକାଶନ ବ୍ୟକ୍ତିଗତ ଉଦ୍ୟମରେ ହିଁ ହେଉଥିବ । ହେଉ ଥାଉ।

*୩୦ ଅଗଷ୍ଟ ୨୦୦୭*

# କବିତା ପାଠ

**କବିତା** ପଢ଼ିବ ନା ଶୁଣିବ ? କେତେକଙ୍କ ମତରେ କବିତା କେବଳ ନିଜେ ନିଜେ ପଢ଼ିବା ଉଚିତ। ଯେପରି ଆରିଷ୍ଟୋଟଲ୍ କହିଥିଲେ ଯେ ନାଟକ ପଢ଼ିବା ହିଁ ଯଥେଷ୍ଟ, ତାକୁ ମଞ୍ଚ ଉପରେ ଦେଖିଲେ ଅଧିକା କିଛି ମିଳେ ନାହିଁ। ନିକଟରେ ଜଣେ କବି କବିତା ପାଠୋତ୍ସବର ସମାଲୋଚନା କରି କହିଛନ୍ତି ଯେ ''ପଠନ ଓ ଶ୍ରବଣ ଦ୍ୱାରା କବିତା ଗ୍ରହଣ ସମ୍ଭବ ନୁହେଁ, ସମ୍ଭବ କେବଳ ମନନ ଓ ଧ୍ୟାନ ଦ୍ୱାରା।''

କବିତାକୁ ଯେ ଏକା ବସି କାଗଜ ପୃଷ୍ଠାରୁ(କମ୍ପ୍ୟୁଟର ପର୍ଦାରୁ ?) ପଢ଼ିବା ହିଁ ଶ୍ରେଷ୍ଠ ଅଧ୍ୟୟନ, ଏଥିରେ ସନ୍ଦେହ ନାହିଁ। ତେବେ କବିତା ପାଠକୁ ବନ୍ଦ କରାଯାଇ ପାରିବ ନାହିଁ। କବିତା ପାଠର ପରମ୍ପରା ଅନେକ ପୁରୁଣା। ହୋମରଙ୍କ ସମୟରୁ ଲୋକ ପଇସା ଦେଇ କବିମାନଙ୍କୁ ଶୁଣିବାକୁ ଆସୁଥିଲେ।(ବର୍ତ୍ତମାନ ହୁଏ ତ ପଇସା ଦେଇ କବିତା ଶୁଣିବାକୁ ଡାକିଲେ ଶ୍ରୋତା ନ ମିଳି ପାରନ୍ତି !) ।

ସମଗ୍ର ପୃଥିବୀରେ କବିତା ପାଠର ଧାରା ଅଛି। ଆମେରିକା ନିଉ ଜର୍ସିର ୱାଟରଲୁ ଭିଲେଜରେ ପ୍ରତି ଦୁଇ ବର୍ଷରେ ଯେଉଁ କବିତା ଉତ୍ସବ ହୁଏ, ସେଠାକୁ ଦଶ ହଜାର ଲୋକ ଆସିଥାନ୍ତି। କବି ଡିଲାନ ଟମାସ ତାଙ୍କର କବିତା ଲେଖା ପାଇଁ ଯେତିକି ପ୍ରସିଦ୍ଧ ଥିଲେ, ସେତିକି ପ୍ରସିଦ୍ଧ ଥିଲେ ତାଙ୍କର କବିତା ପାଠ ପାଇଁ। ପାବ୍ଲୋ ନେରୁଦା, ମାୟାକଭସ୍କିଙ୍କୁ ଶୁଣିବା ପାଇଁ ଶ୍ରୋତାଙ୍କର ଅଭାବ ନଥିଲା। ଆମ ଦେଶରେ ଉର୍ଦ୍ଦୁ କବିଙ୍କୁ ଶୁଣିବା ପାଇଁ ବହୁ ଶ୍ରୋତା ହେବାର ପରମ୍ପରା ଅଛି। ଅବଶ୍ୟ ହାସ୍ୟ କବି ସମ୍ମିଳନୀରେ ମଧ୍ୟ ଭିଡ଼ ହୁଏ, କିନ୍ତୁ ସେ ପାଠରେ ହାସ୍ୟ ଥାଇପାରେ, କିନ୍ତୁ କବିତା ନଥାଏ।

କବିତା ପାଠରେ ଅନେକ ଭଲ ଦିଗ ଅଛି, ଯେପରି :

ଏଥିରେ ଦୁଇଟି ଯୋଗାଯୋଗ ହୋଇଥାଏ, ପ୍ରଥମରେ କବି ସହିତ, ଯେ ସାମନାରେ ଠିଆ ହୋଇ ତାର କବିତା ପଢ଼େ, ଏବଂ ଦ୍ୱିତୀୟରେ, ଶ୍ରୋତାଙ୍କ ସହିତ, ଯେଉଁମାନେ କବିତାରେ ଆଗ୍ରହ ହେତୁ ଏକାଠି ହୋଇଛନ୍ତି। କବିତା ପାଠ ସମୟରେ କବି ଓ ଶ୍ରୋତା ଗୋଟିଏ ଅଦୃଶ୍ୟ ବନ୍ଧନରେ ବାନ୍ଧି ହୋଇ ଯାନ୍ତି। ଗୋଟିଏ ଜାଗାରେ, ଅନେକ ଲୋକଙ୍କ ସାଙ୍ଗରେ ଏକାଠି ବସି ଜଣେ ଜିଅନ୍ତା କବିକୁ ନିଜର କବିତା ବଡ଼ ପାଟିରେ ପଢୁଥିବାର ଶୁଣିଲେ ଏକା ବସି ଛପା ଅକ୍ଷରକୁ କେବଳ ଆଖି ଦେଇ ପଢ଼ିବାର ନିର୍ଜନତାରୁ ମୁକ୍ତି ମିଳେ। କବିତା ପାଠରେ କବି ଓ ଶ୍ରୋତା ଶାରୀରିକ ଭାବରେ ସାମନାସାମନି ହୁଅନ୍ତି,

ଯାହା ପୃଷ୍ଠା ଉପରର ନିଃଶବ୍ଦ ବିନିମୟରେ ନଥାଏ।

ଦ୍ୱିତୀୟରେ, ଆଜିକାଲିର ମାଷ୍ଟରିଆ ଆଲୋଚନା (academic discourse)ରେ କାଗଜପୃଷ୍ଠାର ପାଠ (text)କୁ ସର୍ବେସର୍ବା ବୋଲି ଧରାଯାଉଛି, ଯେଉଁଥିରେ ସ୍ୱରର କୌଣସି ଅବସ୍ଥିତି ନାହିଁ। କବିତା ପାଠ ଆମକୁ ମନେ ପକାଇ ଦିଏ ଯେ ଏକ ସମୟରେ କବିତା କେବଳ ମୌଖିକ ଥିଲା ଯାହାକୁ ଶୁଣିବାକୁ ହେଉଥିଲା ଏବଂ ଯେଉଁଥିରେ ସର୍ବସାଧାରଣ ଭାଗ ନେଉଥିଲେ।

ତୃତୀୟରେ, କବିତା ପାଠରେ ଶ୍ରୋତା ପାଇଁ ଏକ ମାୟାଜାଲ (illusion) ସୃଷ୍ଟି ହୋଇଥାଏ ଯେ କବି କେବଳ ତାର କେବେ କେଉଁ ଅତୀତରେ ଲେଖିଥିବା କବିତା ପଢୁନାହିଁ, ସେ ସେମାନଙ୍କ ଆଗରେ ନିଜର କବିତାକୁ ତିଆରି ମଧ୍ୟ କରୁଛି। କାଗଜ ପୃଷ୍ଠା ଉପରର ଛାୟାରୂପ ବର୍ତ୍ତମାନ ରକ୍ତମାଂସ ନେଇ ସେମାନଙ୍କ ଆଗରେ ଠିଆ ହୁଏ, ପାଠକକୁ ଆଉ କବିର ଅସ୍ତିତ୍ୱକୁ କଳ୍ପନା କରିବାକୁ ପଡ଼େ ନାହିଁ।

ଏ ସବୁର ଓଲଟା ତର୍କ ହେଲା ଯେ କବିତାକୁ କେବଳ ପୃଷ୍ଠା ଉପରେ ପଢ଼ିବା ଉଚିତ। ଲେଖିବାର ପ୍ରଚଳନ ନଥିବାରୁ ଏକ କାଳରେ ଧର୍ମ ଇତିହାସ ଦର୍ଶନ ମନ୍ତ୍ର ସବୁ କିଛି ଛନ୍ଦରେ ଲେଖା ହେଉଥିଲା, ଯାହା ଦ୍ୱାରା ଲୋକ ତାକୁ ମନେ ରଖିପାରିବେ। ଯେତେବେଳେ କବିତା କେବଳ ଛନ୍ଦବଦ୍ଧ ଥିଲା, ସେଇଟି ବିଶେଷ ଭାବେ ଶୁଣିବା ପାଇଁ ଉଦ୍ଦିଷ୍ଟ ଥିଲା। ତାଳପତ୍ର ପୋଥିରେ ଯେଉଁ କାବ୍ୟ ଲେଖା ହେଉଥିଲା, ତାହା ଧାଡ଼ି ପରେ ଧାଡ଼ି, କୌଣସି ବି ବିରାମ ନଥାଇ, ପୂରା ପତ୍ରଟି ଉପରେ ଭର୍ତ୍ତି ରହୁଥିଲା, ତାକୁ ଆଖିରେ ଦେଖି କିଛି ଉପଭୋଗ କରିବାର ନଥିଲା। ଯେତେବେଳେ ଛନ୍ଦମୁକ୍ତ କବିତା ଲେଖା ହେଲା, ତାହା ହେଲା ଶୁଣିବା ପାଇଁ ଯେତେ ନୁହେଁ, କାଗଜ ପୃଷ୍ଠା ଉପରେ ଦେଖି ପଢ଼ିବା ପାଇଁ। ତେଣୁ କବି ଧାଡ଼ି ସବୁ ସଜାଇ ରଖିଲେ ଏବଂ ଧାଡ଼ିକୁ ଧାଡ଼ି ସଜାଇବା, ବାକ୍ୟକୁ ଭାଙ୍ଗିବା, ପାରାଗ୍ରାଫ କରିବା ଇତ୍ୟାଦିରେ ଗୋଟିଏ ଆଖିଦୃଶିଆ ଛନ୍ଦ ବା visual rhythm ଦେବାର ଚେଷ୍ଟା କରାଗଲା ଯାହା ଆଗରୁ ନଥିଲା। କେବଳ ପୃଷ୍ଠା ଉପରେ ପଢ଼ିଲେ ହିଁ ପାଠକ ସେ ଅଶୁଣା ଛନ୍ଦଟି ଦେଖିପାରିବ।

ପ୍ରଶ୍ନ କରାଯାଇପାରେ, କବିତା ଶୁଣିଲେ କବିତା ପଢ଼ିବା ଅପେକ୍ଷା ଅଧିକା କଣ ମିଳିବ ? କବିର ଚେହେରା, ଦାଢ଼ି, ବେଶଭୂଷା, ରଙ୍ଗଢଙ୍ଗ, ତା ସାଙ୍ଗରେ ଥିବା ଝିଅ – ଏମାନେ କବିତାକୁ ଅଧିକା କଣ ଦେଇ ପାରିବେ ? ଅନେକ ସମୟରେ କବି ଖରାପ ଭାବରେ ପଢ଼ିଲେ କବିତାର କ୍ଷତି ହିଁ ହୋଇଥାଏ। ଫୈଜ ଆହମେଦ ଫୈଜ ନିଜ କବିତାର ସବୁଠାରୁ ଖରାପ ପାଠକ ଥିଲେ। ଜୀବନର ଶେଷ ସମୟରେ ସଚ୍ଚି ରାଉତରାୟ ଯେତେବେଳେ ତାଙ୍କର ରକ୍ତକୁ ଗରମ କରିଦେଉଥିବା କବିତା ବାଜିରାଉତକୁ ରୁଗ୍‌ଣ ଓ କମ୍ପିତ ସ୍ୱରରେ ଅସ୍ପଷ୍ଟ ଭାବରେ ପଢ଼ିବାକୁ ଚେଷ୍ଟା କରୁଥିଲେ,ତା ଅତି ଦୁଃଖଦାୟକ ଥିଲା। ସମରସେଟ୍

ମମ୍ ଲେଖିଛନ୍ତି ଯେ ୟେଟସ୍‌ଙ୍କର କବିତା ପାଠ ଶୁଣିବା ଏକ ତୀବ୍ର ଯନ୍ତ୍ରଣା(excruciating torture)।

ଆଉ ଗୋଟିଏ କଥା ହେଲା ଯେ, କାଗଜ ପୃଷ୍ଠା ଉପରେ ଛପା କବିତାର ଅନେକ ସମ୍ଭାବନା ଥାଏ। ସରୋଜ ବଳଙ୍କର ଏକ କବିତାର ଚାରିଧାଡ଼ି ହେଉଛି :

ଖରା ପଡ଼ିଲେ ସହୁଚି, ପବନ ବହିଲେ ପିଉଛି।
ଚୁପଚାପ ଅଛି।
ଭାତ ଫୁଟିଲେ ଖାଉଛି, ଫୁଲ ଫୁଟିଲେ ଛୁଉଁଛି।
ଚୁପ୍‌ଚାପ ଅଛି।

ଏଇ ଚାରି ଧାଡ଼ିକୁ ଗମ୍ଭୀର ଦାର୍ଶନିକତାର ସହିତ ପଢ଼ା ଯାଇପାରେ, ପ୍ରଗଲ୍‌ଭ ଚପଳତାର ସହିତ ପଢ଼ା ଯାଇ ପାରେ, ଦୁଃଖର ଆବେଗ ଦେଇ ପଢ଼ାଯାଇପାରେ, ସରସ ହାସ୍ୟୋଦ୍ଦୀପକ ଭଙ୍ଗୀରେ ପଢ଼ା ଯାଇପାରେ। କିନ୍ତୁ କବି ଯେତେବେଳେ ମଞ୍ଚ ଉପରେ କବିତାଟିକୁ ପଢ଼ିବ, ସେ ଏଥିରୁ କେବଳ ଗୋଟିଏ ମାତ୍ର ଧାରାରେ ପଢ଼ିପାରିବ। ଅର୍ଥାତ୍, କବିତାର ଯେ ଅନ୍ୟ ସବୁ ସମ୍ଭାବନା ଥିଲା, ଶ୍ରୋତା ସେଥିରୁ ବଞ୍ଚିତ ହେବେ। ଏ ବିଷୟରେ Emily Dickinsonଙ୍କର ଉକ୍ତି ସ୍ମରଣୀୟ : A pen has so many inflectious, but a voice has but one.

ବର୍ତ୍ତମାନ ଆମେ ଦେଖିବା କବିତା ପାଠୋତ୍ସବ ପାଇଁ କବିତା ପଢ଼ିବାକୁ ଚାହୁଁଥିବା କବିମାନଙ୍କ ବ୍ୟତୀତ ଅନ୍ୟମାନଙ୍କର କାହିଁକି ଆଗ୍ରହ ରହୁନାହିଁ। ତାର ଗୋଟିଏ ମୂଳ କାରଣ ହେଲା ଯେ ଏ ସବୁ ପାଠୋତ୍ସବ ଶୃଙ୍ଖଳିତ ଭାବରେ ଆୟୋଜିତ ହୁଏ ନାହିଁ। କବିତା ପାଠ ସହିତ ଅନ୍ୟ କାର୍ଯ୍ୟକ୍ରମ, ନାଚଗୀତ ରଖାଯାଇଥାଏ, ଯାହା ଫଳରେ ଅନେକ ଶ୍ରୋତା ଓ ଦର୍ଶକ ଆସିଥାନ୍ତି ସେ ସବୁ ଦେଖିବା ପାଇଁ, କବିତା ଶୁଣିବା ପାଇଁ ନୁହେଁ। ଏମାନେ ନିଜେ କବିତାରେ ଆଗ୍ରହୀ ନ ଥିବାରୁ କବି ଓ ଅନ୍ୟ ଶ୍ରୋତାଙ୍କୁ ଅନ୍ୟମନସ୍କ କରାନ୍ତି।

ଅନେକ ସମୟରେ ଏତେ କବିଙ୍କୁ ଡକାଯାଇଥାଏ ଯେ ଶ୍ରୋତାମାନେ ବିରକ୍ତ ଓ ବିଜାର ହୋଇଯାନ୍ତି। ଏକା ସାଙ୍ଗରେ ପଚାଶ କବିଙ୍କୁ ଶୁଣିବା ପାଇଁ କୌଣସି ଶ୍ରୋତାର ଧୈର୍ଯ୍ୟ ରହିବ ନାହିଁ। ( ଘରେ ଏକା ବସି ପଢ଼ିଲା ବେଳେ ମଧ୍ୟ କବିତା ବହିକୁ ରହି ରହି ପଢ଼ିବାକୁ ହୁଏ,  ଏହା ଉପନ୍ୟାସ ନୁହେଁ ଯେ ଗୋଟିଏ ଉଡାଜାହାଜ ଯାତ୍ରାରେ ପୂରା ବହିଟି ପଢ଼ି ହେବ!)

ଅନେକ ପାଠୋତ୍ସବରେ ଯେ ଚାହିଁଲା ତାକୁ ପଢ଼ିବାର ସୁଯୋଗ ଦିଆଯାଇଥାଏ। ତା ଫଳରେ, ବାଥରୁମରେ ଗୀତ ଗାଉଥିବା ଲୋକ ମଞ୍ଚ ଉପରେ ମାଇକ ଆଗକୁ ନ ଆସୁଥିବା ବେଳେ ଏବଂ ରଫ ଖାତାରେ ଆବୁରୁ ଜାବୁରୁ ଆଙ୍କୁଥିବା ଲୋକ ଗ୍ୟାଲେରୀରେ

ପ୍ରଦର୍ଶନୀ କରୁ ନଥିବା ବେଳେ ହାତରେ କାଗଜ ଟୁକୁଡ଼ା ଓ ବଲ ପଏଣ୍ଟ ଧରିଥିବା ଲୋକ ଏଣୁତେଣୁ ଦଶଧାଡ଼ି ଲେଖି ତାକୁ ପାଠୋତ୍ସବରେ କବିତା ବୋଲି ଚଳାଇ ନେବାର ସ୍ପର୍ଦ୍ଧା ରଖେ।

ତା ବ୍ୟତୀତ ଅନେକ କବି ଠିକ ଭାବରେ ନିଜର କବିତା ପଢ଼ି ପାରନ୍ତି ନାହିଁ। ସେମାନେ ଉଡ଼ାଜାହାଜ ଗତିରେ ଅତି ଅସ୍ପଷ୍ଟ ଭାବରେ ନିଜର କବିତା ପଢ଼ି ଦେଇ କିପରି ମାଇକ୍ରୋଫୋନ ପାଖରୁ ବାହାରି ଆସିବେ, ସେହି ଚିନ୍ତାରେ ଥାନ୍ତି। ଅନ୍ୟ କେତେକ କବି ଠିକ୍ ତା'ର ଓଲଟା, ସେମାନେ କବିତାକୁ ଅତି ନାଟକୀୟ ଭାବରେ ଉପସ୍ଥାପନା ବା ପେଶ କରନ୍ତି। ଉଭୟଙ୍କର ଅରଣ୍ୟ ରୋଦନ କବିତା ଭାବରେ କାହାରି ପାଖରେ ପହଞ୍ଚିପାରେ ନାହିଁ।

ସବୁଠାରୁ ଦୁଃଖର କଥା ଏ ଭଳି ପାଠୋତ୍ସବରେ ଭାଗ ନେଉଥିବା କବିମାନେ ନିଜର କବିତା ପଢ଼ିବା ପାଇଁ ଯେତିକି ଉତ୍ସାହୀ, ଅନ୍ୟ କବିମାନଙ୍କ କବିତା ଶୁଣିବା ପାଇଁ ସେତିକି ଉଦାସୀନ। ସାଧାରଣ ଶ୍ରୋତାମାନଙ୍କ ଉପରେ ଏ କଥାର ପ୍ରଭାବ ପଡ଼େ।

କେତେ କବି ଜାଣିପାରନ୍ତି ନାହିଁ ପାଠୋତ୍ସବରେ କି ଭଳି କବିତା ପଢ଼ିବା ଉଚିତ। ଘରେ ବସି ପଢ଼ିବା ବେଳେ ପାଠକ ପଛଧାଡ଼ିକୁ ଫେରି ଯାଇପାରେ, ଗୋଟିଏ ଧାଡ଼ି ପରେ ଅଟକି ଯାଇ ବିରାମ ନେଇ ସେ ବିଷୟରେ ଭାବି ପର ଧାଡ଼ିକୁ ଯାଇପାରେ। ଏହା କବିତା ପାଠରେ ସମ୍ଭବ ନୁହେଁ। ଏଣୁ ପାଠୋତ୍ସବରେ କ୍ଲିଷ୍ଟ, ଦୁର୍ବୋଧ୍ୟ, ଦାର୍ଶନିକତା ପୂର୍ଣ୍ଣ କବିତା ଶ୍ରୋତାମାନଙ୍କୁ ବିରକ୍ତ କରିଥାଏ।

କବିତା ପାଠୋତ୍ସବ କି ଭଳି ହେବା ଉଚିତ ଏବଂ ସେଥିରେ କି ପ୍ରକାରର କବିତା କେଉଁଭଳି ପଢ଼ା ହେବ ସେ ବିଷୟରେ ଯଦି ନିୟମ ତିଆରି ହୁଏ, ମୁଁ ଭାବୁଛି ତା ହୁଏ ତ ଏପରି ହେବ :

– ପାଠୋତ୍ସବ ନାଚ ଗୀତ ସିନେମା ସହିତ ଛନ୍ଦି ନ ହୋଇ କେବଳ କବିତାର ଅନୁଷ୍ଠାନ ହେଉ । କବିତାକୁ ଆଉ କେଉଁ କଳା ଉପରେ ନିର୍ଭର କରିବାର କୌଣସି ଆବଶ୍ୟକତା ନାହିଁ।

– ଏହା ସୀମିତ ସମୟ ଓ ଅଳ୍ପ ସଂଖ୍ୟାର କବିଙ୍କର ପାଠ ହେଉ : ସେତିକି କବିତା ଯେତିକି ଶ୍ରୋତାମାନେ ସହି ପାରିବେ ଓ ଉପଭୋଗ କରିପାରିବେ।

– କବିତା ପାଠରେ ପରିଚାଳନା ଶୃଙ୍ଖଳିତ ଓ ରୋକଠୋକ ହେଉ ଏବଂ ଏପରି ସମୟରେ ହେଉ ଯେତେବେଳେ ଶ୍ରୋତାମାନେ ଗ୍ରହଣ କରିବା ମନୋସ୍ଥିତିରେ ଥିବେ। ଅର୍ଦ୍ଧରାତ୍ରିର କବିତା ପାଠରେ ଉତ୍ତେଜନା ଉନ୍ମାଦନା ହସ ଖୁସି ଓ ଆବେଶ ନିଶ୍ଚୟ ଅଛି, କିନ୍ତୁ ସେଥିରେ କବିତାର ପ୍ରକୃତ ଆସ୍ୱାଦନ ସମ୍ଭବ ନୁହେଁ।

–କବିମାନେ ଏ ଭଳି କବିତା ପଢ଼ନ୍ତୁ ଯାହା ଶ୍ରୋତା ସହଜରେ ବୁଝିପାରିବ, କିନ୍ତୁ ତା

କବିତା ହେବା ଉଚିତ, ହାସ୍ୟୋଦ୍ଦୀପକ ବା ସ୍ଲୋଗାନ ଧର୍ମୀ ଗୀତ ନୁହେଁ।

– କବିତାଟି ମଧମ ଦୈର୍ଘ୍ୟର ହେଉ। କବିତା ଅତି ଛୋଟ ହେଲେ ଶ୍ରୋତା ସେଥିରେ ମନୋଯୋଗ ଦେବା ପୂର୍ବରୁ କବିତାଟି ଶେଷ ହୋଇ ଯାଇଥାଏ, କବିତା ଦୀର୍ଘ ହେଲେ ଶ୍ରୋତା ଅନ୍ୟମନସ୍କ, କ୍ଲାନ୍ତ ବା ବିରକ୍ତ ହୋଇ ଯାଇ ପାରନ୍ତି।

– କବିତାକୁ ଧୀରେ, ସହଜ ଓ ସ୍ପଷ୍ଟ ଭାବରେ ପଢ଼ନ୍ତୁ, ଯେପରି ତା'ର ପ୍ରତିଟି ଶବ୍ଦ ଶ୍ରୋତା ପାଖରେ ପହଞ୍ଚି ପାରିବ। ସାରଳା ଦାସଙ୍କ ଭାଷାରେ, କହଣା ମିଠା ଯେବେ ଶୁଣନ୍ତା ଲୋକ ବୁଝି।

–କବିତାର କୌଣସି ଧାଡ଼ିକୁ ଦୋହରାନ୍ତୁ ନାହିଁ, କାରଣ ଆପଣ ଓଡ଼ିଆ କବିତା ପଢୁଛନ୍ତି, ଉର୍ଦ୍ଦୁ ଶାୟରୀ ନୁହେଁ। ଥର ଥର ଗଳାରେ ବା ନାଟକୀୟ ଭାବରେ ପଢ଼ନ୍ତୁ ନାହିଁ, କାରଣ ଏହା କବିତା ଆବୃତ୍ତି(recitation) ବା କବିତା ଅଭିନୟ(performance) ନୁହେଁ।

– କେବଳ କବିତାଟିକୁ ହିଁ ପଢ଼ନ୍ତୁ। ତା ପୂର୍ବରୁ ଆୟୋଜକମାନଙ୍କୁ ଧନ୍ୟବାଦ ଦେବା, କବିତାଟି କେବେ କାହିଁକି ଓ କିପରି ଲେଖା ହୋଇଥିଲା ତାର ପୂର୍ବାଭାସ ଦେବା, କବିତାର ମର୍ମକଥା କ'ଣ ତା ବୁଝାଇବା – ଏପରି ଅବାନ୍ତର କଥାମାନ କହି ନିଜର ଓ ଶ୍ରୋତାମାନଙ୍କର ସମୟ ନଷ୍ଟ କରନ୍ତୁ ନାହିଁ, କାରଣ ଏ ସବୁ କବିତାର ଅଂଶ ନୁହେଁ। ଟୀକା ଟିପ୍ପଣୀର ସାହାଯ୍ୟ ନ ନେଇ କବିତା ନିଜ ପାଦରେ ଠିଆ ହେଉ।

*'ଉଦୟରାଗ' କବିତା ପାଠୋତ୍ସବ, ଭୁବନେଶ୍ୱର, ଜାନୁଆରୀ, ୨୦୦୮*

# ନାଟକ : ପାଠକ ଓ ଦର୍ଶକ

ସାହିତ୍ୟର ବିଭିନ୍ନ ବିଭାଗରୁ ନାଟକ ସଂପୂର୍ଣ୍ଣ ଅଲଗା। ଗଳ୍ପ କବିତା ଉପନ୍ୟାସର କେବଳ ଗୋଟିଏ ଶ୍ରେଣୀର ଗ୍ରାହକ ଥିବାବେଳେ ନାଟକର ଗ୍ରାହକ ଦୁଇ ଶ୍ରେଣୀର : ନାଟକ ପଢୁଥିବା ପାଠକ ଏବଂ ମଞ୍ଚ ଉପରେ ଅଭିନୀତ ନାଟକକୁ ଦେଖୁଥିବା ଦର୍ଶକ। ଏ ଦୁଇ ପ୍ରକାରର ଗ୍ରାହକ ନାଟକକୁ ଭିନ୍ନ ଭାବରେ ଗ୍ରହଣ କରିଥାନ୍ତି। ନାଟକ ପାଠ କରିବା ଗୋଟିଏ ବ୍ୟକ୍ତିଗତ ପ୍ରକ୍ରିୟା, କିନ୍ତୁ ନାଟକର ପ୍ରଦର୍ଶନ ଦେଖିବା ଏକ ସର୍ବସାଧାରଣ ଘଟଣା।

ନାଟକର ପାଠକ ସିଧାସଳଖ ବହିଟିର ପାଠକୁ ପଢୁଥିବା ବେଳେ ନାଟକର ଦର୍ଶକକୁ ଜଣେ ମଧ୍ୟସ୍ଥ ଦେଇ ଯିବାକୁ ହୋଇଥାଏ – ସେ ହେଉଛି ନିର୍ଦ୍ଦେଶକ। ନାଟକକୁ ଦର୍ଶକ ପାଖରେ ପହଞ୍ଚାଇବା ପାଇଁ ନିର୍ଦ୍ଦେଶକୁ ବିଭିନ୍ନ ଉପାଦାନର ସହାୟତା ନେବାକୁ ହୋଇଥାଏ, ଯଥା, ମଞ୍ଚସଜ୍ଜା, ଆଲୋକ ସଂପାତ, ସଂଗୀତ ଇତ୍ୟାଦି ଇତ୍ୟାଦି। ଏଥି ସହିତ ଥାଏ ପ୍ରତି ନିର୍ଦ୍ଦେଶକର ନିଜସ୍ୱ ନିର୍ଦ୍ଦେଶନା ଶୈଳୀ ଏବଂ ସର୍ବୋପରି ଅଭିନେତା ଅଭିନେତ୍ରୀଙ୍କର ଅଭିନୟ କୌଶଳ। ତେଣୁ ନାଟକର ବହିଟି ନାଟ୍ୟକାରର ବ୍ୟକ୍ତିଗତ ସର୍ଜନା ହୋଇଥିବା ବେଳେ ନାଟକର ମଞ୍ଚନ ଏକ ଯୌଥ ଉଦ୍ୟୋଗ। ପାଠକ ନାଟ୍ୟକାରର ରଚନାକୁ ପ୍ରତ୍ୟକ୍ଷ ଭାବରେ ପଢ଼େ, ଦର୍ଶକ ସେହି ନାଟକକୁ ମଞ୍ଚ ଉପରେ ଦେଖିବା ବେଳେ ଯାହା ଦେଖେ ସେଇଟି ହେଉଛି ନିର୍ଦ୍ଦେଶକ ଓ ଅଭିନେତାଙ୍କର ବ୍ୟାଖ୍ୟା(interpretation)।

ଏକ ସମୟରେ କିନ୍ତୁ ନାଟ୍ୟକାର ଓ ନାଟ୍ୟକର୍ମୀ (playwright and theatre person) ଭିତରେ କୌଣସି ପ୍ରଭେଦ ନଥିଲା ଏବଂ ନାଟକ କହିଲେ କେବଳ ମଞ୍ଚ ଉପରେ ହେଉଥିବା ନାଟକକୁ ବୁଝାଉଥିଲା। ଗ୍ରୀକ୍ ନାଟକରୁ ଆରମ୍ଭ କରି ଶେକ୍ସପିଅର, ମଲିଏର ସମସ୍ତେ ନାଟ୍ୟକର୍ମୀ ଥିଲେ। ପରବର୍ତ୍ତୀ ସମୟରେ ନାଟକ କେବଳ ମଞ୍ଚ ପାଇଁ ଲେଖା ହୋଇଥିବା ପାଠ ନ ହୋଇ ସାହିତ୍ୟରେ ସ୍ୱାଧୀନ ସ୍ଥାନ ପାଇଲା। ନାଟକର ପଠନ ଓ ଦର୍ଶନ ଦୁଇଟି ସଂପୂର୍ଣ୍ଣ ଭିନ୍ନ ପ୍ରକ୍ରିୟା ହୋଇଥିବାରୁ ନାଟକ ଲେଖିଲା ବେଳେ ନାଟ୍ୟକାର ଉଭୟ ପାଠକ ଓ ଦର୍ଶକଙ୍କୁ ଆଖି ଆଗରେ ରଖିଲେ। ସେଥିପାଇଁ ନାଟକରେ ମଞ୍ଚ ନିର୍ଦ୍ଦେଶନା (stage direction) ମଧ୍ୟ ଯୋଗ କରାଗଲା, ଯାହା ନିର୍ଦ୍ଦେଶକ ପାଇଁ ଯେତେ ନୁହେଁ ତା'ଠାରୁ ଅଧିକ ପାଠକ ପାଇଁ ଉଦ୍ଦିଷ୍ଟ। ଏହି ସନ୍ଦର୍ଭରେ Bernard Shawଙ୍କର ନାଟକର ଅତି ଦୀର୍ଘ ମଞ୍ଚ ନିର୍ଦ୍ଦେଶନା ଉଲ୍ଲେଖଯୋଗ୍ୟ।

ଏହି ଭଳି ଭାବରେ ନାଟକରେ ଯେତେବେଳେ ସାହିତ୍ୟର ଗୋଟିଏ ବିଶେଷ ବିଭାଗ ଭାବରେ ଗଣା ହେଲା, ନାଟକର ଲିଖିତ ପାଠର ଗୁରୁତ୍ୱ ବଢ଼ିଗଲା। ରଙ୍ଗମଞ୍ଚର ବାକି

ସାଧନକୁ – ଯଥା ଦୃଶ୍ୟସଜ୍ଜା, ବେଶଭୂଷା, ସାଜ ସରଞ୍ଜାମ, ସଂଗୀତ, ଅଭିନୟ ଇତ୍ୟାଦିକୁ – ଲିଖିତ ପାଠର ଅଧୀନସ୍ଥ ଭାବରେ ଦେଖାଗଲା । ଥିଏଟରକୁ ଧରା ହେଲା ଲିଖିତ ନାଟକର ଦୃଶ୍ୟକରଣ ମାତ୍ର, ଯଦି ମଞ୍ଚନ ମୂଳ ପାଠରୁ ଘୁଞ୍ଚିଗଲା, ତା'ର ସମାଲୋଚନା କରାଗଲା ।

ଚାଳିଶ ଦଶକରେ ଏକ ନୂଆ ଚିନ୍ତାଧାରା ଆସିଲା ଯେ ଥିଏଟରକୁ ଲିଖିତ ନାଟକର ପ୍ରଭାବରୁ ମୁକ୍ତ କରାଯାଉ । Antonin Artau (1896-1948) ତାଙ୍କର The Theatre and its Double ବହିରେ ଘୋଷଣା କଲେ : ଥିଏଟରରେ ଲିଖିତ ପାଠର ନିର୍ବୋଧ ଆନୁଗତ୍ୟକୁ ପରିତ୍ୟାଗ କରାଯାଉ (Let us do away with foolish adherance to texts) ଏବଂ ଥିଏଟରର ଅଲିଖିତ କବିତାକୁ ସ୍ୱାଗତ କରାଯାଉ (welcome the unwritten poetry of the theatre) । ତେବେ ବିନା ଲିଖିତ ପାଠରେ ନାଟକ ପ୍ରଦର୍ଶନ ବ୍ୟତିକ୍ରମ ମାତ୍ର, ଏବଂ ସାଧାରଣ ଭାବେ ନାଟକ ଏକ ଲିଖିତ ପାଠ ଉପରେ ହିଁ ନିର୍ଭର କରିଥାଏ ।

ନାଟକକୁ ପାଠ କରି ମଧ ଉପଭୋଗ କରାଯାଉଥିବାରୁ ପ୍ରଶ୍ନ ଉଠିପାରେ, ନାଟକକୁ ମଞ୍ଚସ୍ଥ କରିବା କ'ଣ ନିତାନ୍ତ ଆବଶ୍ୟକ ? ଆରିଷ୍ଟୋଟଲ କହିଥିଲେ ଯେ ମଞ୍ଚ ଉପରେ ହେଉଥିବା ନାଟକ ଦେଖିଲେ ପଢ଼ିବାଠାରୁ ବେଶି କିଛି ମିଳେ ନାହିଁ, ତେଣୁ ନାଟକର ମଞ୍ଚକରଣ ଅନାବଶ୍ୟକ । ଅନ୍ୟ ଦିଗରେ, ନାଟ୍ୟଶାସ୍ତ୍ରରେ ଭରତଙ୍କର ମତ ହେଉଛି ଯେ ନାଟକ ଦୃଶ୍ୟ କାବ୍ୟ ହୋଇଥିବାରୁ ଏହାକୁ ଉପଭୋଗ କରିବା ପାଇଁ ଏହାର ମଞ୍ଚନ ଅତ୍ୟାବଶ୍ୟକ । ତାଙ୍କ ଭାଷାରେ, ନାଟ୍ୟ ଏପରି ଏକ କ୍ରୀଡ଼ନକ ଯାହା ଉଭୟ ଦୃଶ୍ୟ ଓ ଶ୍ରବ୍ୟ ।

ନାଟକର ଦର୍ଶକ ଅପେକ୍ଷା ପାଠକ ସବୁବେଳେ ଅଧିକ । ଆମେ ଶେକ୍ସପିଅରଙ୍କୁ ଜାଣିଲୁ ମଞ୍ଚ ଉପରେ ନୁହେଁ, କ୍ଲାସ ଘରେ । ରବୀନ୍ଦ୍ରନାଥ ଠାକୁର ତାଙ୍କର ପ୍ରଥମ ନାଟକ 'ବାଲ୍ମୀକି ପ୍ରତିଭା' ଲେଖିଥିଲେ ୨୦ ବର୍ଷ ବୟସରେ ଏବଂ ନିଜର ଜୀବନକାଳ ଭିତରେ ନାଟିକା, ନୃତ୍ୟନାଟିକା, ଅପେରା ଇତ୍ୟାଦି ସବୁ ମିଶାଇ ସେ ୬୦ଟି ନାଟକ ଲେଖିଥିଲେ । ଏ ସବୁର ଅସଂଖ୍ୟ ପାଠକ ଥିବା ବେଳେ କଲିକତାର ରଙ୍ଗମଞ୍ଚ କେବେ ବି ଏ ସବୁ ପ୍ରତି କୌଣସି ଆଗ୍ରହ ଦେଖାଇ ନଥିଲେ । ତାଙ୍କର ୧୯୨୩ ମସିହାର ଲେଖା 'ରକ୍ତ କରବୀ' ୧୯୪୭ରେ ଶାନ୍ତି ନିକେତନରେ ଛାତ୍ରମାନଙ୍କ ଦ୍ୱାରା ଯଥା କଥା ମଞ୍ଚସ୍ଥ ହୋଇଥିଲା, କିନ୍ତୁ ତାର ପ୍ରଥମ ଉପଯୁକ୍ତ ମଞ୍ଚନ ହେଲା ଶମ୍ଭୁ ମିତ୍ରଙ୍କ ଦ୍ୱାରା ୧୯୫୪ ମସିହାରେ, ନାଟକ ରଚନାର ୩୧ ବର୍ଷ ପରେ ! ରବୀନ୍ଦ୍ର ନାଥଙ୍କ ନାଟକକୁ ଦେଖିଛନ୍ତି ଅତି କମ୍, ପଢ଼ିଛନ୍ତି ଅନେକ ବେଶି ଲୋକ ।

ନାଟକ ମଞ୍ଚସ୍ଥ ନ ହେବାର ଅନେକ ଉଦାହରଣ ଅଛି । ଜୟଶଙ୍କର ପ୍ରସାଦଙ୍କର ପ୍ରସିଦ୍ଧ ନାଟକ 'ଚନ୍ଦ୍ରଗୁପ୍ତ ମୌର୍ଯ୍ୟ' ଅତି ଦୀର୍ଘ ହୋଇଥିବାରୁ ତା'ର ମଞ୍ଚନ ହୋଇ ପାରୁନଥିଲା । ମଞ୍ଚୋପଯୋଗୀ କରିବା ପାଇଁ ପରବର୍ତ୍ତୀ କାଳରେ ତାକୁ ସଂକ୍ଷିପ୍ତ କରାହୋଇଥିଲା ଏବଂ

ଏହା 'ଅଭିନୟ ଚନ୍ଦ୍ରଗୁପ୍ତ' ନାମରେ ପ୍ରକାଶିତ ହୋଇଥିଲା। ଧର୍ମବୀର ଭାରତୀଙ୍କର 'ଅନ୍ଧଯୁଗ' ମଞ୍ଚ ଉପରକୁ ଆସିବା ପାଇଁ ଅନେକ ବର୍ଷ ଲାଗିଥିଲା। ଗୋପୀନାଥ ମହାନ୍ତି ଚାରିଟି ନାଟକ ଲେଖିଛନ୍ତି, ସେଗୁଡ଼ିକ କେବେ କେଉଁଠାରେ ମଞ୍ଚସ୍ଥ ହୋଇଥିବାର ଜଣାନାହିଁ।

ଅନ୍ୟ ଭାବରେ ଦେଖିବାକୁ ଗଲେ, ମଞ୍ଚନର ଅର୍ଥ କ'ଣ ? ଅନେକ ନାଟକର ମଞ୍ଚନ କେବଳ ଗୋଟିଏ ଦୁଇଟି ଅଭିନୟ ବା ପ୍ରଦର୍ଶନରେ ସୀମିତ। ତେଣୁ ତା'ର ପ୍ରଭାବ ମଧ୍ୟ ଅତି ସ୍ୱଳ୍ପ। ମୁଦ୍ରିତ ନାଟକର ଜୀବନକାଳ ଦୀର୍ଘ ହୋଇଥିବା ବେଳେ ମଞ୍ଚସ୍ଥ ନାଟକର ଜୀବନ ଅତି କ୍ଷଣସ୍ଥାୟୀ। ଦ୍ୱିତୀୟରେ, ମଞ୍ଚସ୍ଥ ନାଟକର କୌଣସି ନିର୍ଦ୍ଦିଷ୍ଟ ଚରିତ୍ର ଓ ସ୍ୱରୂପ ରହିଯାଏ ନାହିଁ। ପ୍ରତିଟି ମଞ୍ଚନର ନିଜତ୍ୱ ଅଲଗା, ଥରେ ଦେଖିଥିବା ନାଟକ ଦ୍ୱିତୀୟ ଥର ଦେଖିବା ବେଳକୁ ତା ଆଉ ଏକା ଭଳି ନଥାଏ।

ମଞ୍ଚନ ପ୍ରକ୍ରିୟାରେ ନାଟକ ଉପରେ ବିଭିନ୍ନ ପ୍ରଭାବ ପଡ଼ିଥାଏ। ନିର୍ଦ୍ଦେଶକମାନେ ମଞ୍ଚନର ସୁବିଧା ପାଇଁ ମୂଳ ନାଟକରେ ଅନେକ କାଟଛାଟ କରିଥାନ୍ତି। ଶେକ୍ସପିଅରଙ୍କ ମ୍ୟାକ୍‌ବେଥ ନିର୍ଦ୍ଦେଶନା ଦେଲା ବେଳେ ଅଧିକାଂଶ ନିର୍ଦ୍ଦେଶକ ତା'ର ତୃତୀୟ ଅଙ୍କର ପଞ୍ଚମ ଦୃଶ୍ୟରୁ ହେକେଟ (Hecate) ଚରିତ୍ରକୁ କାଟି ଦିଅନ୍ତି, କାରଣ ଏ ଚରିତ୍ରଟି ମହତ୍ତ୍ୱପୂର୍ଣ୍ଣ ନୁହେଁ ଏବଂ ତା'ର ସଂଳାପ ସବୁ ଦୀର୍ଘ ଓ ବିରକ୍ତିକର। ଇଙ୍‌ମାର ବର୍ଗମାନ ଯେତେବେଳେ ଷ୍ଟ୍ରିଣ୍ଡବର୍ଗଙ୍କ ନାଟକର ନିର୍ଦ୍ଦେଶନା ଦେଉଥିଲେ, ସେ ସେଥିରେ ଅନେକ ପରିବର୍ତ୍ତନ କରୁଥିଲେ। ସେ ସବୁ କାଟକୁଟ ଅଦଳ ବଦଳ ହୋଇଥିବା ନାଟକ ପରବର୍ତ୍ତୀ ସମୟରେ Bergman's Strindberg ନାମରେ ପ୍ରକାଶିତ ହୋଇଥିଲା। ତେଣୁ, ପାଠକ ଯେଉଁ ନାଟକ ପଢ଼ନ୍ତି, ତାହା ନାଟ୍ୟକାରର ସଂପୂର୍ଣ୍ଣ ପାଠ ହୋଇଥିବା ବେଳେ ଦର୍ଶକ ଯେଉଁ ମଞ୍ଚସ୍ଥ ନାଟକ ଦେଖନ୍ତି, ତାହା ଅନେକ ସମୟରେ ସେ ଏକ ବିକ୍ଷିପ୍ତ ସଂସ୍କରଣ ମାତ୍ର।

ନାଟକ ଯେତେବେଳେ ମଞ୍ଚସ୍ଥ ହୁଏ ସେଥିରେ ନାଟ୍ୟକାରର କୌଣସି ଭୂମିକା ନଥାଏ। ନାଟକ ସିଧାସଳଖ ନିଜର କାହାଣୀ ଓ ବକ୍ତବ୍ୟ କହିଥାଏ। ତାକୁ ମଞ୍ଚ ଉପରକୁ ଆଣିବା ବେଳକୁ କିନ୍ତୁ ନାଟକର ପାଠ ସେହି କାହାଣୀର ଗୋଟିଏ ମାତ୍ର ଆଙ୍ଗିକକୁ ସାମଗ୍ରୀ ଯୋଗାଇଥାଏ, ନାଟକଟିର ଦୃଶ୍ୟ, ଶବ୍ଦ, ଭାବଦଶା, ସମ୍ଭାବନା ପ୍ରଭୃତି ନିର୍ଭର କରିଥାଏ ନିର୍ଦ୍ଦେଶନା, ଆଲୋକ ସଂପାତ, ମଞ୍ଚସଜ୍ଜା, ଆବହ ସଂଗୀତ, ବେଶଭୂଷା ଓ ଅଭିନୟ ଉପରେ। ନାଟକକୁ କିପରି ଭାବରେ ଦର୍ଶକମାନଙ୍କ ଆଗରେ ଉପସ୍ଥାପିତ କରାଯିବ, ତା ଉପରେ ନାଟ୍ୟକାରର କର୍ତ୍ତୃତ୍ୱ ନଥାଏ। ନାଟକକୁ ଦର୍ଶକ ପାଖରେ ପହଞ୍ଚାଇବାର ଦାୟିତ୍ୱ ରହେ ପ୍ରଥମରେ ନିର୍ଦ୍ଦେଶକ ଉପରେ ଯେ ନାଟକକୁ ନିଜର ବ୍ୟାଖ୍ୟା ଦିଏ ଏବଂ ଦ୍ୱିତୀୟରେ ରଙ୍ଗକର୍ମୀଙ୍କ ଉପରେ ଯେ ଚରିତ୍ରମାନଙ୍କୁ ନିଜର ଚେହେରା, ବ୍ୟକ୍ତିତ୍ୱ ଓ ସ୍ୱର ଦେଇଥାନ୍ତି।

ଏ ସବୁରୁ ଏଭଳି ଏକ ନିଷ୍କର୍ଷ ବାହାରିପାରେ ଯେ ଯଦି ମଞ୍ଚ ଉପରେ ଅଭିନୀତ ନାଟକ ହେଉଛି ନାଟ୍ୟକାରଙ୍କର ପାଠ ଏବଂ ନିର୍ଦ୍ଦେଶକଙ୍କ ବ୍ୟାଖ୍ୟାର ଏକ ସୁନ୍ଦର ସହଯୋଗ, ତେବେ ନାଟକ ନ ଦେଖି ପଢ଼ିବା କାହିଁକି ? ତା'ର ଉତ୍ତର ହେଲା ଯେ, ଜଣେ ଅପରିପକ୍ୱ

ନିର୍ଦ୍ଦେଶକ ଅଥବା ଜଣେ ଅକୁଶଳ ଅଭିନେତା ମଞ୍ଚ ଉପରେ ଗୋଟିଏ ଭଲ ନାଟକକୁ ନଷ୍ଟ କରି ଦେଇପାରେ। ନାଟକକୁ ପଢ଼ିବା ବେଳେ ପାଠକ ନିଜେ ନିର୍ଦ୍ଦେଶକ ହୋଇ ତା'ର ମନ ଭିତରେ ନାଟକଟିକୁ ଆକାର ଦିଏ । ବହିର ପୃଷ୍ଠା ଲେଉଟାଇ ସେ କୌଣସି ଭଲ ଦୃଶ୍ୟ ପାଖକୁ ଫେରିଯାଇପାରେ। ମଞ୍ଚ ଉପରେ ଅଭିନୟ ହେବାର ଅଳ୍ପ ସମୟ ଭିତରେ ମରି ଯାଉଥିବା ଅନୁଭବ କାଗଜ ପୃଷ୍ଠା ଉପରେ ସବୁବେଳେ ଜୀବନ୍ତ ହୋଇ ରହିଥାଏ। ପାଠକର ମନ ଭିତରେ ତା'ର କଳ୍ପନା ଶକ୍ତି ଉପରେ ନିର୍ଭର ନାଟକଟିର ସମ୍ଭାବନା ସୀମାହୀନ ଏବଂ ଏଇଟି ଯେ କୌଣସି ମଞ୍ଚସ୍ଥ ନାଟକ ଅପେକ୍ଷା ନିଶ୍ଚିତ ଭାବେ ଅଧିକ ସଂପୂର୍ଣ୍ଣ ଓ ଅଧିକତର ସନ୍ତୋଷଜନକ।

ଏଥିପାଇଁ ଅଧିକାଂଶ ନାଟ୍ୟକାର ନାଟକ ପଢ଼ିବାର ଶ୍ରେୟତା ବିଷୟରେ ମତ ପୋଷଣ କରିଥାନ୍ତି। ଆମେରିକାନ୍ ନାଟ୍ୟକାର ଏଡୱାର୍ଡ ଆଲ୍‌ବୀଙ୍କ ଶବ୍ଦରେ : ନାଟକ ହେଉଛି ସାହିତ୍ୟ, ଏବଂ ପୃଷ୍ଠା ଉପରେ ହିଁ ତା'ର ସଂପୂର୍ଣ୍ଣ ଅନୁଭବର ଅବସ୍ଥିତି। ଏ ସଂପର୍କରେ ରବୀନ୍ଦ୍ରନାଥଙ୍କର ମତ ଆହୁରି ଦୃଢ଼। ସେ କହିଛନ୍ତି :

''ସ୍ତ୍ରୈଣ ପତି ଯେଉଁ ଭଳି ସମସ୍ତଙ୍କର ଉପହାସର ପାତ୍ର ହୋଇଥାଏ, ସେପରି ନାଟକ ଯଦି ଅଭିନୟର ଅପେକ୍ଷାରେ ନିଜର ଚତୁର୍ଦ୍ଦିଗକୁ ଅପବ୍ୟୟ କରେ, ତେବେ ତା' ମଧ୍ୟ ସେପରି ଉପହାସର ପାତ୍ର ହୋଇଯାଇଥାଏ। ନାଟକକୁ ଏଭଳି ଭାବିବାକୁ ହେବ ଯେ, ଯଦି ମୋର ଅଭିନୟ ହେଉଛି ତ ହେଉ, ଯଦି ନ ହୁଏ ତ ତାହା ଅଭିନୟର ଦୁର୍ଭାଗ୍ୟ, ମୋର ଏଥିରେ କୌଣସି କ୍ଷତି ନାହିଁ।''

*'କାଦମ୍ବିନୀ' ବାର୍ଷିକ ଉତ୍ସବ ଜାନୁଆରୀ ୨୦୦୮*

# ବୃକ୍ଷ ପରିବେଶ

ପରିବେଶ ସଂପର୍କୀୟ ଏକ ସଭାକୁ ଜଣେ ସାହିତ୍ୟିକକୁ ଡାକିବା ବୋଧହୁଏ ଅସଂଗତ କଥା, କାରଣ ଲେଖକମାନେ ହେଉଛନ୍ତି ପରିବେଶର ଅନ୍ୟତମ ଅନିଷ୍ଟକାରୀ। ଜଙ୍ଗଲ ଓ ଗଛର ସୁରକ୍ଷା ହେଉଛି ପରିବେଶ ସଂରକ୍ଷଣର ଏକ ବିଶେଷ ଲକ୍ଷ୍ୟ। କିନ୍ତୁ ଲେଖକମାନଙ୍କର ବହି ଛପା ହେବା ପାଇଁ ଯେଉଁ କାଗଜ ଦରକାର, ସେଥିପାଇଁ ଯେତେ ଗଛ କଟା ହୁଏ, ତା'ର ସୀମା ନାହିଁ। ହିସାବ କରି ଦେଖା ଯାଇଛି ଯେ ଗୋଟିଏ ଟନ କାଗଜ ପାଇଁ ଚବିଶଟି ଗଛ କଟାହୁଏ(ଏବଂ ଗୋଟିଏ ଏ-୪ ସାଇଜ କାଗଜ ପାଇଁ ଦଶ ଲିଟର ପାଣି ଦରକାର ହୁଏ)। ସେହି ଦୃଷ୍ଟିରୁ ଦେଖିଲେ ଲେଖକମାନେ ଗଛର ଶତ୍ରୁ। ସେଥିପାଇଁ ବୋଧହୁଏ ପ୍ରତ୍ୟେକ ଲେଖକ ନିଜକୁ ପ୍ରଶ୍ନ କରିବା ଉଚିତ : ମୁଁ ଯାହା ଲେଖୁଛି, ତା କ'ଣ ଗୋଟିଏ ଗଛକୁ ଲୋପ କରିବାର ଯୋଗ୍ୟ ?

ବର୍ତ୍ତମାନ ସମୟରେ ପରିବେଶଜନିତ ଯେଉଁ ସବୁ ସମସ୍ୟା ଦେଖା ଦେଉଛି, ଏକ ସମୟରେ ତା'ର ଅସ୍ତିତ୍ୱ ନଥିଲା। ପ୍ରାଚୀନ ଯୁଗର ମଣିଷ ପ୍ରକୃତି ସହିତ ମିଳିମିଶି ଚଳୁଥିଲା। ଆକାଶ ପାଣିପବନ ମେଘ ଋତୁପରିବର୍ତ୍ତନ ବର୍ଷାବିଜୁଳୀ ଗଛଲତା ସବୁକିଛି ଆଦିମଣିଷ ପାଇଁ ବିସ୍ମୟ ଓ ଚମତ୍କାରର ବିଷୟ ଥିଲେ। ଗଛଲତା ଜୀବଜନ୍ତୁଙ୍କ ଭଳି ମଣିଷ ମଧ ପ୍ରକୃତିର ଅଂଶ ଥିଲା। ସେ ବଞ୍ଚୁଥିଲା ଫଳମୂଳ ସଂଗ୍ରହ କରି ଓ ଶିକାର କରି।

ପ୍ରଥମ ସମୟରେ ପ୍ରକୃତି ଯଦି ମଣିଷ ପାଇଁ ଆଶ୍ଚର୍ଯ୍ୟର ବିଷୟ ଥିଲା, ପରବର୍ତ୍ତୀ ସମୟରେ ମଣିଷ ପ୍ରକୃତିକୁ ବୁଝିବାକୁ ଚେଷ୍ଟା କଲା : ସୂର୍ଯ୍ୟର ଗତିବିଧି କିପରି, କାହିଁକି ଋତୁ ବଦଳେ, ଗଛଲତା କେମିତି ବଢ଼ନ୍ତି, ଇତ୍ୟାଦି। ଆହୁରି ପରବର୍ତ୍ତୀ କାଳରେ ମଣିଷ ପ୍ରକୃତିକୁ ନିୟନ୍ତ୍ରଣ କରିବାକୁ ଚେଷ୍ଟା କଲା ଏବଂ ସେତିକି ବେଳେ ସମସ୍ୟାର ଆରମ୍ଭ ହେଲା।

ପୃଥିବୀରେ ଏକ ବିରାଟ ପରିବର୍ତ୍ତନ ଆସିଲା ଯେତେବେଳେ ନିଆଁର ଆବିଷ୍କାର ହେଲା। ସେଇଦିନଠାରୁ ମଣିଷ ନିଜକୁ ପ୍ରକୃତିଠାରୁ ଅଲଗା ବୋଲି ଭାବିଲା। ବର୍ତ୍ତମାନ ସେ ନିଆଁର ଘେର ଭିତରେ ବନ୍ଦ କରି ବଡ଼ ବଡ଼ ଜନ୍ତୁଙ୍କୁ ସହଜରେ ଶିକାର କରିପାରିଲା ଓ ଗଛ ଜାଳି ଜମି ତିଆରି କରି ସେଥିରେ ଚାଷ କରିପାରିଲା। ଏ ଚାଷକୁ ସେଥିପାଇଁ slash- and-burn ଏବଂ ଓଡ଼ିଆରେ ପୋଡୁ ଚାଷ କୁହାଯାଏ।

ସମୟ କ୍ରମେ ବିଜ୍ଞାନ ଓ ସଭ୍ୟତାର ଯେତିକି ଯେତିକି ଅଗ୍ରଗତି ହେଲା, ପରିବେଶ

ସେତିକି ଆକ୍ରାନ୍ତ ଓ କ୍ଷତିଗ୍ରସ୍ତ ହେବାରେ ଲାଗିଲା । ପୋଡୁଚାଷ ଯଦି ତା'ର ଗୋଟିଏ ପ୍ରାଥମିକ ଉଦାହରଣ, ପରବର୍ତ୍ତୀ ସମୟର ହାତ ହତିଆର କଳକବ୍‌ଜା ତାର ଆହୁରି ବ୍ୟାପକ ଓ ମାରାତ୍ମକ ଦୃଷ୍ଟାନ୍ତ । ଏହି ସମସ୍ୟାକୁ ଜାଣିବା ପାଇଁ ସେଇ ଗଛକଟାକୁ ନିଆଯାଉ । ଯେତେବେଳେ ଗଛ କାଟିବା ପାଇଁ କେବଳ କୁରାଢ଼ୀ ବ୍ୟବହାର କରାଯାଉଥିଲା, ଗୋଟିଏ ଫୁଟବଲ ପଡ଼ିଆ ଆକାରର ଜଙ୍ଗଲ କାଟିବା ପାଇଁ ଜଣେ ଲୋକକୁ ଗୋଟିଏ ବର୍ଷ ସମୟ ଲାଗୁଥିଲା । Chain Sawର ଉଦ୍‌ଭାବନ ପରେ ସେଇ ଗୋଟିଏ ଲୋକ ବର୍ତ୍ତମାନ ମାତ୍ର ଦଶଦିନ ଭିତରେ ସେହି ଆକାରର ଜଙ୍ଗଲକୁ କାଟି ପାରିଲା ।

ପୁଣି ଥରେ ବହିଛପା ପାଇଁ କାଗଜ ଓ ସେଥିପାଇଁ ଗଛ କାଟିବାର ଉଦାହରଣକୁ ନିଆଯାଉ । ପ୍ରଥମେ ଆମର ସାହିତ୍ୟ ଥିଲା ଶ୍ରୁତିମୂଳକ, ଲୋକମାନେ ଶୁଣି ଶୁଣି ଆବୃତ୍ତି କରି ତାକୁ ମନେ ରଖୁଥିଲେ ଓ ପ୍ରସାରିତ କରୁଥିଲେ । ସାହିତ୍ୟ ଯେତେବେଳେ ଲିଖିତ ଅବସ୍ଥାକୁ ଆସିଲା, ଭୂର୍ଜପତ୍ର ତାଳପତ୍ର ଇତ୍ୟାଦି ଉପରେ ଲେଖା ହୋଇ କେବଳ ଅଳ୍ପ ସଂଖ୍ୟାର ବହି ତିଆରି ହେଲା । ଆମ ଓଡ଼ିଶାରେ ଗତ ଶତାବ୍ଦୀର ଦ୍ୱିତୀୟ ଓ ତୃତୀୟ ଦଶକ ପର୍ଯ୍ୟନ୍ତ ତାଳପତ୍ରରେ ଲେଖା ପୋଥି ପ୍ରଚଳିତ ଥିଲା । ଏ ସବୁ ଅଳ୍ପ ସଂଖ୍ୟାର ବହି ଓ ପୋଥିକୁ କେବଳ ରାଜା ଜମିଦାର ଓ ଧନୀ ଲୋକମାନେ ହିଁ କିଣିପାରୁଥିଲେ ।

ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗରେ Gutenberg ଚଳନ୍ତା ଅକ୍ଷର ବା moveable type ବାହାର କଲେ । ଏ ସମୟ ପର୍ଯ୍ୟନ୍ତ ସମଗ୍ର ଇଉରୋପରେ ହାତଲେଖା ବହିର ସଂଖ୍ୟା ଥିଲା ମାତ୍ର ତିରିଶ ହଜାର । ଗୁଟେନବର୍ଗଙ୍କ ଉଦ୍‌ଭାବନର ପଚାଶ ବର୍ଷ ଭିତରେ ବହି ସଂଖ୍ୟା ୯୦ ଲକ୍ଷକୁ ବଢ଼ିଗଲା । ଏଥିପାଇଁ କେତେ ଗଛ କଟା ହୋଇଥିବ ତା' ସହଜରେ ଅନୁମାନ କରାଯାଇପାରେ । ଆମେ କିନ୍ତୁ କହିପାରିବା ନାହିଁ ଯେ ଏହି ବହି ଛାପିବା ଏକ ଭୁଲ ବିଚାର ଥିଲା । ଏତେ ସଂଖ୍ୟାର ବହି ଛାପା ହେବାରୁ ହିଁ ଇଉରୋପରେ ଏକ ବୌଦ୍ଧିକ ଆନ୍ଦୋଳନ ଆରମ୍ଭ ହୋଇ ରେନେସାଁର ରାସ୍ତା ଖୋଲିଗଲା ।

ଏଥିପାଇଁ ନିଶ୍ଚୟ ଗଛ କାଟିବାର ପ୍ରୟୋଜନ ଥିଲା ଏବଂ ଏହାକୁ ଅସ୍ୱୀକାର କରି ହେବ ନାହିଁ । ତେଣୁ ପ୍ରକୃତ ପ୍ରଶ୍ନ ହେଉଛି କିପରି ଆମର ଚାହିଦା ମେଣ୍ଟାଇ ଆମେ ଜଙ୍ଗଲ ଓ ଗଛର ସଂରକ୍ଷଣ କରିପାରିବା ।

ଆମେ ସହରରେ ରହୁଥିବା ଲୋକ ଜଙ୍ଗଲ କହିଲେ ଏକ ଦୁର୍ଗମ ଦୁସ୍ତର ଅଞ୍ଚଳକୁ ବୁଝୁ ଏବଂ ଭାବୁ ଯେ ସେଠାରେ କେବଳ ମୁନିଋଷି, ବାଘଭାଲୁ କିମ୍ବା ବୀରାପ୍ପାନ ଓ ମାଓବାଦୀମାନେ ରହନ୍ତି । ଆମର କିନ୍ତୁ ସବୁବେଳେ ମନେ ରଖିବା ଉଚିତ ଯେ ଜଙ୍ଗଲ ସହିତ ମଣିଷର ସଂପର୍କ ଅତି ପ୍ରାଚୀନ ଓ ଅପରିହାର୍ଯ୍ୟ । ଜଙ୍ଗଲ ନ ଥିଲେ ମଣିଷ ପ୍ରଜାତି ବା human speciesର ବଞ୍ଚିବା ହିଁ ସମ୍ଭବ ହୋଇନଥାନ୍ତା, କାରଣ ଜଙ୍ଗଲ ହିଁ ଆମ ଗ୍ରହର ପରିବେଶ ବ୍ୟବସ୍ଥା ବା ecosystemର ମୂଳ । ଜଙ୍ଗଲ ହିଁ ପୃଥିବୀ ଉପରେ ଜୀବନକୁ ପୁଷ୍ଟ କରୁଛି ଏବଂ ଜଙ୍ଗଲ ନିୟନ୍ତ୍ରଣ କରୁଛି ବୃଷ୍ଟିପାତ ଓ ଜଳବାୟୁକୁ ଏବଂ ମାଟିକୁ ରକ୍ଷା କରୁଛି

ଅବକ୍ଷୟରୁ। ଜଙ୍ଗଲ ଆଶ୍ରୟ ଦେଉଛି ବିଭିନ୍ନ ପ୍ରକାରର ଗଛଲତା ପଶୁପକ୍ଷୀ ସରୀସୃପ କୀଟପତଙ୍ଗଙ୍କୁ । ସବୁଠାରୁ ବଡ଼ କଥା ହେଲା ଯେ ପୃଥିବୀର ଲକ୍ଷ ଲକ୍ଷ ଲୋକ ବଞ୍ଚିବା ପାଇଁ ନିର୍ଭର କରନ୍ତି ଜଙ୍ଗଲ ଉପରେ ଯାହା ସେମାନଙ୍କୁ ଯୋଗାଏ ଫଳଫୁଲ କାଠ ଔଷଧ ଓ ଅନ୍ୟାନ୍ୟ ସାମଗ୍ରୀ। ଜଙ୍ଗଲ ସହିତ ସେମାନଙ୍କର ସମ୍ବନ୍ଧ ଏତେ ଘନିଷ୍ଠ ଯେ ଗୋଟିଏ ଆଦିବାସୀ ଲୋକକଥା ଅନୁସାରେ : ଆକାଶ ହେଉଛି ପୃଥିବୀର ଛାତ ଏବଂ ଏହି ଛାତକୁ ଉଠାଇ ଧରିଛନ୍ତି ଜଙ୍ଗଲର ଗଛ। ଯଦି ଗଛ ସବୁ କଟା ହୋଇ ପଡ଼ିଯାନ୍ତି, ପୂରା ଆକାଶଟି ଖସିପଡ଼ି ପୃଥିବୀ ଧ୍ୱଂସ ହୋଇଯିବ।

ବର୍ତ୍ତମାନ କିନ୍ତୁ ଗଛର ଯେଉଁ ଭଳି ଧ୍ୱଂସ ଲୀଳା ଚାଲିଛି, ହୁଏ ତ ଆକାଶ ସତକୁ ସତ ଭାଙ୍ଗିପଡ଼ିବ। ସହର ଅଞ୍ଚଳରେ ଆଉ ଗଛ ଦେଖିବାକୁ ମିଳୁ ନାହିଁ। ଅନେକ ବର୍ଷ ତଳେ ଏ କଥାକୁ ଦେଖି Ogden Nash ଲେଖିଥିଲେ :

I think I shall never see
A billboard lovely as a tree
Indeed unless the bill boards fall
I'll never see a tree at all.

ଆମ ଓଡ଼ିଆ ଭାଗବତରେ ଗଛର ଉପକାରିତା ବିଷୟରେ ଏ ଭଳି ବର୍ଣ୍ଣନା ଅଛି :

ଅଂଶୁ ବିଶାଳ ଦେବ ପ୍ରଷ୍ଠ ଦେଖ ଏ ବୃକ୍ଷଙ୍କ ମହତ୍ତ୍ୱ।
ପରେ କରନ୍ତି ଉପକାର ସୁଜନ ପ୍ରାଣୀଙ୍କ ବେଭାର ।
ଶୀତ ବରଷା ଘର୍ମ ଦୁଃଖ ସହି ଆନ୍ତକୁ ଦ୍ୟନ୍ତି ସୁଖ ।
ଧନ୍ୟ ଜୀବନ ଏହାଙ୍କର ଜୀବିକା ହୋନ୍ତି ପ୍ରାଣୀଙ୍କର ।
ସୁଜନ ଘରେ ଯେହ୍ନେ ଯାଇ ଅତିଥି ନିରାଶ ନୁହଇ ।
ପତ୍ର କୁସୁମ ଫଳ ଛାଇ ମୂଳ ବକଳ ଦାରୁ ଦେଇ
କ୍ଷାର ଅଙ୍ଗାର ଭସ୍ମ ଅଠା ଗୃହକୁ ସାଜି ବାଡ଼ କଣ୍ଟା
ଏତେ ପ୍ରକାରେ ସେବା କରି ନିଜେ ଏ ପର ଉପକାରୀ।

ଭାଗବତରେ କଳିକାଳର ଯେଉଁ ବର୍ଣ୍ଣନା କରାଯାଇଛି, ସେଥିରେ ଏହି ସମୟରେ ପୃଥିବୀକୁ ଏକ ଶୁଷ୍କ ମରୁ ଅଞ୍ଚଳ ଭାବରେ କଳ୍ପନା କରାଯାଇଛି। ଭାଗବତର ଭାଷାରେ କଳିକାଳରେ :

ଧନ୍ୟାଦି ସର୍ବ ଶସ୍ୟମାନ। ସକଳ ହେବ ରସହୀନ ॥
ବୃକ୍ଷ ସକଳ ଶମୀ ତୁଲ୍ୟ । ଅତ୍ୟନ୍ତ କ୍ଷୀଣ ପତ୍ରଫଳ ॥

ଜଙ୍ଗଲର ଅବକ୍ଷୟ ଆରମ୍ଭ ହୋଇଥିଲା ପ୍ରାୟ ଦଶହଜାର ବର୍ଷ ତଳେ ଯେତେବେଳେ ମଣିଷ ତାର ଭ୍ରାମ୍ୟମାଣ ଜୀବନ ଛାଡ଼ି ବସବାସ କରି ଗାଈଗୋରୁ ପାଳିଲା ଓ ଜଙ୍ଗଲ କାଟି ଚାଷ ଜମି ଓ ଘାସ ଜମି ତିଆରି କଲା। କ୍ରମେ ଗଛର ନୂଆ ନୂଆ ଉପଯୋଗ ହେଲା

ଯଥା କାଗଜ ତିଆରି। ଶିଳ୍ପ ବିପ୍ଳବ ହେବା ପରେ କାଠର ଚାହିଦା ଅନେକ ବେଶି ବଢ଼ିଗଲା ଯେତେବେଳେ କଳ କାରଖାନା ଚଳାଇବା ପାଇଁ ଦରକାର ହେଲା କାଠ କୋଇଲାର ଇନ୍ଧନ। ଏ ସବୁ କାରଣ ଯୋଗୁ ଏବଂ ଜନସଂଖ୍ୟା ବୃଦ୍ଧି ଯୋଗୁ ଜଙ୍ଗଲ କ୍ଷୟ ହେବାରେ ଲାଗିଲା ଏବଂ ଜଙ୍ଗଲ ଆଚ୍ଛାଦନ କମିଗଲା। ତା'ର ଫଳ ହେଲା ମାଟିର ଅନୁର୍ବରତା। ଗଛ ଜଳକଣାକୁ ବାନ୍ଧି ରଖେ ଏବଂ ମାଟିକୁ ପବନ ଓ ପାଣିରେ ଧୋଇଯିବାକୁ ଦିଏ ନାହିଁ। ଗଛ କାଟି ଚାଲିଲେ ମାଟି ପାଇଁ ଏ ସୁରକ୍ଷା ରହେ ନାହିଁ ଓ ଜମି ଶୁଖିଯାଇ ମରୁଭୂମିକରଣ ବା desertification ଆରମ୍ଭ ହୋଇଯାଏ।

ବର୍ତ୍ତମାନ ସମୟରେ ଗଛକଟାର ଆଉ କେତେକ କାରଣ ହେଲା ଧନୀ ଦେଶମାନଙ୍କର ଜୀବନ ପ୍ରଣାଳୀ ଓ ଉଦ୍ୟୋଗୀକରଣ। ଆମେରିକାରେ ମାଂସ ଖାଇବାର ପରିଣାମ ବଢ଼ି ଚାଲିଛି ଏବଂ ତାକୁ ଯୋଗାଉଥିବା ଗୋରୁମାନଙ୍କ ପାଇଁ ଜଙ୍ଗଲ କାଟି ଅଧିକରୁ ଅଧିକ ଘାସ ଜମି ତିଆରି କରାହେଉଛି। ବିକାଶଶୀଳ ଦେଶମାନଙ୍କରେ ଲୋକସଂଖ୍ୟା ବଢ଼ି ଚାଲିଛି ଏବଂ ଏହି ଦେଶମାନଙ୍କର ଅଧିକାଂଶ ଲୋକ ଜାଳେଣି ପାଇଁ କାଠ ଉପରେ ହିଁ ନିର୍ଭର କରନ୍ତି।

ଉଦ୍ୟୋଗୀକରଣ ମଧ୍ୟ ଜଙ୍ଗଲ ଧ୍ୱଂସ ହେବାର ଅନ୍ୟ ଏକ କାରଣ। ଆଜିକାଲି ବଡ଼ ବଡ଼ କମ୍ପାନୀମାନେ କାରଖାନା ଓ ଖଣି ପାଇଁ ଜଙ୍ଗଲ ଭିତରକୁ ପଶି ତାକୁ ଧ୍ୱଂସ କରି ଚାଲିଛନ୍ତି। ଓଡ଼ିଶାରେ ହେବାକୁ ଯାଉଥିବା ଶିଳ୍ପ ସଂସ୍ଥାନମାନେ ଏହାର ଜ୍ୱଳନ୍ତ ଉଦାହରଣ।

ଜଙ୍ଗଲରୁ ଗଛ କାଟିବା ଯଦି ଅନେକ ପ୍ରାଚୀନ କାଳରୁ ଆରମ୍ଭ ହୋଇ ଯାଇଥିଲା, ତାହା ବର୍ତ୍ତମାନ କାହିଁକି ଏତେ ଗୁରୁତ୍ୱପୂର୍ଣ୍ଣ ହୋଇଯାଇଛି ? ତା'ର କାରଣ, ପୂର୍ବକାଳରେ ଗଛ କାଟିବା ସହିତ ଲୋକମାନେ ଗଛ ଓ ପରିବେଶର ଯତ୍ନ ମଧ୍ୟ ନେଉଥିଲେ। ଯେଉଁମାନେ ପୋଡୁ ଚାଷ କରୁଥିଲେ, ସେମାନେ ଗୋଟିଏ ଗୋଟିଏ ଜାଗାକୁ ପାଳି କରି ବ୍ୟବହାର କରୁଥିଲେ। ଗୋଟିଏ ଜାଗାକୁ ଜାଳି ସେଠାରେ ଚାଷ କରିବା ପରେ ପୁରୁଣା ଜାଗାକୁ ଛାଡ଼ି ଅନ୍ୟ ଜାଗାକୁ ଯାଉଥିଲେ, ଦଶବାର ବର୍ଷ ପରେ ପୁରୁଣା ଜାଗାକୁ ଫେରିଆସିବା ବେଳକୁ ପ୍ରାକୃତିକ ପ୍ରକ୍ରିୟାରେ ସେ ଜାଗାଟି ସେତେବେଳକୁ ପୁଣି ଉର୍ବର ହୋଇସାରିଥାଏ।

ବର୍ତ୍ତମାନ ମଧ୍ୟ ଆମର ଆଦିବାସୀମାନେ ଏ ବିଷୟରେ ସଚେତନ। ୨୦୦୩ରେ ଉପସ୍ଥାପିତ ହୋଇଥିବା ଗୋଟିଏ ରିପୋର୍ଟରେ ଓଡ଼ିଶାର କୁଟିଆ କନ୍ଧମାନଙ୍କର ଜଙ୍ଗଲ ସହିତ ସଂପର୍କ ବିଷୟରେ ଏପରି କୁହାଯାଇଛି :

ଜଙ୍ଗଲର ଗଛଲତା ଓ ଜୀବଜନ୍ତୁଙ୍କର ଅବସ୍ଥିତି ବିଷୟରେ କୁଟିଆ କନ୍ଧମାନଙ୍କର ବ୍ୟାପକ ଜ୍ଞାନ ଅଛି ଏବଂ ସେମାନେ ନିଜକୁ ଏମାନଙ୍କର ରକ୍ଷକ ବୋଲି ମନେ କରନ୍ତି। ଜଙ୍ଗଲ ପାଖରେ ରହୁଥିବାରୁ ଏବଂ ଜଙ୍ଗଲର ଜମି ଉର୍ବର ହୋଇ ଥିବାରୁ ସେମାନେ ସେଠାରେ ଚାଷ କରିବାକୁ ଚାହାନ୍ତି, କିନ୍ତୁ ଜଙ୍ଗଲକୁ କେବଳ ନିଜର ଅର୍ଥନୈତିକ ସମ୍ବଳ ବୋଲି ଭାବନ୍ତି ନାହିଁ। ଜଙ୍ଗଲ ସେମାନଙ୍କ ପାଇଁ ଏକ ଭାବପ୍ରବଣ ଆବଶ୍ୟକତା, ଯାହା ସେମାନଙ୍କୁ ସାମାଜିକ ସୁରକ୍ଷା ମଧ୍ୟ ଯୋଗାଇଥାଏ।

କୁଟିଆ କନ୍ଧମାନଙ୍କ ଭଳି ଆମ ଭାରତର ପ୍ରାଚୀନ ସଂସ୍କୃତିରେ ମଧ୍ୟ ମଣିଷ ସହିତ ଗଛର ସଂପର୍କ ଘନିଷ୍ଠ ଥିଲା ଓ ଗଛକୁ ପବିତ୍ର ବୋଲି ଧରା ହେଉଥିଲା। ଋଗ୍‌ବେଦରେ ବନକୁ ଦେବତା ବୋଲି କୁହାଯାଇଛି। ସାରଳା ଦାସଙ୍କ ମହାଭାରତରେ ଗାନ୍ଧାରୀ ପ୍ରଥମେ ଗୋଟିଏ ସାହାଡ଼ା ଗଛକୁ ବିବାହ କରି ପରେ ଧୃତରାଷ୍ଟ୍ରଙ୍କୁ ବିବାହ କରିଥିବାର ଉପାଖ୍ୟାନ ଅଛି। ମହାଦେବ ଦାସଙ୍କର କାର୍ତ୍ତିକ ମାହାତ୍ମ୍ୟରେ ଅଛି ଯେ ପାର୍ବତୀଙ୍କର ଅଭିଶାପରେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଯଥାକ୍ରମେ କିଂଶୁକ, ପିପଳ ଓ ବରଗଛ ହୋଇଯାଇଥିଲେ। ଓଡ଼ିଶାର ଗାଁ ଗହଳରେ ଅନେକ ଗ୍ରାମ ଦେବୀ ଗଛ ରୂପରେ ପୂଜା ପାଇଥାନ୍ତି, ବିଶେଷରେ ବନଦୁର୍ଗା ଓ ମା ମଙ୍ଗଳା ପୂଜା ପାଇଥାନ୍ତି କୋଚିଲା ଓ ଆମ୍ବଗଛ ରୂପରେ। ଗାଁମାନଙ୍କରେ ଯେଉଁ ଠାକୁରାଣୀ ତୋଟା ଥାଏ, ତାର ଗଛକୁ କେହି ଛୁଅନ୍ତି ନାହିଁ। ଆମର ଲୋକକଥା ଅଛି ଯେ ଯଦି କେହି ଋଣ ସୁଝି ନପାରି ମରିଯାଏ, ପରଜନ୍ମରେ ଗଛ ହୋଇ ଆସି ବହୁତ ଫଳ ଫଳି ଧାର ଦେଇଥିବା ଲୋକର ଧାର ସୁଝିଦିଏ। ଗଛର ମହାନତା ବିଷୟରେ ବୃକ୍ଷାୟୁର୍ବେଦରେ ଏପରି କୁହାଯାଇଛି :

ଦଶକୂପସମ ବାପୀ, ଦଶବ୍ୟାପୀସମ ହ୍ରଦ, ଦଶହ୍ରଦ ସମପୁତ୍ର, ଦଶପୁତ୍ର ସମ ଦ୍ରୁମ। ଅର୍ଥାତ୍ ଦଶଟି କୂଅ ସହିତ ସମାନ ଗୋଟିଏ ପୋଖରୀ, ଦଶଟି ପୋଖରୀ ସହିତ ସମାନ ଗୋଟିଏ ହ୍ରଦ, ଦଶଟି ହ୍ରଦ ସହିତ ସମାନ ଗୋଟିଏ ପୁଅ ଓ ଦଶଟି ପୁଅ ସହିତ ସମାନ ଗୋଟିଏ ଗଛ। ଏଠାରେ ମଧ୍ୟ ଗଛ ଓ ମଣିଷକୁ ଏକା ଭଳି ଦେଖାଯାଇଛି।

ଗତ ସପ୍ତାହରେ ଖବରକାଗଜରେ ଗୋଟିଏ ସମ୍ବାଦ ପଢ଼ି ଖୁସି ଲାଗିଥିଲା ଯେ ସହରର ଅନ୍ତତଃ କିଛି ଲୋକ ଏବେ ବି ଗଛ ସହିତ ଭାବପ୍ରବଣ ସଂପର୍କ ରଖୁଛନ୍ତି। ଗତ ୨୦୦୮ ସେପ୍ଟେମ୍ବର ମାସରେ ଦିଲ୍ଲୀର କରୋଲବାଗରେ ଯେଉଁ ବୋମା ବିସ୍ଫୋରଣ ହୋଇଥିଲା ସେଥିରେ ଅନେକ ଜୀବନହାନି ହୋଇଥିଲା ଏବଂ ସେଠାରେ ଗୋଟିଏ ବଡ଼ ପିପଳ ଗଛ ମଧ୍ୟ କ୍ଷତିଗ୍ରସ୍ତ ହୋଇଥିଲା। ବର୍ତ୍ତମାନ ସେ ଅଞ୍ଚଳରେ ସ୍ତ୍ରୀଲୋକମାନେ ଗଛର କ୍ଷତମାନଙ୍କରେ ହଳଦୀ ଓ ତେଲ ଲଗାଇ ଗଛଟିର ଯତ୍ନ ନେଉଛନ୍ତି।

ବର୍ତ୍ତମାନ ସମୟରେ ଅତି ବ୍ୟାପକ ଭାବରେ ଜଙ୍ଗଲ ଲୋପ ପାଉଥିବା ଓ ଜମି ମରୁଭୂମି ପାଲଟି ଯାଉଥିବାର କାରଣମାନ ହେଲା – ଅତ୍ୟଧିକ ଚାଷ, ଅତ୍ୟଧିକ ଚାରଣ, ଇନ୍ଧନ ପାଇଁ ଅତ୍ୟଧିକ କାଠକଟା ଓ ଜମିର ଦୁରୁପଯୋଗ। ତା'ଠାରୁ ଗଭୀର କାରଣମାନ ହେଲା : ବିକାଶର ନିମ୍ନଗତି, ଅଲଂଘ୍ୟ ଦାରିଦ୍ର୍ୟ ଏବଂ ଜନସଂଖ୍ୟା ବୃଦ୍ଧି। ବିକାଶଶୀଳ ଦେଶରେ ଏ ସମସ୍ୟାମାନ ଅତି ଉତ୍କଟ ଏବଂ ଠିକରେ କହିଲେ ଦରିଦ୍ର ଦେଶମାନଙ୍କର ଦାରିଦ୍ର୍ୟ ହିଁ ପରିବେଶ ନଷ୍ଟ ହେବାର ଏକ ବିଶେଷ କାରଣ।

ତେବେ ଏ କଥା ନୁହେଁ ଯେ ଧନିକ ରାଷ୍ଟ୍ରମାନେ ଏ ବିପତ୍ତିରୁ ରକ୍ଷା ପାଇଯିବେ। ୧୯୩୦ ଦଶକରେ ଆମେରିକାର ଅଞ୍ଚଳରେ ଧୂଳିଝଡ଼ ହୋଇ ଯେଉଁ ଦୁର୍ବିପାକ ହୋଇଥିଲା–ଯାହାକୁ Dust Bowl Disaster of the Thirties କୁହାଯାଏ – ସେଥିରେ ଲକ୍ଷ ଲକ୍ଷ ଲୋକ ଘରଦ୍ୱାର

ଛାଡ଼ି କାମ ଖୋଜିବାକୁ ବାହାରିଥିଲେ ଏବଂ ବର୍ଷ ବର୍ଷ ଧରି କଷ୍ଟ ପାଇଥିଲେ। John Steinbeckଙ୍କର Grapes of Wrath ବହିରେ ଏ ଦୁର୍ଦ୍ଦଶାର ମାର୍ମିକ ବର୍ଣ୍ଣନା ଅଛି। ଆମେରିକା ଗୋଟିଏ ଧନୀ ଦେଶ ହୋଇଥିବାରୁ ପ୍ରଚୁର ଅର୍ଥ ଓ ଲୋକବଳ ଖର୍ଚ୍ଚ କରି ଲୋକମାନଙ୍କର ଥଇଥାନ କରିପାରିଥିଲା ଯାହା ଗୋଟିଏ ଦରିଦ୍ର ଦେଶ ପକ୍ଷରେ ସମ୍ଭବ ହୋଇ ନଥାନ୍ତା।

ସୁଖର ବିଷୟ ଯେ ବର୍ତ୍ତମାନ ଏହି ସମସ୍ୟା ବିଷୟରେ ଲୋକମାନଙ୍କ ଭିତରେ ସଚେତନତା ଦେଖା ଦେଇଛି। ଅନେକ ଆଗରୁ ଆମର ବିଦେଶୀ ଶାସକମାନେ ଜଙ୍ଗଲକୁ ନିୟନ୍ତ୍ରଣରେ ରଖିବାକୁ ଚେଷ୍ଟା କରି ପ୍ରାୟ ଦେଢ଼ ଶହ ବର୍ଷ ତଳେ ଜଙ୍ଗଲ ବିଭାଗ ତିଆରି କରିଥିଲେ। କିନ୍ତୁ ସେମାନଙ୍କର ମୂଳ ଉଦ୍ଦେଶ୍ୟ ଥିଲା ରାଜସ୍ୱ ଆଦାୟ କରିବା ଏବଂ ସେଥିପାଇଁ ଏହି ବିଭାଗଟି ଥିଲା ରାଜସ୍ୱ ବିଭାଗ ଅଧୀନରେ। ତେଣୁ ଏହି ସରକାରୀ ବିଭାଗ ପାଖରୁ ଜଙ୍ଗଲ ପାଇଁ ଲୋକ ହିତକର କାର୍ଯ୍ୟକ୍ରମ ଆଶା କରିବା ବୃଥା।

ଜଙ୍ଗଲକୁ ବ୍ୟବହାର କରୁଥିବା ଲୋକମାନେ କିନ୍ତୁ ସବୁବେଳେ ଜଙ୍ଗଲର ସୁରକ୍ଷା ପାଇଁ ସଚେତନ ଥିଲେ। ୧୯୭୩ରେ ଆରମ୍ଭ ହୋଇଥିବା ଚିପ୍‌କୋ ଆନ୍ଦୋଳନ କଥା ବର୍ତ୍ତମାନ ସାରା ପୃଥିବୀରେ ଜଣାଶୁଣା। ଏ ବିଷୟରେ ବୋଧହୁଏ ସମସ୍ତେ ଏକମତ ହେବେ ଯେ ଜଙ୍ଗଲ ପାଖରେ ରହୁଥିବା ଓ ଜଙ୍ଗଲ ଉପରେ ନିର୍ଭର କରୁଥିବା ଲୋକମାନଙ୍କ ଉପରେ ହିଁ ଜଙ୍ଗଲ ସୁରକ୍ଷାର ଦାୟିତ୍ୱ ଛାଡ଼ିଦେବା ଉଚିତ। କିଛି ବର୍ଷ ତଳେ ଏକ ଆଇନରେ ସରକାର ମଧ୍ୟ ଏ କଥା ସ୍ୱୀକାର କରିଛନ୍ତି। ବର୍ତ୍ତମାନ ଓଡ଼ିଶାର ଅନେକ ଅଞ୍ଚଳରେ ଗୋଷ୍ଠୀ ଜଙ୍ଗଲ ପରିଚାଳନା ବା Community Forest Manegment ଯୋଜନା କାର୍ଯ୍ୟକାରୀ କରାଯାଉଛି।

ମୁଁ ଆରମ୍ଭ କରିଥିଲି ଲେଖକଙ୍କ କଥାରୁ। ମୁଁ ଶେଷ କରିବି ଗୋଟିଏ କବିତାର କିଛି ଧାଡ଼ି ଶୁଣାଇ। କବିତାଟି ଲେଖିଥିଲେ ଆମେରିକାର କବି Joyce Kilmer ପ୍ରାୟ ଶହେ ବର୍ଷ ତଳେ, ଏବଂ ପ୍ରସିଦ୍ଧ ଏଇ ଗୋଟିଏ କବିତା ପାଇଁ ଯାହାର ଶୀର୍ଷକ ହେଉଛି Trees(1913)। କବିତାର କେତୋଟି ଧାଡ଼ି ହେଲା :

I think I shall never see
A poem as lovely as a tree.
....
Poems are made by fools like me
But only God can make a tree.

*ବସୁନ୍ଧରା ପରିବେଶ ସଭା, ଭୁବନେଶ୍ୱର*
*ଜାନୁଆରୀ, ୨୦୦୯*

# ସାହିତ୍ୟିକର ସାମାଜିକ ସ୍ୱୀକୃତି ଓ ସମ୍ମାନ

ସାହିତ୍ୟ ପାଖରୁ ଲୋକମାନଙ୍କର ଅସମ୍ଭବ ପ୍ରତ୍ୟାଶା ଥାଏ। ସଭା ସମିତିରେ ବି କଡ଼ାର ନେତା ବି ଲେଖକଙ୍କୁ ଉପଦେଶ ଦିଅନ୍ତି ଯେ ସେମାନେ ଏପରି ସମାଜମନସ୍କ ଲେଖା ଲେଖନ୍ତୁ ଯାହା ରାଷ୍ଟ୍ରର ବ୍ୟବସ୍ଥାକୁ ଦୋହଲାଇ ବଦଳାଇ ଦେବ। କିନ୍ତୁ ସମସ୍ତେ, ବିଶେଷରେ ଲେଖକମାନେ ନିଜେ, ଜାଣନ୍ତି ଯେ ସାହିତ୍ୟର ଏପରି କୌଣସି ଶକ୍ତି ନାହିଁ। ପ୍ରସିଦ୍ଧ ଇଂରେଜୀ କବିଙ୍କ ଭାଷାରେ 'କିଛି ବି କରାଇ ପାରେ ନାହିଁ କବିତା'। ତଥାପି ଲେଖକମାନେ ସମାଜ ସହିତ ଏକ ସହଜ ବୁଝାମଣା ରଖିବାକୁ ଚାହାନ୍ତି।

ସାହିତ୍ୟିକର ସାହିତ୍ୟ ସଂପର୍କିତ ଏକମାତ୍ର ଯୋଗାଯୋଗ ରହିବା ଉଚିତ ପାଠକ ସହିତ। ଲେଖକ କିନ୍ତୁ ପାଠକ ବାହାରେ ଆହୁରି ଏକ ବୃହତ୍ତର ନିର୍ବାଚନ ମଣ୍ଡଳୀ ଉପରେ ଆଖି ରଖେ। ସାହିତ୍ୟ ପାଖରୁ ସମାଜ ଅସାଧ୍ୟ ଚମତ୍କାର ଆଶା କରୁଥିବା ବେଳେ ଲେଖକ ମଧ୍ୟ ପାଠକୀୟ ସ୍ୱୀକୃତିରେ ସନ୍ତୁଷ୍ଟ ନ ହୋଇ ପ୍ରତିବଦଳରେ ବୃହତ୍ତର ସମାଜ ପାଖରୁ କିଛି ସାଂସାରିକ ମର୍ଯ୍ୟାଦା ଚାହେଁ। ଏ ଭଳି ମର୍ଯ୍ୟାଦା ଲେଖକକୁ ମିଳିଥାଏ ସରକାରୀ ବେସରକାରୀ ସଭା ଓ ସଂସ୍ଥାରୁ, ଯେଉଁମାନେ ବିଭିନ୍ନ ସମୟରେ ଲେଖକମାନଙ୍କୁ ପୁରସ୍କାର ସମ୍ମାନ ପଦବୀ ଓ ଉପାଧିରେ ଅଳଂକୃତ କରିଥାନ୍ତି। ଦୁର୍ଭାଗ୍ୟବଶତଃ ପ୍ରତିଟି ସମ୍ମାନ ଦିଆଯିବା ସମୟରେ ଇର୍ଷା ଦ୍ୱେଷ ପରଶ୍ରୀକାତରତା କଳିକନ୍ଦଳ ସୃଷ୍ଟି ହୋଇଥାଏ ଏବଂ ସମ୍ମାନ ପଛରେ ପକ୍ଷପାତିତା ପ୍ରିୟା ପ୍ରୀତିତୋଷଣ ଛଳକପଟ ପ୍ରତାରଣା ଥିବାର ଆକ୍ଷେପ ହୋଇଥାଏ। ଅନେକ ସମୟରେ ସମ୍ମାନଜନିତ ବାଦବିବାଦ ଓ ତର୍କବିତର୍କ ଦଶନ୍ଧି ଦଶନ୍ଧି ପରେ ମଧ୍ୟ ଶେଷ ହୁଏ ନାହିଁ। ନିକଟରେ ଆମର ଶତାୟୁ ଲେଖକ ନିତ୍ୟାନନ୍ଦ ମହାପାତ୍ର ଏକ ସାକ୍ଷାତକାରରେ କହିଛନ୍ତି ଯେ ସେ କାହାରି ଚକ୍ରାନ୍ତ ଯୋଗୁ ୧୯୬୮ ମସିହାରେ ଜ୍ଞାନପୀଠ ପୁରସ୍କାର ପାଇନଥିଲେ। ସମ୍ମାନ ଓ ପୁରସ୍କାର ପଛରେ ଏତେ ଅପଚାର ଥିବା ସତ୍ତ୍ୱେ ତାକୁ ପାଇବା ପାଇଁ ପ୍ରଚେଷ୍ଟା ପ୍ରତିଯୋଗିତା ଖୋସାମତି ଧରାଧରି ପଛରୁ ଛୁରୀ ଭୁଷିବା ଇତ୍ୟାଦି ଲାଗି ରହିଥାଏ।

ଏ ସବୁର କାରଣ ହେଉଛି ସମ୍ମାନ ପାଇଁ ମୋହ ଓ ଦୁର୍ବଳତା ଯାହାକୁ ଶହେ ବର୍ଷ ତଳେ ରାଧାନାଥ ରାୟ ଆଖ୍ୟା ଦେଇଥିଲେ "ଉପାଧି ଲାଳସାରୂପୀ ମହାବ୍ୟାଧି"। ଏ ବ୍ୟାଧିରୁ ବରିଷ୍ଠ, ପ୍ରତିଷ୍ଠିତ ଓ ସମ୍ମାନପ୍ରାପ୍ତ ଲେଖକମାନେ ମଧ୍ୟ ମୁକ୍ତ ନୁହନ୍ତି, ଏବଂ ପୁଣି ରାଧାନାଥଙ୍କ ଭାଷାରେ କହିଲେ, ସେମାନେ "ଉପାଧିରେ ବୁଡ଼ି ଲୋଡ଼ନ୍ତି ଉପାଧି"। ଦୁଃଖର ବିଷୟ, ସେମାନଙ୍କର ମନ୍ଦ ଆଦର୍ଶରେ ଆମର କନିଷ୍ଠ ଲେଖକମାନେ ମଧ୍ୟ ସେହି ବ୍ୟାଧିରେ ସଂକ୍ରମିତ ହେଉଛନ୍ତି।

ପୁରସ୍କାର ଓ ଉପାଧି ବ୍ୟତୀତ ଲେଖକଙ୍କ ପାଇଁ ଆହୁରି ଅନେକ ପ୍ରତୀକାତ୍ମକ ଓ ଲୋକ ଦେଖାଣିଆ ସମ୍ମାନମାନ ଅଛି, ଯଥା, ପ୍ରତିମୂର୍ତ୍ତି ସ୍ଥାପନ, ରାସ୍ତା ଓ ସର୍ବସାଧାରଣ ସ୍ଥାନର ନାମକରଣ ଇତ୍ୟାଦି। ପାଶ୍ଚାତ୍ୟ ଦେଶମାନଙ୍କରେ ଲେଖକମାନଙ୍କୁ ଏ ଭଳି ଅନେକ ପ୍ରକାରର ମର୍ଯ୍ୟାଦା ଦିଆଯାଇଥାଏ। ଗର୍କି ଓ ପୁଶ୍‌କିନ୍‌ଙ୍କ ନାଁ'ରେ ମସ୍କୋର କେନ୍ଦ୍ର ଅଞ୍ଚଳରେ ପାର୍କ ଓ ଛକ ଅଛି। ଫ୍ରାନ୍ସର ପ୍ରତିଟି ସହରରେ ଅନ୍ତତଃ ଗୋଟିଏ ଆଭେନ୍ୟୁ ଭିକ୍ଟର ହ୍ୟୁଗୋ ଦେଖିବାକୁ ମିଳେ। ଏକ ସମୟରେ ଆୟାରଲ୍ୟାଣ୍ଡର କାଗଜ ଟଙ୍କାରେ ଗୋଟିଏ ପାଖରେ ଜେମ୍‌ସ ଜୟେସ୍‌ଙ୍କର ଚିତ୍ର ଥିଲା ଓ ଅନ୍ୟ ପାଖରେ ଥିଲା ତାଙ୍କ ଉପନ୍ୟାସରୁ ଉଦ୍ଧୃତି। ଆମ ଦେଶରେ ଲେଖକମାନଙ୍କୁ ଏପରି ଶ୍ରଦ୍ଧା ଜଣାଇବାର ଉଦାହରଣ ନାହିଁ। ଭୁବନେଶ୍ୱରରେ କୌଣସି ଲେଖକଙ୍କ ନାଁରେ ରାସ୍ତା ଥିବାର ମୋତେ ଜଣା ନାହିଁ, ତେବେ ଦିଲ୍ଲୀରେ ଏପରି କେତୋଟି ରାସ୍ତା ଅଛି। ଆନନ୍ଦର ବିଷୟ, ଏଥିରୁ ଗୋଟିଏ ରାସ୍ତା ଫକୀରମୋହନଙ୍କ ନାଁରେ ନାମିତ। ଅନେକ ବର୍ଷ ତଳେ କଟକର ଗୋଟିଏ ଗଳିକୁ ଯେଉଁମାନେ 'ଭାଷାକୋଷ ଲେନ୍' ନାଁ ଦେଇଥିଲେ, ସେମାନଙ୍କୁ ସାଧୁବାଦ ଦେବାର କଥା!

ରାସ୍ତାର ନାମକରଣ ଭଳି ସହରର ଜନସମାଗମ ସ୍ଥାନରେ ପ୍ରତିମୂର୍ତ୍ତି ସ୍ଥାପନ କରି ମଧ୍ୟ ଲେଖକଙ୍କୁ ସମ୍ମାନ ଦିଆଯାଇଥାଏ। ଆମ ଦେଶରେ ସାଧାରଣତଃ ଏହାର ଉଦାହରଣ କମ୍, କିନ୍ତୁ ଦକ୍ଷିଣ ଭାରତରେ ଏହାର ପ୍ରଚଳନ ଅଛି। ତାମିଲ ଡାକୁ ବୀରାପ୍ପାନ ଯେତେବେଳେ କନ୍ନଡ଼ ଅଭିନେତା ରାଜକୁମାରଙ୍କୁ ଅପହରଣ କରିନେଲା, ତାଙ୍କୁ ଛାଡ଼ିଦେବାର ସର୍ତ୍ତମାନଙ୍କରୁ ଅନ୍ୟତମ ଥିଲା ବାଙ୍ଗାଲୋରରେ ତାମିଲ କବି ତିରୁବଲ୍ଲୁବରଙ୍କର ପ୍ରତିମୂର୍ତ୍ତି ସ୍ଥାପନ। ଫକୀର ମୋହନ ନିଜେ ନିଜର ଏକ ପ୍ରତିମୂର୍ତ୍ତି ତିଆରି କରି ତାକୁ ନିଜର ବଗିଚାରେ ରଖାଇଥିଲେ। ଏ ଭିତରେ ଶହେ ବର୍ଷ ଅତୀତ ହୋଇଥିଲେ ମଧ୍ୟ ଏଠାରେ ତାଙ୍କର ପ୍ରତିମୂର୍ତ୍ତି ସ୍ଥାପନ ପାଇଁ କୌଣସି ଉଦ୍ୟମ ହୋଇନାହିଁ। ଆମର ଶ୍ରେଷ୍ଠ ଲେଖକଙ୍କ ପାଇଁ ଜାତିଠାରୁ ଅନ୍ତତଃ ଏତିକି ଆଶା କରାଯାଇପାରେ।

ସାହିତ୍ୟର ଚରିତ୍ରକୁ ନେଇ ପ୍ରତିମୂର୍ତ୍ତି ସ୍ଥାପନ ମଧ୍ୟ ସାହିତ୍ୟକାରଙ୍କୁ ଆଉ ଏକ ପ୍ରକାରର ସମ୍ମାନ ଜ୍ଞାପନ। ଅନେକ ବର୍ଷ ତଳେ ଚେନ୍ନାଇର ମରିନା ସମୁଦ୍ର ତଟରେ ସିଲାପ୍ପଦିକରମ କାବ୍ୟର ନାୟିକା କନ୍ନଗିଙ୍କର ପ୍ରତିମୂର୍ତ୍ତି ସ୍ଥାପିତ ହୋଇଥିଲା। (କ୍ଷମତାକୁ ଆସିବା ପରେ ଜୟଲଳିତା, ଜ୍ୟୋତିଷମାନଙ୍କ ଉପଦେଶରେ, ପ୍ରତିମୂର୍ତ୍ତିକୁ ସେଠାରୁ ବାହାର କରି ଦେଇଥିଲେ। ୨୦୦୬ରେ କରୁଣାନିଧି କ୍ଷମତାକୁ ଆସିବା ପରେ ପ୍ରତିମୂର୍ତ୍ତି ଯଥାସ୍ଥାନକୁ ଫେରି ଯାଇଥିଲା। ପୁଣି ଥରେ କ୍ଷମତାକୁ ଆସିବା ପରେ ଜୟଲଳିତା କନ୍ନଗିଙ୍କୁ ବିସ୍ଥାପିତ କରିବା ବିଷୟରେ ବୋଧହୁଏ ମନ ଦେଇ ପାରିନାହାନ୍ତି!) ଏ ଭଳି ପ୍ରତିମୂର୍ତ୍ତି ପ୍ରତିଷ୍ଠା କରିବା ପାଇଁ ଆମର ପୁରୀର ବେଳାଭୂମି ଏକ ଉପଯୁକ୍ତ ସ୍ଥାନ। କେବେହେଲେ ସେଠାରେ ଅଳକା ସାନ୍ୟାଲ ବା ପ୍ରତିମା ନାୟକର ନ ହେଲେ ବି ଯଦି ଲାବଣ୍ୟବତୀ ବା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀଙ୍କର ପ୍ରତିମୂର୍ତ୍ତି ପ୍ରତିଷ୍ଠା ପାଏ, ଓଡ଼ିଆ ସାହିତ୍ୟ ପାଇଁ ଗୌରବର ବିଷୟ ହେବ।

ଆମ ଦେଶରେ ବିଶିଷ୍ଟ ଲୋକମାନଙ୍କର ଜୟନ୍ତୀରେ ଛୁଟି ଘୋଷଣା କରିବାର ପ୍ରଥା ଅଛି। ଏ ଛୁଟି କିନ୍ତୁ ଲେଖକଙ୍କ ଭାଗ୍ୟରେ ପଡ଼େ ନାହିଁ। ଓଡ଼ିଶା ସରକାରଙ୍କ ଛୁଟି ତାଲିକାରେ ଦୁଇଜଣ ଓଡ଼ିଆଙ୍କର ଜୟନ୍ତୀ ଥିଲା –ସୁରେନ୍ଦ୍ର ସାଏ ଓ ମଧୁସୂଦନ ଦାସ। ଏହି ତାଲିକାରେ ନେତା ଓ ଲେଖକ ଗୋପବନ୍ଧୁଙ୍କୁ ରଖିବା ପାଇଁ ମୁଁ ସରକାରଙ୍କୁ ଏକ ପ୍ରସ୍ତାବ ଦେଇଥିଲି। ଏ ବର୍ଷ କିନ୍ତୁ ଆମ ସରକାର ସୁରେନ୍ଦ୍ର ସାଏ ଓ ମଧୁସୂଦନଙ୍କୁ ମଧ୍ୟ ତାଲିକାରୁ କାଟି ଦେଇଛନ୍ତି।

ଏ ସବୁ ବିଷୟରେ ଫକୀରମୋହନ ନିଶ୍ଚୟ ବିଶେଷ ଭାଗ୍ୟବାନ। କାରଣ ଦିଲ୍ଲୀର ରାସ୍ତା ବ୍ୟତୀତ ତାଙ୍କ ନାଁରେ ଗୋଟିଏ ଡାକ ଟିକଟ ମଧ୍ୟ ଅଛି ଏବଂ ଓଡ଼ିଶାର ଏକ ବିଶ୍ୱବିଦ୍ୟାଳୟ ତାଙ୍କ ନାଁରେ ନାମିତ। ଏ ସଂପର୍କରେ ଉଲ୍ଲେଖଯୋଗ୍ୟ ଯେ ଓଡ଼ିଶାର ଅନ୍ୟ ଏକ ବିଶ୍ୱବିଦ୍ୟାଳୟ ଜଣେ ଅପଦାର୍ଥ ଗୋରା–ଚମଡ଼ା ଅମଲାଙ୍କ ନାଁରେ ନାମିତ ଏବଂ ତାକୁ ବଦଳାଇବାରେ କାହାରି ଆଗ୍ରହ ନାହିଁ।

ଓଡ଼ିଶା ରାଜଧାନୀର ପ୍ରମୁଖ ସରକାରୀ ସଭାଗୃହ ଜଣେ ଲେଖକଙ୍କ ନାଁରେ ନାମିତ। ସେ କିନ୍ତୁ ଓଡ଼ିଆ ଲେଖକ ନୁହନ୍ତି, ସଂସ୍କୃତ କବି (ବା, କାହାକୁ ଅପ୍ରିୟ ନହେବା ଭାଷାରେ କହିଲେ, ଓଡ଼ିଶାରେ ଜନ୍ମିତ ସଂସ୍କୃତ କବି।) ଅଥଚ ଆମର ଓଡ଼ିଆ ଆଦିକବିଙ୍କ ନାଁରେ କୌଣସି ସରକାରୀ ଅନୁଷ୍ଠାନ ନାହିଁ। ସାରଳା ଦାସ କେବଳ ଆମର ପ୍ରଥମ ଓ ମହାକବି ନୁହଁନ୍ତି, ତାଙ୍କର ଲେଖାରୁ ହିଁ ଆମେ ଓଡ଼ିଆ ଜାତିର ରୂପରେଖ ଓ ଓଡ଼ିଆ ଅସ୍ମିତାର ପ୍ରଥମ ପ୍ରକାଶ ପାଇଥାଉ। ବୋଧହୁଏ ଏକ ସାଂସ୍କୃତିକ ବ୍ରାହ୍ମଣବାଦ ଯୋଗୁ ଏହି ଓଡ଼ିଆ ଶୂଦ୍ରକବି ଅବହେଳିତ ହୋଇରହିଛନ୍ତି ଓ ସମାଜରୁ ତାଙ୍କ ପ୍ରାପ୍ୟ ପାଇନାହାନ୍ତି।

ଜୟଦେବଙ୍କ ନାଁରେ ଯେ କେବଳ ଗୋଟିଏ ସଭାଗୃହ ଅଛି ତା ନୁହେଁ, ତାଙ୍କ ନାଁରେ ବର୍ତ୍ତମାନ ଗୋଟିଏ ନିର୍ବାଚନ ମଣ୍ଡଳୀ ହୋଇଛି। ଜଣେ କବିଙ୍କୁ ଏପରି ସମ୍ମାନିତ କରିବା ଆନନ୍ଦର କଥା। ଆଶା କରାଯାଉ ଯେ ସରକାର ଭବିଷ୍ୟତରେ ଆଉ କିଛି ନିର୍ବାଚନ ମଣ୍ଡଳୀକୁ ଓଡ଼ିଆ କବିଙ୍କର ନାଁ ଦେବେ !

ନିକଟରେ ସମ୍ବାଦ ପ୍ରକାଶ ପାଇଥିଲା ଯେ କାଳିଦାସ ଓଡ଼ିଶାରେ ଜନ୍ମ ହୋଇଥିଲେ ବୋଲି ପ୍ରମାଣ ଖୋଜା ଯାଉଛି। ଏ କଥା ପ୍ରମାଣିତ ହୋଇଗଲେ ଜୟଦେବଙ୍କ ଭଳି କାଳିଦାସ ମଧ୍ୟ ଓଡ଼ିଶାରେ ବିଭିନ୍ନ ମର୍ଯ୍ୟାଦାର ଅଧିକାରୀ ହେବେ ଏବଂ ଦେବଭାଷା ସହିତ ଏ ଭଳି ଅସମ ପ୍ରତିଯୋଗିତାରେ ଓଡ଼ିଆ ଓ ଓଡ଼ିଆ ଲେଖକମାନେ ପଛରେ ରହିଯିବେ।

ସମ୍ମାନମାନଙ୍କ ବ୍ୟତୀତ ଲେଖକମାନେ ସମାଜ ପାଖରୁ ଯେଉଁ ଭୌତିକ ଓ ସାଂସାରିକ ଜିନିଷ ଚାହାଁନ୍ତି ତା ହେଲା ଆଶ୍ରୟ ଓ ପୃଷ୍ଠପୋଷକତା। ଏହା ସବୁବେଳେ ଲେଖକମାନଙ୍କ ପାଇଁ ଉଭୟ ଆଶୀର୍ବାଦ ଓ ଅଭିଶାପ। ଆମ ସମାଜରେ ଯେତେବେଳେ ରାଜା ମହାରାଜା

ଓ ଜମିଦାରମାନେ ରାଜୁତି କରୁଥିଲେ, ସେମାନେ ବାଇନାଚ ଓ ମଲ୍ଲଯୁଦ୍ଧ ସହିତ ସାହିତ୍ୟକୁ ଏକ ମନୋରଂଜନର ମାଧ୍ୟମ ମନେ କରୁଥିଲେ ଓ ତାକୁ ପ୍ରୋତ୍ସାହନ ଦେଉଥିଲେ। କିଛି ରାଜା ତାଙ୍କ କୁମାରମାନଙ୍କୁ ଶିକାର ଶିଖାଇବା ପାଇଁ ବାଣୁଆ ରଖିଥିବା ସହିତ କବିଙ୍କୁ ମଧ୍ୟ ପୋଷୁଥିଲେ, ଯୁବରାଜଙ୍କୁ କବିତା ଲେଖା ଶିଖାଇବା ପାଇଁ। ପରବର୍ତ୍ତୀ ସମୟରେ ଯେତେବେଳେ ଏହି ପରାଙ୍ଗପୁଷ୍ଟ, ଅବସରବିନୋଦୀ ଧନିକ ଶ୍ରେଣୀ ଆଉ ରହିଲେ ନାହିଁ, ସେମାନଙ୍କ ସ୍ଥାନ ନେଇନେଲେ ହଠାତ୍-କୁବେର ଶିଳ୍ପପତି, ଖବର କାଗଜ ମୋଗଲ, ସରକାର ଇତ୍ୟାଦି। ଗତ ଅର୍ଦ୍ଧଶତାବ୍ଦୀରେ ସେମାନେ ତିଆରି କଲେ ଟ୍ରଷ୍ଟ, ଫାଉଣ୍ଡେସନ, ସମିତି ଓ ଏକାଡେମି, ଏବଂ ଲେଖକଙ୍କୁ ଦାନ ଅନୁଦାନ ପୁରସ୍କାର ମାନପତ୍ର ଓ ଫେଲୋଶିପ ଦେଇ ସମ୍ମାନିତ ଓ ବଶୀଭୂତ କରିବାରେ ଲାଗିଲେ।

କିଛି ଲେଖକ ସବୁ ସମୟରେ ଏହି ପୃଷ୍ଠପୋଷକମାନଙ୍କ ପଛରେ ଗୋଡ଼ାଣିଆ ଥିଲେ। ରାଜା ଓ ଜମିଦାରଙ୍କ ଦରବାରରେ ଭାଟ ଗାୟକ ବିଦୂଷକ ସୁନାରୀ ଗଣିକା ମଲ୍ଲ ଓ ଐନ୍ଦ୍ରଜାଲିକଙ୍କ ସହିତ କବିମାନେ ମଧ୍ୟ ଯାଇ ବସୁଥିଲେ। କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ମୌର୍ଯ୍ୟ ସାମ୍ରାଜ୍ୟରେ କାମ କରୁଥିବା ଲୋକଙ୍କର ଯେଉଁ ବେତନ ତାଲିକା ଅଛି ସେଥିରେ କବି ମଧ୍ୟ ଅଛନ୍ତି। ତା' ଅନୁସାରେ କବିଙ୍କର ଦରମା ଥିଲା ଏକ ହଜାର ପଣ, ଯାହା ତୃତୀୟ ଶ୍ରେଣୀର ଗଣିକାଙ୍କର ଦରମା ସହିତ ସମାନ ଥିଲା।

ଓଡ଼ିଶାର ପ୍ରାଚୀନ କବିମାନେ ରାଜ ଅନୁଗ୍ରହ ଖୋଜୁଥିବାର ଅନେକେ ଉଦାହରଣ ଅଛି। ଦରବାରରେ ଲଙ୍ଗର ପଙ୍ଗର ହେଉଥିବା କବିମାନେ ଟଙ୍କା ନେଇ ନିଜର କାବ୍ୟକୁ ରାଜାଙ୍କ ନାଁରେ ଭଣତି କରି ଦେଉଥିଲେ। ବ୍ରଜନାଥ ବଡ଼ଜେନା ଢେଙ୍କାନାଳ ରାଜାଙ୍କ ଉଦ୍ଦେଶ୍ୟରେ ଲେଖିଥିଲେ :

କି ହେବ ଏ ଗୁଣ ଥାଇ ଛାମୁରୁ ତ ଦୟା ନାହିଁ
ପରପୁରୁଷେ କି ଯାଇ ଯୁବତୀ କାଳ
ଦିଅ ଶଏ ଟଙ୍କା ମତେ କଉଁ ରାଜା ଦେବେ କେତେ
ପ୍ରଭୁ ଥାଉ ବିଟପୀ ହେଲିଟି କେବଳ

ଛାମୁ ନାଏଁ ଛାନ୍ଦ ବୋଲନ୍ତି
କାଳକାଳକୁ ତ ରହିଥାନ୍ତା କୀରତି।

ଢେଙ୍କାନାଳ ରାଜାଙ୍କ ସହିତ ଶେଷରେ ଦର ନ ପଟିବାରୁ ବ୍ରଜନାଥ ତାଙ୍କର 'ଅମ୍ବିକା ବିଳାସ' କାବ୍ୟକୁ କେନ୍ଦୁଝର ରାଜାଙ୍କ ନାଁରେ ଭଣତି କରିଥିଲେ।

ପରବର୍ତ୍ତୀ ସମୟରେ ରାଧାନାଥ ରାୟ ପ୍ରମୁଖ କବିମାନେ ମଧ୍ୟ ସେମାନଙ୍କର ଲେଖାକୁ ରାଜାମାନଙ୍କ ଶ୍ରୀ ଛାମୁରେ ଭେଟି ଦେବାର ପ୍ରଥାକୁ ଜାରି ରଖିଲେ। କବିବରଙ୍କର ଉତ୍ସର୍ଗ

ପତ୍ରମାନଙ୍କରେ ରାଜାମାନଙ୍କର ଅତିରଂଜିତ ସ୍ତୁତି ରହୁଥିଲା, ଏଥିରେ ଆଠମଲ୍ଲିକ ରାଜା ହୋଇ ଯାଉଥିଲେ ନିଖିଳ ଗୁଣ ନିଧାନ ଅଷ୍ଟମଲ୍ଲିକାଧୀଶ୍ୱର ଏବଂ ଅନ୍ୟ ରାଜା ଅଶେଷ ସଦ୍‌ଗୁଣ ନିଧାନ, ବିଦ୍ୟୋତ୍ସାହୀ ପ୍ରବର ଓ ସର୍ବକଲ୍ୟାଣ ଭାଜନ। ସେହିପରି ଭକ୍ତକବି ମଧୁସୂଦନ ରାଓଙ୍କର ଭକ୍ତି ଈଶ୍ୱରଙ୍କଠାରେ ସୀମିତ ନଥିଲା। ପରମେଶ୍ୱରଙ୍କ ପାଇଁ ସ୍ତବ ଓ ସ୍ତୋତ୍ରମାନ ଲେଖିବା ସହିତ ସେ ଲେଖିଛନ୍ତି ବାମଣ୍ଡା ରାଜାଙ୍କ ପାଇଁ ୨୭୬ ଧାଡ଼ିର ଦୀର୍ଘ ପ୍ରଶସ୍ତି ଓ ଢେଙ୍କାନାଳ ରାଜାଙ୍କ ପାଇଁ 'ଜୟମଙ୍ଗଳାଷ୍ଟକ' କବିତା। ଇଂରେଜ ଶାସନ ସମୟରେ ଗୋରା ଅଫିସରମାନେ ମଧ୍ୟ ଲେଖକମାନଙ୍କର ସ୍ତୁତିର ଭାଜନ ହେଲେ। ଫକୀରମୋହନ ସେନାପତି ରେଭେନଶାଙ୍କୁ 'ମହାତ୍ମା' ବୋଲି ବର୍ଣ୍ଣନା କରି ଓଡ଼ିଆ ସାହିତ୍ୟର ସୁବର୍ଣ୍ଣ ଯୁଗକୁ 'ରେଭେନ୍ସା ଯୁଗ'ର ଆଖ୍ୟା ଦେଇଛନ୍ତି ଏବଂ 'ଉତ୍କଳ ଭ୍ରମଣଂ'ରେ ରେଭେନ୍‌ଶାଙ୍କ ନାଁ ଆଗରେ ପାଞ୍ଚଟି 'ଧନ୍ୟ' ଯୋଗ କରିଛନ୍ତି।

ଆପଣମାନେ ଯଦି ଭାବୁଛନ୍ତି ଏ ସବୁ ପୁରୁଣା କଥା, ମୁଁ ନିକଟ ଅତୀତରେ ଜଣେ ଲେଖକଙ୍କର ଏପରି କାକୁତିମିନତିର କେତୋଟି ଧାଡ଼ି ପଢ଼ି ଶୁଣାଉଛି :

ବାରବାର ଛାମୁ ଦରଶନ ଆଶେ
ଯାଇ ପ୍ରଜାତନ୍ତ୍ର ଫେରୁଛି ନିରାଶେ।
ଶତ ଶତ ବହି ଉତ୍କଳ ଭାଷାରେ
ଲେଖି ଭୋକେ ପଡ଼ି ମରୁଛି ବସାରେ।
ସରକାର ବୃତ୍ତି ଦେବେ ଦେବେ କହି
ଗଲାଣି ତ ବାରମାସ ଆସି ବହି।
ସଚିବମାନଙ୍କ ନ ପଡ଼େ ନଜର
ଏହା ଚିନ୍ତି ଘୋଟିଯାଏ ଚିନ୍ତା ଜ୍ୱର।

ଏହାକୁ ଲେଖିଥିଲେ ବୈଷ୍ଣବ ପାଣି ଏବଂ ପଂକ୍ତିଗୁଡ଼ିକ ଥିଲା ହରେକୃଷ୍ଣ ମହତାବଙ୍କ ପାଇଁ ଉଦ୍ଦିଷ୍ଟ।

ଏଥିରୁ ଏକଥା ଭାବିବା ଭୁଲ୍ ହେବ ଯେ ସବୁ କବି ସବୁବେଳେ ଚାଟୁକାରୀ ଓ ସ୍ତାବକ ଥିଲେ। ସେମାନଙ୍କ ମଧ୍ୟରେ ସ୍ୱାଧୀନଚେତା, ମର୍ଯ୍ୟାଦାବନ୍ତ ଓ ସ୍ୱାଭିମାନୀ କବି ମଧ୍ୟ ଥିଲେ। ଏ ଭଳି ଜଣେ କବି ଦୀନକୃଷ୍ଣ ଦାସ ଲେଖିଥିଲେ :

କବି ଯା କରେ ମୂର୍ଖକୁ ସ୍ତୁତି
ଏଥିରୁ ବଳି ନାହିଁ ବିପତ୍ତି
ଏଥିକି ପ୍ରତି ଛାତିକି କାତି ମାରିବା ଭଲ ଯେ।

ଦୀନକୃଷ୍ଣଙ୍କ ନିଜ ଜୀବନରେ ମଧ୍ୟ ଏ ଭଳି ପରୀକ୍ଷାର ସମୟ ଆସିଥିଲା। 'ଦାର୍ଢ୍ୟତା ଭକ୍ତି'ର ବର୍ଣ୍ଣନା ଅନୁସାରେ ରାଜା ଦିବ୍ୟସିଂହ ଦେବ ଦୀନକୃଷ୍ଣଙ୍କୁ ଅନୁରୋଧ କରିଥିଲେ ତାଙ୍କ ନାଁ'ରେ ଗୋଟିଏ କାବ୍ୟ ଭଣତି କରିଦେବା ପାଇଁ। 'ଦାର୍ଢ୍ୟତା ଭକ୍ତି' ଭାଷାରେ :

ଦିବ୍ୟସିଂହ : ମୋ ନାମେ ଭଣିଲେ ଅବଶ୍ୟ
ଅନେକ ଦେବି ଗ୍ରାମ ଦେଶ।
ମୋ ରାଜ୍ୟେ ଦେବି ଅଧିକାର
ଦେଖ ମୁଁ ଜଗତ ଈଶ୍ୱର।
ନୋହିଲେ ମରିବୁ ଅବଶ୍ୟ
ଛାଡ଼ ତୋ ଜୀବନର ଆଶ।

ଦୀନକୃଷ୍ଣ : ବୋଇଲା ଶୁଣ ନୃପନାଥ
କେବଳ ଦେବ ଜଗନ୍ନାଥ।
ଏ ପିଣ୍ଡ ବିକିଅଛି ତାରେ
ଗୀତ ମୁଁ ନ ବୋଲେ ଅନ୍ୟରେ।
ଏ କଥା ଅନ୍ୟ ହେବ କାହୁଁ
ଦୁଃଖ ନକରି ଆଜ୍ଞା ଦେଉ।
ତୁମ୍ଭଙ୍କୁ ନାହିଁ ମୋର ଡର
ମୋ ପ୍ରଭୁ ବଳେ ବଳୀୟାର।
ଜଗତ ସୃଷ୍ଟି ଆନ ହେଲେ
ଗୀତ ମୁଁ ଆନକୁ ନ ବୋଲେ।

ସେତେବେଳର ସାମନ୍ତବାଦୀ ଯୁଗରେ ଦୀନ କବି ଦୀନକୃଷ୍ଣ ଯଦି ରାଜାଙ୍କର ପ୍ରଲୋଭନ ଓ ଡରାଣକୁ ଉପେକ୍ଷା କରି ପାରିଥିଲେ, ଆଜିର ଲେଖକ ପକ୍ଷରେ ତା' ନିଶ୍ଚୟ ସମ୍ଭବ। ଆମର ଲେଖକମାନଙ୍କ ପାଇଁ ସାହିତ୍ୟକୁ ବୃତ୍ତି କରି ଚଳିବା ସମ୍ଭବ ନୁହେଁ, ତେଣୁ ସେମାନେ ସମାଜର ସମସ୍ତଙ୍କ ଭଳି ଅନ୍ୟ ଏକ ରୋଜଗାର କରିବାର ଜୀବିକା ନେବାକୁ ବାଧ। ଏଇଟି ଯେ କୌଣସି ପେଶା ହୋଇପାରେ, ସାହିତ୍ୟ ସେବା ପାଇଁ ଭାରତୀୟ ପ୍ରଶାସନ ସେବା ଜରୁରୀ ନୁହେଁ। ରବିବାରିଆ ଲେଖକକୁ ସାହିତ୍ୟ ପାଇଁ କାହାରି ଉପରେ ନିର୍ଭର କରିବାକୁ ପଡ଼େ ନାହିଁ। ସଂଗୀତ ନୃତ୍ୟ ନାଟକ ଓ ସିନେମା ଭଳି କଳାମାନଙ୍କରେ ପୁଞ୍ଜି ଦରକାର ଓ ସେଥିପାଇଁ ପୃଷ୍ଠପୋଷକ ଲୋଡ଼ା। ଲେଖକ ପାଇଁ କିନ୍ତୁ ସେ ଭଳି କୌଣସି ଆବଶ୍ୟକତା ନାହିଁ, ତାର ଦରକାର କେବଳ ଦିସ୍ତାଏ ସାଦା କାଗଜ ଓ ଗୋଟିଏ ବଲ ପଏଣ୍ଟ କଲମ!

ସଂସାର ପାଇଁ ସାହିତ୍ୟ ଉପରେ ନିର୍ଭର କରୁ ନଥିବା ଗୋଟିଏ ଦୃଷ୍ଟିରୁ ଆଶୀର୍ବାଦ ଭଳି, କାରଣ ସେଥିଯୋଗୁଁ ନିଜର ସାହିତ୍ୟ ପାଇଁ ଲେଖକ କାହାରି ପାଖରେ ବାନ୍ଧି ହୋଇ ରହିବ ନାହିଁ ବା ତାକୁ କାହାରି ଆଗରେ ମୁଣ୍ଡ ନୁଆଇଁବାକୁ ପଡ଼ିବ ନାହିଁ। ସେ ବାଧବାଧକତାରେ ଲେଖିବ ନାହିଁ ଅଥବା ବରାଦୀ ଲେଖା ଲେଖିବ ନାହିଁ। ତା ଲେଖାରେ କାହାରି ଚାଟୁକାରିତା କରିବାର ଆବଶ୍ୟକତା ନଥିବ। ସାହିତ୍ୟରୁ କୌଣସି ଲାଭର ଲୋଭ ନଥିବାରୁ ସେ ଲୋକପ୍ରିୟ ଶସ୍ତା ସାହିତ୍ୟ ଲେଖିବାରେ ମନ ବଳାଇବ ନାହିଁ।

ଅବଶ୍ୟ ଲେଖକର ଏତେ ସବୁ ସ୍ୱାଧୀନତା ନଷ୍ଟ ଓ ଶେଷ ହୋଇଯିବ ଯଦି ସେ ପଦପଦବୀ ପୁରସ୍କାର ଓ ବାହାବା ପଛରେ ଗୋଡ଼ାଏ। ଲେଖକକୁ ମନେ ରଖିବାକୁ ହେବ ଯେ ଏ ସବୁ ଉପରଠାଉରିଆ ସରାଗ ତାକୁ ବଞ୍ଚାଇ ରଖିବେ ନାହିଁ, କିଛି ଲୋକ ଯଦି ତାକୁ ମନେ ରଖିବେ ତା କେବଳ ତା ଲେଖା ପାଇଁ। ସେଥିପାଇଁ ପ୍ରତ୍ୟେକ ଲେଖକକୁ ଏ ବିଷୟରେ ନିଜର ନିର୍ଣ୍ଣୟ ନେବାକୁ ପଡ଼ିବ।

ଲେଖକ ଓ ସମାଜ ବିଷୟରେ ଏତେ କଥା କହିବା ପରେ ମୁଁ ଏ ବିଷୟକୁ ଗୋଟିଏ ଅନ୍ୟ ଦୃଷ୍ଟିକୋଣରୁ ଦେଖିବାକୁ ଚାହୁଁଛି। ମୁଁ ଆରମ୍ଭରେ କହିଥିଲି ଯେ ଲେଖକ ସ୍ୱୀକୃତି ଓ ସମ୍ମାନ ଖୋଜିବା ଉଚିତ କେବଳ ପାଠକ ପାଖରୁ। ଲେଖକମାନଙ୍କର କିନ୍ତୁ ଅଭିଯୋଗ ଯେ ସମାଜ ସେମାନଙ୍କୁ ଯଥେଷ୍ଟ ସମ୍ମାନ ଦେଉନାହିଁ। ମୋ ମତରେ ଏ ଭଳି ମନୋଭାବ ସଂପୂର୍ଣ୍ଣ ଭିତ୍ତିହୀନ। ଲେଖକ ଓ କଳାକାରଙ୍କ ବାହାରେ ଆହୁରି ଅନେକ ସହାୟକ ଗୋଷ୍ଠୀ ଅଛନ୍ତି, ଯେଉଁମାନେ ବୋଧହୁଏ ସମାଜ ପାଇଁ ଅଧିକ ଆବଶ୍ୟକ ଓ ଅପରିହାର୍ଯ୍ୟ, ଯଥା, ଡାକ୍ତର ଇଞ୍ଜିନିୟର ବୈଜ୍ଞାନିକ ଶିକ୍ଷକ ସାମ୍ବାଦିକ ଶିଳ୍ପପତି ଠିକାଦାର ସମାଜସେବୀ ଇତ୍ୟାଦି। ମୋର ଧାରଣା, ଏହି ବର୍ଗମାନଙ୍କୁ ଉପେକ୍ଷା କରି ଆମ ସମାଜରେ ଲେଖକ ଓ କଳାକାରଙ୍କୁ ମାତ୍ରାଧିକ ସମ୍ମାନ ମିଳୁଛି। ଏକ ବୃହତ୍ତର ପରିପ୍ରେକ୍ଷୀରେ ଏ ଭଳି ଏକ ରୀତି ସମାଜର ସର୍ବାଙ୍ଗୀନ ଅଭିବୃଦ୍ଧି ଓ ବିକାଶ ପାଇଁ ଆଦୌ ଭଲ ଲକ୍ଷଣ ନୁହେଁ, ଏହା ମୋର ବିଶ୍ୱାସ।

*ସେପ୍ଟେମ୍ବର ୨୦୧୧*
*ଅନୁପମ ଭାରତ ଜନ୍ମଦିନ ସଭା*

# ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ଓ ମୁଁ

ମୋ ପଢ଼ା ଘର ଟେବୁଲ ଉପରେ ଯେଉଁ ସବୁ ବହି ସ୍ଥାୟୀ ଭାବରେ ରହିଛନ୍ତି ଏବଂ ଯାହାଙ୍କ ସହିତ ମୋର ପ୍ରତିଦିନର ସଂପର୍କ, ସେଗୁଡ଼ିକ ହେଲେ ଇଂରେଜୀ ହିନ୍ଦୀ ବଙ୍ଗଳା ଓ ଓଡ଼ିଆ ଭାଷାରେ ଅଭିଧାନ, ପର୍ଯ୍ୟାୟବାଚୀ କୋଷ, ସମାର୍ଥ ଶବ୍ଦକୋଷ ଭଳି ବହି। ଏଥିରୁ ଓଡ଼ିଆ ବହିଗୁଡ଼ିକ ହେଲା : କୃଷ୍ଣଚନ୍ଦ୍ର କରଙ୍କର ତରୁଣ ଶବ୍ଦକୋଷ, ଶ୍ରୀଧର ଦାସଙ୍କର ନବ ଅଭିଧାନ ଓ ବିବିଧ କୋଷ, ପ୍ରଫୁଲ୍ଲ କୁମାର ତ୍ରିପାଠୀଙ୍କର ଶବ୍ଦନିଧି ଇତ୍ୟାଦି। ଯେଉଁ ଗୋଟିଏ ବହି ମୁଁ ବିଶେଷ ଭାବରେ ମୋ ଟେବୁଲ ଉପରେ ରଖିବାକୁ ଚାହେଁ କିନ୍ତୁ କଳେବର ଦୃଷ୍ଟିରୁ ଯାହା ସମ୍ଭବ ନୁହେଁ ସେଇଟି ହେଲା ଗୋପାଳ ଚନ୍ଦ୍ର ପ୍ରହରାଜଙ୍କର ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ।

ଏହି ଗ୍ରନ୍ଥଟି ସହିତ ମୋର ପରିଚୟ ପିଲା ଦିନରୁ। ମତେ ଯେତେବେଳେ ଆଠ ଦଶ ବର୍ଷ ହୋଇଥିଲା, ଆମ ଦାଣ୍ଡଘର (ସେତେବେଳେ ମଧ୍ୟବିତ୍ତ ପରିବାରର ଏଇ କୋଠରିଟିକୁ ଡ୍ରଇଙ୍ଗ ରୁମ୍ କହିବାର ବିଧି ନଥିଲା) କାଚବନ୍ଧା ବହି ଆଲମାରୀରେ ପୁରୁଣା ଓଡ଼ିଆ ବଙ୍ଗଳା ପତ୍ରିକା ଓ ବହି ସହିତ ଗୋଟିଏ ପୂରା ଥାକକୁ ମାଡ଼ି ବସିଥିବା ସାତଖଣ୍ଡ ମୋଟା ବହି ଥିଲା- ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ। ଏହି ବହିର କିଛି ପୃଷ୍ଠାରେ ବହିଟିର ସ୍ୱତ୍ୱ ଜଣାଇବା ପାଇଁ ବାପା(ଶ୍ରୀଧର ଦାସ ୧୯୦୨-୧୯୮୮)ଙ୍କର ନାଁ ଓ ଠିକଣା ଲେଖା ବାଇଗଣି ରଙ୍ଗର ରବର ଷ୍ଟାମ୍ପ ଥିଲା। ଏଭଳି ମୋହର ବ୍ୟବହାର ସେ ସମୟରେ ଅତି ଲୋକପ୍ରିୟ ପ୍ରଥା ଥିଲା। ତା ବ୍ୟତୀତ ବହିର ମୁଖ ପୃଷ୍ଠାରେ ହାତଲେଖା ଥିଲା, 'ଶ୍ରୀମାନ ଶ୍ରୀଧର ଦାସ ଗ୍ରାହକ ୫୬୪ ନମ୍ବର ଗୋପାଳ ଚନ୍ଦ୍ର ପ୍ରହରାଜ ୮।୬।୪୪'।

ଏ ଲେଖା ଦେଖି ଆମକୁ ବର୍ତ୍ତମାନ ଆଶ୍ଚର୍ଯ୍ୟ ଲାଗିବ ପ୍ରହରାଜ ମହାଶୟ କିପରି ପ୍ରତିଟି ଗ୍ରାହକକୁ ବ୍ୟକ୍ତିଗତ ଭାବେ ବହିଟି ପହଞ୍ଚାଉଥିଲେ। ଆହୁରି ଆଶ୍ଚର୍ଯ୍ୟର କଥା ଯେ ସତୁରି ବର୍ଷ ତଳେ ଏହି ଦାମିକା ବହିଟି ପାଇଁ ଓଡ଼ିଆରେ ଅନ୍ତତଃ ୫୬୪ ଜଣ ଗ୍ରାହକ ଥିଲେ।

ଆଲମାରୀରୁ ବାହାର କରି ତାକୁ ଟେବୁଲ ଉପରେ ଅତି କଷ୍ଟରେ ରଖୁଥିବା ଏହି ସାତ ଖଣ୍ଡ ବହି ସେଇ ପିଲାଦିନେ ମୋ ପାଇଁ ଜ୍ଞାନର ଏକ ଅସରନ୍ତି ଗନ୍ତାଘର ଥିଲା। ଯେ କୌଣସି ଖଣ୍ଡର ଯେ କୌଣସି ପୃଷ୍ଠାକୁ ଖୋଲିଲେ ସେଥିରୁ କେବଳ ଶବ୍ଦର ଅର୍ଥ ନୁହେଁ, ଆହୁରି ଅନେକ ଜାଣିବାର କଥା ଥିଲା। ଏଇଟି କେବଳ ଗୋଟିଏ ଶବ୍ଦାଭିଧାନ ନଥିଲା,

ଥିଲା ଏକ ସଂପୂର୍ଣ୍ଣ ଜ୍ଞାନକୋଷ। ମୋର ଏ ପର୍ଯ୍ୟନ୍ତ ମନେ ଅଛି 'ଚ' ଅକ୍ଷର ତାଲିକାରେ ଗୋଟିଏ ନାମବାଚକ ଶବ୍ଦ ଥିଲା 'ଚନ୍ଦ୍ରଚୋର ବାହିନୀପତି'। ଏହି ପଣ୍ଡିତ କୁଆଡ଼େ ଥରେ ଭୁଲ୍‌ରେ ପୂର୍ଣ୍ଣିମାକୁ ଅମାବାସ୍ୟା କହି ନିଜକୁ ସଠିକ୍ ପ୍ରମାଣିତ କରିବା ପାଇଁ ରାତିରେ ଚନ୍ଦ୍ରକୁ ଲୁଚାଇ ଦେଇଥିଲେ। ! ସେଇ ଭଳି ମୋର ମନେ ଅଛି 'ସାପ' ଶବ୍ଦ ଉପରେ ଏକ ସୁଦୀର୍ଘ ରଚନା।

ସେତେବେଳର ଆଉ ଏକ ନିଷିଦ୍ଧ ଦୁଃସାହସ ଥିଲା ବହିଗୁଡ଼ିକରୁ ଖୋଜି ଖୋଜି ଅଶ୍ଳୀଳ ଶବ୍ଦ ଦେଖିବା। ଭାଷାକୋଷରେ ଏହି ଶବ୍ଦମାନଙ୍କୁ ସ୍ଥାନିତ କରିଥିବାରୁ ପ୍ରହରାଜଙ୍କୁ ସମାଲୋଚନାର ଶରବ୍ୟ ହେବାକୁ ପଡ଼ିଥିଲା। ଇଂରେଜୀ ଅଭିଧାନରେ ପ୍ରଥମ ବିଧିବଦ୍ଧ ସଂକଳକ ସାମୁଏଲ ଜନସନ ତାଙ୍କ ଅଭିଧାନରେ ଅଶ୍ଳୀଳ ଶବ୍ଦ ଅନ୍ତର୍ଭୁକ୍ତ କରି ନଥିଲେ। କୁହାଯାଏ ଯେ କେତେକ ସମ୍ଭ୍ରାନ୍ତ ଭଦ୍ରମହିଳା ଜନସନଙ୍କୁ ସାକ୍ଷାତ କରି ଏଥିପାଇଁ ବଧାଇ ଜଣାଇଥିଲେ। ସେମାନଙ୍କୁ ଜନସନଙ୍କ ଉତ୍ତର ଥିଲା, ଆପଣମାନେ ଯେ କଷ୍ଟ କରି ମୋ ଅଭିଧାନରୁ ସେହି ସବୁ ଶବ୍ଦ ଖୋଜିଥିଲେ, ସେଥିପାଇଁ ମୁଁ ଆପଣଙ୍କ ପାଖରେ କୃତଜ୍ଞ ! (ଏହି ସମ୍ବନ୍ଧରେ ସୂଚନାଯୋଗ୍ୟ ଯେ ନିକଟରେ ଶ୍ରୀ ଗୌରାଙ୍ଗ ଚରଣ ଦାଶ ଭାଷାକୋଷରେ ଅଶ୍ଳୀଳ ଶବ୍ଦର ସ୍ଥିତି ବିଷୟରେ ଏକ ଦୀର୍ଘ ନିବନ୍ଧ ଲେଖିଛନ୍ତି।)

ଆମ ଆଲମାରୀରେ ଥିବା ଗୋଟିଏ ପୁରୁଣା ପତ୍ରିକା(ସହକାର ? ନବଭାରତ ?)ରେ ମୁଁ ସେତେବେଳେ ଗୋଦାବରୀଶ ମହାପାତ୍ର ଭାଷାକୋଷର ଏକ କଠୋର ସମାଲୋଚନା କରିଥିବାର ଦେଖିଥିବା ମନେ ପଡ଼େ। ଅନ୍ୟ ସମାଲୋଚନା ସହ ସେ ଲେଖିଥିଲେ କିପରି ଭାଷାକୋଷର କଳେବର ବୃଦ୍ଧି କରିବା ପାଇଁ ଗୋଟିଏ ଶବ୍ଦର ଭିନ୍ନ ଭିନ୍ନ ଉଚ୍ଚାରଣକୁ ସ୍ୱତନ୍ତ୍ର ଶବ୍ଦ ଭାବେ ସ୍ଥାନ ଦିଆଯାଇଛି। ତା'ର ଉଦାହରଣ– ଏହିକ୍ଷଣି, ଏକ୍ଷଣି, ଏ ଖୁଣିକା, ଅଇଛୁଣି, ଅଇଛୁଣିକା ଇତ୍ୟାଦି। ସେ ଭାଷାକୋଷକୁ ପାଳକୋଷ ଆଖ୍ୟା ଦେଇଥିଲେ।

ଭାଷାକୋଷ ପ୍ରକାଶିତ ହୋଇଥିଲା ୧୯୩୧ରୁ ୧୯୪୦ ମଧ୍ୟରେ। ୧୯୪୫ରେ ପ୍ରହରାଜଙ୍କର ମୃତ୍ୟୁ/ହତ୍ୟା ପରେ କେହି ଏ ବହିର ତତ୍ତ୍ୱ ନ ନେବାରୁ ଭାଷାକୋଷ ବଜାରରେ ମିଳୁନଥିଲା। ଉତ୍କଳ ସାହିତ୍ୟ ପ୍ରେସରେ ଭାଷାକୋଷର ଛପା ଫର୍ମା ପଡ଼ି ରହିଥିଲା ଏବଂ କେହି କେହି ଏହି ଅବନ୍ଧା କାଗଜକୁ ନେଇ ରଦ୍ଦି ହିସାବରେ ଅଥବା ବନ୍ଧାଇବା ଉଦ୍ଦେଶ୍ୟରେ ବିକ୍ରି କରୁଥିଲେ। ମୋର ମନେ ଅଛି ଷାଠିଏ ଦଶକରେ ଉତ୍କଳ ସାହିତ୍ୟ ପ୍ରେସ୍‌ର ତତ୍କାଳୀନ ସ୍ୱତ୍ୱାଧିକାରୀ ବିଶ୍ୱନାଥ କରଙ୍କ ପୌତ୍ର ସୁନନ୍ଦ କର ଘର ଘର ବୁଲି ଅବନ୍ଧା ଭାଷାକୋଷ ବିକ୍ରି କରିବାକୁ ଚେଷ୍ଟା କରୁଥିଲେ।

ଏତେ ବର୍ଷ ପରେ ଭାଷାକୋଷ ପୁଣି ଉପଲବ୍‌ଧ ହେଲାଣି, ଏହାକୁ ବହି ଆକାରରେ ଛାପିଛନ୍ତି ଲାର୍କ ବୁକ୍ସ ଓ ଇ-ସଂସ୍କରଣ ବାହାର କରିଛନ୍ତି ସୃଜନିକା। ଏହି ଦୁଇଟି ସଂସ୍ଥା ପକ୍ଷରୁ ଅନ୍ୟ ପୁରୁଣା ବହି ଓ ପତ୍ରିକାର ମଧ୍ୟ ପୁନଃପ୍ରକାଶ ହୋଇଛି। ଏଥିପାଇଁ ଏ ଅନୁଷ୍ଠାନର ଶ୍ରୀ ମହେନ୍ଦ୍ର ମିଶ୍ର ଓ ଶ୍ରୀ ନିଖିଳ ମୋହନ ପଟ୍ଟନାୟକ ଆମର ଧନ୍ୟବାଦର ପାତ୍ର।

୧୯୭୯ ମସିହାରେ ମୁଁ ଯେତେବେଳେ ପୁରୀର ଚିତ୍ରକଳା ବିଷୟରେ ଗବେଷଣା ଆରମ୍ଭ କଲି, ଭାଷାକୋଷ ମୋ ପାଇଁ ବିଶେଷ ସହାୟକ ହୋଇଥିଲା। ମୋର ବିଭିନ୍ନ ସଂଶୟର ସମାଧାନ ପାଇଁ ମୁଁ ଏହାର ଆଶ୍ରୟ ନେଉଥିଲି। ଯଥା, ପୁରୀ ମନ୍ଦିରରର ଛତିଶାନିଯୋଗର ସେବକ କେଉଁମାନେ, କିଏ କିଏ ଚଉତିଶ ପାଟକରେ ଗଣା, ଚିତ୍ରକାରମାନେ ରଙ୍ଗ ତିଆରି କରିବାରେ ଯେଉଁ ମଇରିଗିରିଆ ବ୍ୟବହାର କରନ୍ତି ତାର ଇଂରେଜୀ କଣ (ଭାଷାକୋଷରେ – copper sulphate, blue vitriol) ଇତ୍ୟାଦି। ଏହି ତଥ୍ୟ ସବୁ ମତେ ସହଜରେ ଆଉ କୌଣସି ସୂତ୍ରରୁ ମିଳି ପାରି ନ ଥାନ୍ତା।

ଭାଷାକୋଷ ପୁଣି ମୋର ସହାୟକ ହେଲା ମୁଁ ଯେତେବେଳେ 'ଦେଶ କାଳ ପାତ୍ର' ବହି ଲେଖିବା ପାଇଁ ଗବେଷଣା କରୁଥିଲି। ଏହି ସମୟରେ ମତେ ଊନବିଂଶ ଶତାବ୍ଦୀର ହାତଲେଖା ଦଲିଲ ପଢ଼ିବାକୁ ହେଉଥିଲା ଏବଂ ଏଗୁଡ଼ିକ ପ୍ରାୟ କରଣୀ ଅକ୍ଷରରେ ଲେଖା ଥିଲା। ଭାଷାକୋଷରେ କରଣୀ ବା ଛଟା ଅକ୍ଷରର ଅର୍ଥ ସହିତ ଏକ ସାରଣୀ ଥିଲା ଯେଉଁଥିରେ ପ୍ରତିଟି ଛଟା ଅକ୍ଷର ଦେଖାଇ ଦିଆଯାଇଥିଲା। ଏ ଭଳି ସରଣୀ ମୁଁ ଆଉ କେଉଁଠାରେ ଦେଖିବାକୁ ପାଇ ନ ଥିଲି।

ଏହି ସମୟରେ କାଲିଫର୍ନିଆ ବର୍କଲେ ବିଶ୍ୱବିଦ୍ୟାଳୟର ପ୍ରଫେସର ଜୋଆନା ଉଇଲିଆମ୍‌ସ୍ ଓ ମୁଁ ମିଶି ଧରାକୋଟ ମୃଣ୍ମୟରାଇର ପୋଥି ଚିତ୍ରକର ରଘୁନାଥ ପୃଷ୍ଟିଙ୍କ ଉପରେ ଗବେଷଣା କରୁଥିଲୁ। ପୃଷ୍ଟିଙ୍କର କିଛି ପୋଥିର ପୁଷ୍ପିକାରେ ସେ ବଳଦିଆ ତେଲି ବୋଲି ଲେଖା ଥିଲା ଏବଂ ଅନ୍ୟ ପୋଥିରେ ହଳଦିଆ ତେଲି । ଆମେ ଭାବିଲୁ ଯେ ହଳଦିଆ ତେଲି ଠିକ ଓ ବଳଦିଆ ଏକ ବନାନ ପ୍ରମାଦ। ଭାଷାକୋଷରୁ କିଛି ସାହାଯ୍ୟ ମିଳିପାରେ ବୋଲି ମୁଁ ତାର ଶରଣ ନେଲି। ଏଥିରେ ହଳଦିଆ ଓ ବଳଦିଆ ଉଭୟ ଶବ୍ଦ ଥିଲା। ଏଥିରୁ ଜଣାଗଲା ଯେ ରଘୁନାଥ ପୃଷ୍ଟିଙ୍କ ଜାତିର ତେଲିମାନେ ବଳଦ ପିଠିରେ ହଳଦୀ ବ୍ୟବସାୟ କରୁଥିବାରୁ ସେମାନେ ଉଭୟ ବଳଦିଆ ତେଲି ଓ ହଳଦିଆ ତେଲି ଭାବେ ଜଣାଥିଲେ।

ଜୋଆନା ସେତେବେଳେ ଓଡ଼ିଶାରେ ରହି ଓଡ଼ିଆ ଭାଷା ଶିଖୁଥିଲେ ଏବଂ ସେଥିପାଇଁ ଗୋଟିଏ ଭାଷାକୋଷ ଖୋଜୁଥିଲେ। ମୁଁ ତାଙ୍କୁ ଆମର ଭାଷାକୋଷଟି ଦେଇ ଦେଇଥିଲି। ମୁଁ ସେତେବେଳକୁ ଦିଲ୍ଲୀରେ ରହୁଥିଲି ଏବଂ ଆବଶ୍ୟକ ପଡ଼ିଲେ ସାହିତ୍ୟ ଏକାଡେମି ଲାଇବ୍ରେରୀରେ ଥିବା ଭାଷାକୋଷକୁ ବ୍ୟବହାର କରୁଥିଲି।

୧୯୯୩ରେ ପିଲାଙ୍କ ପାଇଁ ଲେଖା ମୋର ଗୋଟିଏ କବିତା ବହି ବାହାରିଥିଲା, 'ଆଳିମାଳିକା'। ତରୁଣ ଶବ୍ଦକୋଷରେ ଏହାର ଅର୍ଥ ଏପରି ଥିଲା : ପେଡ଼ିରେ ମିଶାମିଶି ହୋଇ ସାଇତା ରହିଥିବା ହରେକ କିସମର ଛୋଟବଡ଼ ଅତି ଦରକାରୀ ଦ୍ରବ୍ୟ ସମୂହ। କିଛି ଦିନ ପରେ ସେଇ ଭଳି ଆଉ କିଛି କବିତାର ସଂକଳନ ପାଇଁ ଗୋଟିଏ ନାଁ ଖୋଜିବା ବେଳେ ମୋ ମନକୁ ଆସିଥିଲା 'ଆକୁକୁଚି ମାକୁକୁଚି'। କିନ୍ତୁ ତରୁଣ ଶବ୍ଦକୋଷରେ ଏ

ଶବ୍ଦଟି ନଥିଲା । ମୁଁ ସାହିତ୍ୟ ଏକାଡେମି ଲାଇବ୍ରେରୀକୁ ଯାଇ ଭାଷାକୋଷ ଦେଖିଲି ଏବଂ ଅତି ଆମୋଦିତ ହେଲି କାରଣ ଆଳୁକୁଚି ମାଳୁକୁଚି ଶବ୍ଦ ପାଖରେ ଲେଖା ଥିଲା : ଦେ.ବି(ଅର୍ଥାତ୍ ଦେଶଜ ବିଶେଷ୍ୟ) – ଆଳିମାଳିକା (ଦେଖ)। ଏବଂ ଆଳିମାଳିକା ପାଖରେ ଲେଖା ଥିଲା : ଦେ. ବି. – ଏଣୁ ତେଣୁ ବାଛେ ବସ୍ତୁମାନ – miscellaneous articles, miscellanies! ଏ ବିଷୟ ଏତିକିରେ ସରିଲା ନାହିଁ। ଏବେ ପ୍ରକାଶନ ପାଇଁ ଯାଉଥିବା ମୋର ଆଉ ଗୋଟିଏ ସଂକଳନ ପାଇଁ ମୁଁ ଗୋଟିଏ ନାଁ ଖୋଜୁଥିଲି ଏବଂ ପୂର୍ବପରି ଭାଷାକୋଷର ପରାମର୍ଶ ନେବି ବୋଲି ଭାବିଲି। ଏଥରକ କିନ୍ତୁ ମତେ ସାହିତ୍ୟ ଏକାଡେମୀ ଲାଇବ୍ରେରୀକୁ ଯିବାକୁ ପଡ଼ିଲା ନାହିଁ। ମୋ ପଢ଼ା ଟେବୁଲ ଉପରେ କଂପ୍ୟୁଟରରୁ ଭାଷାକୋଷ ଖୋଲି ମୁଁ ବହିଟିର ନାଁ ରଖିଛି 'ଆନମନା', ଯାହାର ଅର୍ଥ ପ୍ରହରାଜଙ୍କ ମତରେ : ଦେ.ଅ. (ଦେଶଜ ଅବ୍ୟୟ) – ଅନ୍ୟଥା, ଅନ୍ୟ ପ୍ରକାର – otherwise ।

୯୫୦୩ ପୃଷ୍ଠା ବ୍ୟାପୀ, ୨୪ X ୩୨ ସେଣ୍ଟିମିଟର ଆୟତନ(ହୁଏ ତ କେହି ତାର ଓଜନ ବି ବାହାର କରିପାରିବେ),ଦଶବର୍ଷ ସମୟକାଳ ଭିତରେ ପ୍ରକାଶିତ ସାତଖଣ୍ଡ ପୁରୁଣା ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ସହିତ ମୋର ପୁଣି ଥରେ ସାକ୍ଷାତ ହେଲା ଅନେକ ଅନେକ ବର୍ଷ ପରେ, ନିକଟରେ(ଅଗଷ୍ଟ ୨୦୧୪) ବର୍କଲେ ଯାଇଥିବା ବେଳେ। ସେଠାରେ ପ୍ରଫେସର ଉଇଲିଆମ୍‌ସ୍‌ଙ୍କ ଲାଇବ୍ରେରୀ ଥାକରେ ସଯତ୍ନରେ ରଖା ଯାଇଥିବା ଏହି ବୃହଦାକାର ଗ୍ରନ୍ଥମାନଙ୍କୁ ଦେଖି ମତେ କେଉଁ ପୁରୁଣା ଜ୍ଞାତିଙ୍କୁ ଭେଟିବା ଭଳି ଲାଗିଲା ଓ ମୁଁ ପୁଣି ପିଲାଦିନକୁ ଫେରିଗଲି।

ବର୍କଲେରେ ଥିବାବେଳେ ମୁଁ ବେଶ କିଛି ସମୟ କଟାଇଥିଲି ଭାଷାକୋଷ ସହିତ। ଏବଂ ମୋର ଅନେକ ନୂଆ ଉପଲବ୍‌ଧି ହୋଇଥିଲା। ମତେ ଜଣା ନଥିଲା ଯେ ବାପା ଏ ବହିଟିକୁ ତନ୍ନ ତନ୍ନ କରି ପଢ଼ିଥିଲେ ଏବଂ ବିଭିନ୍ନ ଶବ୍ଦ ପାଖରେ ନିଜର ଟିପ୍ପଣୀ ରଖିଥିଲେ। ଯଥା ୬୩୫୪ ପୃଷ୍ଠାରେ ଥିବା 'ମହାକବି ପ୍ରୟୋଗ' ଶବ୍ଦର ଧାରରେ ସେ ହାତରେ ଲେଖିଛନ୍ତି, ସଂସ୍କୃତରେ ପରୋକ୍ଷେ କାର୍ଯ୍ୟ ହନ୍ତାରଂ ପ୍ରତ୍ୟକ୍ଷେ ପ୍ରିୟ ବାଦିନଂ। ପ୍ରତ୍ୟକ୍ଷ ଓ ପରୋକ୍ଷ ଅବ୍ୟୟ ହେଲେ ହେଁ ଏଥିରେ ବିଭକ୍ତି ଯୁକ୍ତ ହୋଇଛି। ପ୍ରଭ୍ରଂଶୟାଂ ଯୋ ନହୁଷଂ ଚକାର – ବ୍ୟାକରଣ ଦୋଷ !

୫୫୪୬ ପୃଷ୍ଠାରେ 'ବାରିପର୍ଣ୍ଣୀ' ଶବ୍ଦ ପୂର୍ବରୁ ସେ ହାତରେ 'ବାରିନିଧି' ଶବ୍ଦ ଲେଖିଛନ୍ତି ଯାହା ଭାଷାକୋଷରେ ସ୍ଥାନିତ ନଥିଲା। ସେହିପରି ୬୩୬୬ ପୃଷ୍ଠାରେ 'ମସୃଣ' ଶବ୍ଦ ପୂର୍ବରୁ ସେ ଲେଖିଛନ୍ତି, 'ମସୂରିକା – ବି. ବସନ୍ତ ରୋଗ'। ୬୩୬୬ ପୃଷ୍ଠା ତଳେ ଲେଖିଛନ୍ତି 'ମାନବିକ ?' ଯାହା ଭାଷାକୋଷରେ ନାହିଁ। ଅନ୍ୟମନସ୍କ ଭାବରେ ଗୋଟିଏ ଖଣ୍ଡର ପୃଷ୍ଠା ଓଲଟାଇବା ବେଳେ ଏତେ କଥା ମୋ ଆଖିରେ ପଡ଼ିଥିଲା। ଆଉଖଣ୍ଡମାନଙ୍କରେ ଆଉ କେତେ କଣ ଟିପ୍ପଣୀ ଥିବ କେଜାଣି ? ପ୍ରଥମ ଖଣ୍ଡରେ ତାଙ୍କ ହାତଲେଖା ଗୋଟିଏ ଚିଠା ଲାଗିଛି :

I was a student of both Mr. F.B Whitmore and Mr. W. W. Henderson. Mr. Whitmore was the Principal of Cuttack Training College(now Radhnath Trg. College) upto X'Mas holidays of 1929 when he went home on leave and he was succeeded by Mr. Henderson who remained as Principal till July 1930 when he committed suicide. Mr. Praharaj has put Mr. Henderson as predecessor of Mr. Whitmore. This is not correct. The mistake was brought to the notice of Mr. Praharaj who promised to correct it in the next edition.

ଏହି ଖଣ୍ଡର ଉପକ୍ରମଣିକାରେ ପ୍ରହରାଜ ଲେଖିଥିଲେ :

The Late Mr. Henderson, who at first suggested to me to undertake the compilation of this work in 1913 came to Cuttack as Principal of the Cuttack Training College in 1929. He has volunteered to correct the proof-sheets of this work. Unfortunately by his untimely death I lost a valuable co-operator. Mr. F.B. Whitmore who succeeded him as Principal was kindly looking over the English portion of the proof-sheets. By his retirement I lost his valuable help also.

ଏଥିରୁ ଧାରଣା କରିହେବ ପ୍ରହରାଜ କିପରି ବିଭିନ୍ନ ଲୋକଙ୍କ ପାଖରୁ ବିଭିନ୍ନ ପ୍ରକାରର ସାହାଯ୍ୟ ନେଉଥିଲେ। ପ୍ରତିଟି ଖଣ୍ଡରେ ସାହାଯ୍ୟ କରିଥିବା ଲୋକମାନଙ୍କର ବିବରଣୀ ରହୁଥିଲା। ଏହି ଭଳି ଶେଷ ଖଣ୍ଡକୁ ଓଲଟାଇବା ବେଳେ ମୋ ଆଖିରେ ପଡ଼ିଲା ଭାଷାକୋଷର କର୍ମିଗଣଙ୍କର ଫଟୋ। ଏଥିରୁ ଗୋଟିଏ ଫଟୋ ତଳେ ଲେଖାଥିଲା 'ଶ୍ରୀ ପ୍ରହ୍ଲାଦ ବିଶି, ବଉଦ ଷ୍ଟେଟ'। ଶ୍ରୀ ବିଶି ୧୯୫୦-୫୧ରେ କଟକ ମିଶନ ସ୍କୁଲରେ ଆମର ଗଣିତ ଶିକ୍ଷକ ଥିଲେ। ଭାଷାକୋଷ ପୃଷ୍ଠାରେ ତାଙ୍କୁ ଭେଟିବା ଏକ ପ୍ରୀତିକର ଅନୁଭବ ଥିଲା।

(ଶ୍ରୀ ବିଶି ୧୯୬୯ ଓ ୧୯୮୨ରେ ମୋ ପାଖକୁ ଲେଖିଥିବା ଦୁଇଟି ଚିଠିକୁ ଶ୍ରୀ ସୁମନ୍ୟୁ ଶତପଥୀ ସଂପାଦନ କରିଥିବା 'ପ୍ରିୟ ଜେପି' ବହିରେ ସ୍ଥାନିତ କରିଛନ୍ତି। ପରେ ମୁଁ ଶ୍ରୀଧର ଦାସଙ୍କ ଆତ୍ମଜୀବନୀ 'ସୁଅ ମୁହଁରେ ପତର'ରୁ ଜାଣିଲି ଯେ ପ୍ରହ୍ଲାଦ ବିଶିଙ୍କୁ ବଉଦର ରାଜା ରାଜଦ୍ରୋହ ଅପରାଧରେ ଜେଲ ଦେଇଥିଲେ ଓ ସେଠାରୁ ଖଲାସ ହେବା ପରେ ଶ୍ରୀ ବିଶି ମିଶନ ସ୍କୁଲରେ ଶିକ୍ଷକତା କରିଥିଲେ। ସେ ବହିରେ ଗୋପାଳ ଚନ୍ଦ୍ର ପ୍ରହରାଜ ବୌଦ ଯାଇଥିବାର ବର୍ଣ୍ଣନା ଅଛି।)

ମୁଁ ଭାବୁଛି ମୁଁ ଯଦି ଭାଷାକୋଷ ସହିତ ଆଉ କିଛି ସମୟ କଟାଇ ପାରିଥାନ୍ତି, ହୁଏ ତ ଏଇ ଭଳି ଆହୁରି ଅନେକ ସ୍ମୃତି ସହିତ ବିଚାରବିମର୍ଶ କରିପାରିଥାନ୍ତି। ତେବେ ଏତେ ବର୍ଷ ପରେ ଯେ ମୁଁ ପୁଣି ମୋର ସେଇ ପିଲାଦିନର ବିରାଟ ଗ୍ରନ୍ଥ ସହିତ ଅନ୍ତତଃ କିଛି ସମୟ ମୁହାଁମୁହିଁ ହୋଇପାରିଲି ତାହା ମୋର ସୌଭାଗ୍ୟ ବୋଲି ମନେ କରୁଛି।

*ଅକ୍ଟୋବର ୨୦୧୪*

# ବର୍ଣ୍ଣସଙ୍କର ବର୍ଣ୍ଣବୋଧ ଓ ବର୍ଣ୍ଣ ବିପର୍ଯ୍ୟୟ

ଓଡ଼ିଶାରେ ବର୍ତ୍ତମାନ ଚିଟ୍‌ଫଣ୍ଡ ଘୋଟାଲା ଓ ଖଣି ଦୁର୍ନୀତିର ଖବର ଭଳି ଆଉ ଯେଉଁ ଖବରଟି ସମ୍ବାଦପତ୍ର ପୃଷ୍ଠା ଛାଡ଼ିବାକୁ ନାରାଜ, ସେଇଟି ହେଲା ଭକ୍ତକବି ମଧୁସୂଦନ ରାଓଙ୍କ ବର୍ଣ୍ଣବୋଧ ଜନିତ ବିବାଦ। ଏ ବିବାଦରେ ଓଡ଼ିଶା ସରକାର, ବିଭିନ୍ନ ସାହିତ୍ୟ ଓ ଭାଷା ଅନୁଷ୍ଠାନ ଏବଂ ହାଇକୋର୍ଟ ବାହାରେ ସାହିତ୍ୟିକ ଓ ଭାଷାବିଦ୍‌ମାନେ ଅଳ୍ପ ବହୁତ ଜଡ଼ିତ। ତା’ ବ୍ୟତୀତ, ପାଠ ପଢୁଆ ସର୍ବସାଧାରଣ ମଧ୍ୟ ଏ ବିଷୟରେ ପ୍ରତିକ୍ରିୟା ଦେବା ପାଇଁ ଆଗଭର। ବିଷୟଟି ତେଣୁ ଏକ ଜନ ଆନ୍ଦୋଳନର ରୂପ ନେଇଛି ଏବଂ ଖବରକାଗଜ ପୃଷ୍ଠାରେ ଉଗ୍ର ଲେଖାମାନ ପ୍ରକାଶ ପାଉଛି ଏବଂ ମାମଲା କୋର୍ଟ କଚେରୀକୁ ଯାଉଛି। ନିକଟରେ ପ୍ରକାଶିତ ଏକ ଇଂରେଜୀ କାଗଜର ହେଡ୍‌ଲାଇନର ଓଡ଼ିଆ ଅନୁବାଦ ହେବ : ଭକ୍ତକବିଙ୍କ ପରିବାର ରକ୍ତଚାଉଳ ଚୋବାଇଲେ ! ସେହି ଭକ୍ତକବି ଲେଖିଥିବା ଭଣ୍ଡ ରସାୟନ କାବ୍ୟ ଭାଷାରେ କହିଲେ ପରିସ୍ଥିତି ବର୍ତ୍ତମାନ

ଉତ୍କଳ ସାହିତ୍ୟ କ୍ଷେତ୍ରେ ଲାଗିଛି ସମର
ଅବ୍ଦ ବ୍ୟାପୀ ଶବ୍ଦମୟ ମହା ଭୟଙ୍କର।

ସଂପ୍ରତି ପ୍ରକାଶିତ ବିବରଣୀ ଅନୁଯାୟୀ ବହିଟି ପ୍ରଥମେ ପ୍ରକାଶ ପାଇଥିଲା ୧୮୯୫ରେ ଏବଂ ଏହାର ନବମ ସଂସ୍କରଣ ପ୍ରକାଶ ପାଇଲା ୧୯୦୧ରେ। ସେହି ଦିନଠାରୁ ଏ ବହିଟି ସବୁ ସମୟରେ ଉପଲବ୍ଧ ରହି ଆସିଛି। ମଧୁସୂଦନ ଗ୍ରନ୍ଥାବଳୀରେ ସଂଯୋଜିତ ହୋଇଥିବାରୁ ଏହାକୁ ଏକ ସାହିତ୍ୟିକ ମାନ୍ୟତା ମଧ୍ୟ ମିଳିଛି। ( ଏଠାରେ ଉଲ୍ଲେଖଯୋଗ୍ୟ ଯେ ରାଧାନାଥ ଓ ଫକୀରମୋହନ, ଅଥବା ନିକଟ ଅତୀତରେ କାଳିନ୍ଦୀ ଚରଣ ପାଣିଗ୍ରାହୀ, ଲେଖିଥିବା ପାଠ୍ୟପୁସ୍ତକ ସେମାନଙ୍କ ଗ୍ରନ୍ଥାବଳୀରେ ସ୍ଥାନ ପାଇନାହିଁ।) ଅନେକ ଦିନରୁ ବର୍ଣ୍ଣବୋଧର କପି ରାଇଟ୍ ସରି ଯାଇଥିବାରୁ ଯେ କେହି ବହିଟିକୁ ପ୍ରକାଶ କରିବାରେ କୌଣସି ବାଧା ନାହିଁ। ତେଣୁ ବିଭିନ୍ନ ପ୍ରକାଶକ ବିଭିନ୍ନ ନାଁରେ – ଯଥା, ମଧୁ ବର୍ଣ୍ଣବୋଧ, ସହଜ ବର୍ଣ୍ଣବୋଧ, ଛବିଳ ମଧୁ ବର୍ଣ୍ଣବୋଧ – ବହିଟିକୁ ପ୍ରକାଶ କରୁଛନ୍ତି। ବହିର ଅକ୍ଷର ବିନ୍ୟାସ, ସାଜସଜ୍ଜା ଓ ଅଳଙ୍କରଣ ପ୍ରକାଶକଙ୍କ ମର୍ଜି ନିର୍ଭର। କେତେକ ମଲାଟରେ ଏକ ବୃହତ୍‌କାୟ ବିରାଡ଼ିର ଛବି କାହିଁକି ଦିଆଯାଇଛି ସେ କଥା ଗବେଷଣା ସାପେକ୍ଷ। କେବଳ ବାଲୁବଜାରର ବହି ଦୋକାନରେ ନୁହେଁ, ହାଟବଜାର ଓ ରାସ୍ତାକଡ଼ର ଦୋକାନରେ ମଧ୍ୟ ବହିଟି ଉପଲବ୍ଧ।

ଗୋଟିଏ ଶତାବ୍ଦୀ ପରେ ବର୍ଣ୍ଣବୋଧକୁ ନୂଆ ରୂପ ଦେଇ ତା’ର ବ୍ୟାପ୍ତିକୁ ଆହୁରି ପ୍ରସାରିତ କରାଯାଇଛି ବିଭିନ୍ନ ମାଧ୍ୟମରେ। ସୃଜନିକା ସଂସ୍ଥା ଏହାର ଏକ ଡିଜିଟାଲ ସଂସ୍କରଣ

ପ୍ରକାଶ କରିଛନ୍ତି। ଶାନ୍ତନୁ ମହାପାତ୍ରଙ୍କ ସଂଗୀତ ସହିତ ବର୍ଣ୍ଣବୋଧର ସିଡି ବଜାରରେ, ଏବଂ ଇଣ୍ଟରନେଟ୍‌ରେ ମିଳୁଛି। ପ୍ରକାଶିତ ଖବର ଅନୁସାରେ ଦୃଷ୍ଟିଶକ୍ତି ଆକ୍ରାନ୍ତ ପାଠକମାନଙ୍କ ପାଇଁ ସରକାର ଏକ ବ୍ରେଲ ସଂସ୍କରଣ ତିଆରି କରୁଥିଲେ ଏବଂ ଏହା ମଧୁବାବୁଙ୍କ ଜନ୍ମଦିନ ୨୮ ଏପ୍ରିଲ୍ ଉନ୍ମୋଚିତ ହେବାର ଥିଲା।(ଏଥିରେ ସାମାନ୍ୟ ବିଡ଼ମ୍ବନା ଥିଲା ଯେ ଏ ତାରିଖଟି ଉତ୍କଳଗୌରବ ମଧୁସୂଦନଙ୍କ ଜନ୍ମଦିନ, ଭକ୍ତକବି ମଧୁସୂଦନଙ୍କର ନୁହେଁ!)

ନିକଟରେ ଓଡ଼ିଶା ସରକାରଙ୍କ ଦ୍ୱାରା ବର୍ଣ୍ଣବୋଧର ପରିବର୍ତ୍ତିତ (ବିଭିନ୍ନ ମତ ଅନୁସାରେ ପରିମାର୍ଜିତ, ଧର୍ଷିତ, ସମୟୋପଯୋଗୀ କୃତ, ବିକର୍ତ୍ତିତ) ସଂସ୍କରଣ ବାହାରିବାରେ ଏହି ବିବାଦର ସୃଷ୍ଟି। ବିବାଦଟି ହଠାତ୍ ଉତ୍କଟ ହେବାର ମୂଳ କାରଣ ହେଲା, ଯେଉଁ ଲକ୍ଷାଧିକ 'ନୂଆ' ବର୍ଣ୍ଣବୋଧ ଛପା ହୋଇ ବଣ୍ଟା ହେବା ପାଇଁ ରହିଛି, ତାର କଣ କରାଯିବ।

କୌଣସି ବହିର ପାଠକୁ ବଦଳାଇବା ଏକ ନୀତିଗତ ପ୍ରଶ୍ନ। ମଧୁବାବୁଙ୍କ ବର୍ଣ୍ଣବୋଧକୁ ପରିବର୍ତ୍ତନ କରିବା ଯଥାର୍ଥ କି, ଏ ପ୍ରଶ୍ନର ସିଧାସଳଖ ଉତ୍ତର ହେବ, ନା। ଜଣେ ଲେଖକର ମୂଳ ଲେଖାକୁ ପରିବର୍ତ୍ତନ କରିବାର ଅଧିକାର କାହାରି ନାହିଁ। ଏ ବିଷୟରେ କୌଣସି ମତାମତ, ଯୁକ୍ତିତର୍କର ଅବକାଶ ନାହିଁ। ମୋହିନୀମୋହନ ସେନାପତି ଫକୀରମୋହନଙ୍କ ଲେଖା କାଟଛାଟ କରିଥିବାରୁ ୧୯୩୨ରେ ମାୟାଧର ମାନସିଂହ ଯାହା ଲେଖିଥିଲେ ତା ସବୁବେଳେ ପ୍ରଯୁଜ୍ୟ : ପରଲୋକଗତ ଗ୍ରନ୍ଥକର୍ତ୍ତାଙ୍କ ରଚିତ ଗ୍ରନ୍ଥର ଗୋଟିଏ ପଂକ୍ତିକି ମଧ ଅନ୍ୟଥା କରିବା ବର୍ବରତା ଛଡ଼ା ଅନ୍ୟ କିଛି ନୁହେଁ।

ଏ ସବୁ ବାଦବିସମ୍ବାଦ ମଝିରେ ସାଧାରଣ ଲୋକଙ୍କ ମଧରେ ଏକ ଧାରଣା ସୃଷ୍ଟି ହୋଇଛି ଯେ ଓଡ଼ିଶାରେ ସମସ୍ତେ ମଧୁସୂଦନଙ୍କର ବର୍ଣ୍ଣବୋଧ ବହିରୁ ହିଁ ଅକ୍ଷର ଶିକ୍ଷା କରିଥିଲେ ଏବଂ ଶହେ ବର୍ଷ ଧରି ଏହା ପିଲାମାନଙ୍କର ପାଠ୍ୟପୁସ୍ତକ ଥିଲା। ଓଡ଼ିଶାର ବିଭିନ୍ନ ଲେଖକ ବର୍ଣ୍ଣବୋଧରୁ ଅକ୍ଷର ଶିଖିଥିଲେ ବୋଲି କହୁଛନ୍ତି। ଆଧୁନିକ କବିତାର କେତୋଟି ଧାଡ଼ିରୁ ନିଷ୍କର୍ଷ ବାହାର କରାଯାଉଛି ଯେ ସଂପୃକ୍ତ କବି ତାଙ୍କର ପ୍ରାଥମିକ ଶିକ୍ଷା ପାଇଁ ବର୍ଣ୍ଣବୋଧଠାରେ ଋଣୀ।

ଏହି ଶତାବ୍ଦୀରୁ ଅଧିକ ସମୟ ଭିତରେ ବର୍ଣ୍ଣବୋଧ ଅକ୍ଷର ଶିକ୍ଷାର ଏକମାତ୍ର ବହି ନଥିଲା। ବର୍ଣ୍ଣବୋଧ ପୂର୍ବରୁ ଯେଉଁ ବହି ସବୁ ଥିଲା ସେଥିରୁ କେତୋଟି ହେଲା : ବର୍ଣ୍ଣବୋଧକ(ଓଡ଼ିଶା ମିଶନ ପ୍ରେସ, ୧୮୬୭), ବର୍ଣ୍ଣପରିଚୟ(ଘନଶ୍ୟାମ ମିଶ୍ର, ୧୮୬୯), ବର୍ଣ୍ଣଶିକ୍ଷା(କପିଳେଶ୍ୱର ବିଦ୍ୟାଭୂଷଣ, ୧୮୭୩), ବର୍ଣ୍ଣବୋଧକ(ଗୋବିନ୍ଦ ରଥ, ୧୮୮୭) ଇତ୍ୟାଦି। ଏଗୁଡ଼ିକ ସମ୍ଭବତଃ ଈଶ୍ୱର ଚନ୍ଦ୍ର ବିଦ୍ୟାସାଗରଙ୍କ ବଙ୍ଗଳା 'ବର୍ଣ୍ଣ ପରିଚୟ' ଧାରାରେ ଲେଖା ହୋଇଥିଲେ।

ସେହି ଭଳି ପରବର୍ତ୍ତୀ ସମୟରେ ମଧ ଏ ପ୍ରକାରର ଅନେକ ବହି ପ୍ରକାଶ ପାଇଥିଲେ। ନିକଟ ଅତୀତରେ ପ୍ରକାଶିତ ଦୁଇଟି ବହି ହେଲା, ଫତୁରାନନ୍ଦଙ୍କ 'ମୋ ପାଠ ବହି' ଓ ୨୦୦୩ରେ ଦିଲ୍ଲୀରୁ ପ୍ରକାଶିତ ଆସୋଶିଏଶନ ଅଫ୍ ରାଇଟର୍ସ ଫର ଚିଲ୍ଡ୍ରେନ୍‌ଙ୍କର

'ଅଆଇ ଏବଂ କଖଗ'। ଅବଶ୍ୟ ଅନ୍ୟ କୌଣସି ବହି କୌଣସି ସମୟରେ ମଧୁସୂଦନଙ୍କ ବର୍ଣ୍ଣବୋଧ ଭଳି ଲୋକପ୍ରିୟ ହୋଇ ପାରିନାହାନ୍ତି।

ଏ କଥା ମଧ୍ୟ ସତ ଯେ ବର୍ଣ୍ଣବୋଧ ଅନେକ ଦିନରୁ ସ୍କୁଲ ପାଠ୍ୟପୁସ୍ତକ ତାଲିକାରେ ନଥିଲା। ଗତ ଶତାବ୍ଦୀର ଚାଳିଶ ଦଶକରେ ଆମେମାନେ ପାଠ ପଢ଼ା ଆରମ୍ଭ କଲା ବେଳେ ଆମ ବହି ଅଆକଖରୁ ଆରମ୍ଭ ହେଉ ନଥିଲା। ଏ ବହିର (ଲେଖକ ବୋଧହୁଏ ଅଧିରାଜ ମୋହନ ସେନାପତି) ଆରମ୍ଭରେ ଥିଲା ମା, ରମା, ରବର, ରମାର କଳା ବାଳ।

ତେବେ ମଧୁସୂଦନଙ୍କର ବର୍ଣ୍ଣବୋଧ ଯେ ଏକ ସମୟରେ ବହୁ ପଠିତ ପାଠ୍ୟପୁସ୍ତକ ଥିଲା ଏଥିରେ ସନ୍ଦେହ ନାହିଁ। ଏହାର ଏକ କାରଣ ହୋଇପାରେ ଯେ ମଧୁସୂଦନ ସେତେବେଳେ ଶିକ୍ଷା ବିଭାଗର ଉଚ୍ଚ କର୍ତ୍ତା ଥିଲେ। ଏବଂ ସର୍ବୋଚ୍ଚ କର୍ତ୍ତା ରାଧାନାଥ ରାୟଙ୍କ ସହିତ ତାଙ୍କର ଘନିଷ୍ଠ ସଂପର୍କ ଥିଲା। (ସେ ଦୁହିଁଙ୍କୁ ସେତେବେଳେ ଲୋକେ ଶିକ୍ଷା ବିଭାଗର ଛୋଟ ଲାଟ ଓ ବଡ଼ ଲାଟ କହୁଥିଲେ।)

ପିଲାଦିନେ ବର୍ଣ୍ଣବୋଧ ପଢ଼ିଥାନ୍ତୁ କି ନଥାନ୍ତୁ, ଓଡ଼ିଶାର ଅଧିକାଂଶ ଶିକ୍ଷିତ ଲୋକ ବର୍ଣ୍ଣବୋଧର ନିମ୍ନଲିଖିତ ପାଠ ସହିତ ଊଣା ଅଧିକେ ପରିଚିତ :

ଛେଳି ଛୁଆଟିକି ଦେଖ । ମେଷ ଛୁଆଟିକି ରଖ ।।
ଦୁଗ୍ଧ ପାନ କଲେ ବଢ଼ଇ ଶକ୍ତି । ସାଧୁର ଲକ୍ଷଣ ଈଶ୍ୱର ଭକ୍ତି ।।
ଅରଣା ମଇଁଷି ରହିଛି ଅନାଇ । ମଇଁଷିର ପାଖ ନ ଯାଅ ଦନାଇ ।।
ହରିଣ ନ ଦିଏ ଧରା । ଦଉଡ଼ନା ବଡ଼ ଖରା ।। ଇତ୍ୟାଦି

ଲକ୍ଷ୍ୟ କରିବାର କଥା ଯେ ଏହି ଅସଂଲଗ୍ନ, ଅସଂଗତ ଓ ହାସ୍ୟ ଉଦ୍ରେକ କରୁଥିବା ଧାଡ଼ିଗୁଡ଼ିକ ମନେ ରଖିଥିବା ବେଳେ ବର୍ଣ୍ଣବୋଧରେ ଥିବା ଅନ୍ୟ ଗୁରୁତ୍ୱପୂର୍ଣ୍ଣ ପଦଗୁଡ଼ିକ ଆମ ସ୍ମୃତିରେ ନାହିଁ। ଏ ଧାଡ଼ିଗୁଡ଼ିକ ମୁଁ ନିଜେ ପିଲାବେଳେ ବର୍ଣ୍ଣବୋଧ ବହିରୁ ପଢ଼ିଥିବା ମୋର ମନେ ନାହିଁ। ପରବର୍ତ୍ତୀ ସମୟରେ ବୋଧହୁଏ ସାଙ୍ଗସାଥିଙ୍କ ମେଳରେ ମୁହଁରୁ ମୁହଁକୁ ଏ ଧାଡ଼ି ସବୁ ସ୍ମରଣରେ ରହିଥିଲା। ଏ ପଦମାନ ବ୍ୟବହାର କରାଯାଉଥିଲା ଥଟ୍ଟା ତାମସା ମଜା କରିବା ପାଇଁ। ମୁଁ ବିଧିବଦ୍ଧ ଭାବରେ ବର୍ଣ୍ଣବୋଧ ପଢ଼ିଲି ଏଇମାତ୍ର, ୧୯୭୦ରେ କଟକ ଷ୍ଟୁଡେ଼ଣ୍ଟସ୍ ଷ୍ଟୋର ପ୍ରକାଶିତ ଗ୍ରନ୍ଥାବଳୀର ଦ୍ୱିତୀୟ ସଂସ୍କରଣରୁ। ସରକାରଙ୍କ ଦ୍ୱାରା ପ୍ରକାଶିତ (ଓ ବର୍ତ୍ତମାନ ବୋଧହୁଏ ତାଲା ବନ୍ଦ) ବର୍ଣ୍ଣବୋଧ ବା ବର୍ଣବୋଧ ଦେଖିବାର ସୌଭାଗ୍ୟ ହୋଇନାହିଁ।

ବର୍ତ୍ତମାନ ପ୍ରଶ୍ନ ହେଉଛି ମଧୁସୂଦନ ରାଓଙ୍କ ବର୍ଣ୍ଣବୋଧ ଆଜିର ପିଲାଙ୍କ ପାଇଁ ଉପଯୁକ୍ତ କି? ମୋ ମତରେ ଏହାର ଉତ୍ତର, ନା। ମଧୁସୂଦନ ଶହେ ବର୍ଷରୁ ବେଶି ସମୟ ଆଗରୁ ଯେତେବେଳେ ଏହି ବହିଟି ଲେଖିଥିଲେ ସେ ସମୟର ସମାଜ, ଭାଷା, ଶିକ୍ଷା ପଦ୍ଧତି, ଆଚାର ବ୍ୟବହାର, ନୀତି ନିୟମ ଅଲଗା ଥିଲା। ସେ ସବୁ ବର୍ତ୍ତମାନ ବଦଳି ଯାଇଛନ୍ତି ଏବଂ ଆମର ଜ୍ଞାନର ପରିସର ମଧ୍ୟ ଅନେକ ଗୁଣ ବଢ଼ି ଯାଇଛି। ମଧୁବାବୁଙ୍କ ବହିରେ

ଅଛନ୍ତି ଗାଁର ରଜକ ରଇତ ଚାଷୀ ଧୀବର ପାଇକ ବୈଦ୍ୟ ଶେଣୀ ପାଞ୍ଜି ରଥ ହଳ। ଏଥିରେ ସହର ସଂପୂର୍ଣ୍ଣ ଅନୁପସ୍ଥିତ । ଏଥିରେ ରେଳଗାଡ଼ି ଓ ଉଡ଼ାଜାହାଜ ତ ନାହିଁ, ସାଇକେଲ ବି ନାହିଁ, କଂପ୍ୟୁଟର ଓ ମଙ୍ଗଳ ଯାନ ତ ଦୂରର କଥା।

ସେତେବେଳେ ବର୍ଣ୍ଣବୋଧରେ ଦିଆଯାଇଥିବା ଅନେକ ଶବ୍ଦ ଆଉ ସାଧାରଣ ବ୍ୟବହାରରେ ନାହିଁ, ଯଥା : ଅବ୍‌ଜ ବ୍ରୀହି ଊନ ପୁଣ୍ଡ୍ର ବର୍ହ ଯାଚ୍ଞା ଶ୍ଳାଘା ଉଦ୍‌ବାହ ଉଚ୍ଚୈଃ। ଗୌଣୀ ଓ ବାଗ୍ମୀ ଏବେ ଦେଖିବାକୁ ସ୍ୱପ୍ନ।

ସେହି ଭଳି ବର୍ଣ୍ଣବୋଧରେ ଦିଆଯାଇଥିବା କେତୋଟି କଥା ଆଉ ପଲିଟିକାଲି କରେକ୍ଟ ବା ଭଦ୍ରୋଚିତ ବୋଲି ଗ୍ରହଣ କରା ହେଉନାହିଁ, ଯଥା :

> ଦରିଦ୍ର ପିନ୍ଧେ ଛିଣ୍ଡା କନ୍ଥା। ଅନ୍ଧକୁ ନ ଦିଶଇ ପନ୍ଥା ॥
> ପଂଝାଏ ଖଂଜ ବସି ବସି । କଥା କହନ୍ତି ହସି ହସି ॥
> ଦ୍ୱାର ଦ୍ୱାର ବୁଲି ମାଗଇ ଦୁଃଖୀ। ଭିକ ପାଇଲେ ସେ ହୁଅଇ ସୁଖୀ ॥

ବର୍ଣ୍ଣବୋଧର ଆଉ କେତୋଟି ପଂକ୍ତି ଗୁରୁଚଣ୍ଡାଳ ଦୋଷ, ଅତି ଭାରି ସଂସ୍କୃତ ଶବ୍ଦର ବ୍ୟବହାର ଓ ଅସଂଗତ ଭାବ ଯୋଗୁ ହସର ଖୋରାକ ଯୋଗାଇଥାନ୍ତି :

ଗାଈକୁ ତୃଣ ଦିଅ। ଜଣେ ଲୋକ ଗୋଟିଏ ଅଶ୍ୱକୁ ଧରିଅଛି। ଅର୍ଦ୍ଧରାତ୍ର ସମୟରେ ମୁଁ ଊର୍ଦ୍ଧ୍ୱକୁ ଅନାଇ ନକ୍ଷତ୍ରପୂର୍ଣ୍ଣ ଆକାଶକୁ ଦେଖିଲି। ଅବ୍ଜ ଫୁଟିଛି ସରୋବରେ, ବେଢ଼ି ଅଛନ୍ତି ମଧୁକରେ। ପଡ଼ନ୍ତେ କର୍ଣ୍ଣେ ସେହି ଶବ୍ଦ, ଆନନ୍ଦ ପ୍ରାଣେ ହେଲା ଲବ୍ଧ।

ଏ ସବୁ ଦାନ୍ତ ଭଙ୍ଗା ଲେଖା ପଢ଼ାଇବା ପରେ କୁହାଯାଇପାରିବ ନାହିଁ ଯେ : ବାଳକେ ଆସିଲେ ପାଠଶାଳାରୁ, ହସ ହସ ମୁହଁ ଦିଶେ ସୁଚାରୁ। ଅବଶ୍ୟ ସେମାନେ ଯେତେବେଳେ ପଢ଼ିବେ ଯେ କୁକୁରକୁ କୁହାଯାଉଛି , " ନାନା ଜାତି ଫୁଲ ଦେବି ତୋତେ ଆଣି, ଦେଖି ତୁ ହସିବୁ ଆରେ ଧନମଣି", ସେମାନଙ୍କ ଓଠକୁ ସାମାନ୍ୟ ହସ ଆସିପାରେ।

ବର୍ତ୍ତମାନ ଏ କଥା ମଧ କେହି କେହି କହିଲେଣି ଯେ ବର୍ଣ୍ଣବୋଧରେ ପିଲାମାନଙ୍କୁ ଭୁଲ୍ ନୀତିଶିକ୍ଷା ଦିଆଯାଉଛି, ଯଥା, ମଇଁଷିର ପାଖେ ନ ଯାଅ ଦନାଇ। ଆମର ସାହସୀ ଦନାଇ କାହିଁକି ଗୋଟିଏ ଛାର ଅରଣା ମଇଁଷି ପାଖକୁ ଯିବାକୁ ଡରିବ ?

ମୋର କିନ୍ତୁ ଏହି ବିହିଟି ବିଷୟରେ ଦୁଇଟି ଅଭିଯୋଗ ଅଛି। ପ୍ରଥମଟି ହେଲା ବର୍ଣ୍ଣବୋଧର ବିବିଧ ପାଠରେ କୁହାଯାଇଥିବା "ମା ଯାହା ଖାଇବାକୁ ଦେବେ ତାହା ଖାଇବା... ବାପା ଯାହା କହିବେ ତାହା କରିବା"। ଏ ଉପଦେଶ ନିଶ୍ଚିତ ଭାବେ ବିଦ୍ୟାସାଗରଙ୍କ ବର୍ଣ୍ଣ ପରିଚୟର ଅନୁସରଣ : " ଗୋପାଲ ବଡ଼ ସୁବୋଧ । ତାର ବାବା ମା ଯଖନ ଯା ବଲେନ ତାଇ କରେ... ଗୋପାଲ ଯା ପାୟ ତା ଖାୟ"। ଏ ଭଳି ଉପଦେଶ ସମସ୍ୟାପୂର୍ଣ୍ଣ। ଭିଜିଲାନ୍ସରେ ଧରାପଡ଼ି ନିଲମ୍ବିତ ହୋଇ ଘରେ ବସି ରହିଥିବା ଚୋର ବାପା କଥା ପିଲା ମାନିବ କାହିଁକି ? ପିଲାଟିକୁ କାହିଁକି କୁହାଯିବ ଯେ ତେଲ ଛଣା ଜିନିଷ ଖାଇ ମୋଟୀ ହୋଇଯାଉଥିବା ମା ଯାହା ଖାଇବାକୁ ଦେବେ ପିଲା ତାକୁ ଖାଇବ।

ତା ବଦଳରେ କହିବା କଥା, ଆମେ ପୁଷ୍ଟିକର ଖାଦ୍ୟ ଖାଇବା, ଆମେ ଉଚିତ କାମ କରିବା। ରବୀନ୍ଦ୍ର ନାଥ ଠାକୁର ମଧ୍ୟ ବିଦ୍ୟାସାଗରଙ୍କର ବାପମାଙ୍କ କଥା ମାନୁଥିବା ସୁବୋଧ ପିଲାକୁ ଆଦର୍ଶ ଭାବେ ଗ୍ରହଣ କରିବାର ସପକ୍ଷରେ ନଥିଲେ।

ମୋର ଅନ୍ୟ ସମାଲୋଚନାଟି ଆହୁରି ଗୁରୁତର। ମଧୁସୂଦନ ରାଓ ଜଣେ ଋଷିପ୍ରତିମ ଲୋକ ଥିଲେ ବୋଲି ବିଦିତ ଓ ଭକ୍ତକବି ନାଁରେ ଖାତ। ଫକୀରମୋହନ ତାଙ୍କ ବିଷୟରେ ଲେଖିଥିଲେ : ଆଦର୍ଶ ମନୁଷ୍ୟ ଯଦି ଦେଖିବାରେ ଚାଓ, ଧାଇଁ ଯାଇ ଦେଖି ଆସ ଘରେ ମଧୁ ରାଓ। ଅନେକ ବର୍ଷ ତଳେ ମୁଁ ତାଙ୍କ ଉଦ୍ଦେଶ୍ୟରେ ଗୋଟିଏ କ୍ଳରିହିଉ ଲେଖିଥିଲି (ଆଳିମାଳିକା, ୧୯୯୩) : ମଧୁସୂଦନ ରାଓ, ପାଠକଙ୍କୁ କହିଲେ ଯାଅ, ଆଖିବୁଜି ବସ ପଦ୍ମାସନ, ତା ହେଲେ ପାଇବ ମୋର କବିତାର ଜ୍ଞାନ। ଏ ଲେଖା ତାଙ୍କର ଧର୍ମପ୍ରାଣତାକୁ ସୂଚାଉଥିଲା। ସେ ଓଡ଼ିଶାର ଜଣେ ଆଦ୍ୟ ବ୍ରାହ୍ମ ଥିଲେ ଏବଂ ବ୍ରାହ୍ମଧର୍ମ ପ୍ରଚାର ଓ ପ୍ରସାର କରୁଥିଲେ। ସେଥିପାଇଁ ତାଙ୍କ ଲେଖାରେ ଧର୍ମର ପ୍ରଭାବ ଦେଖିବାକୁ ମିଳେ। ଯଦିଓ ବର୍ଣ୍ଣବୋଧ ପିଲାଙ୍କ ପାଇଁ ଉଦ୍ଦିଷ୍ଟ ବହି ଓ ଧର୍ମଗ୍ରନ୍ଥ ନୁହେଁ, ସେଥିରେ ମଧ୍ୟ ସେ ତାଙ୍କର ଧାର୍ମିକତାର ବ୍ୟତିକ୍ରମ କରିନାହାନ୍ତି। ହିନ୍ଦୁ ହୋଇଥିଲେ ସେ ହୁଏତ ଦୁର୍ଗାସ୍ତୁତି ବା ଜଗନ୍ନାଥ ଜଣାଣ ଲେଖିଥାନ୍ତେ, କିନ୍ତୁ ବ୍ରାହ୍ମ ହୋଇଥିବାରୁ ତାଙ୍କ ଲେଖାରେ ଦେଖିବାକୁ ମିଳନ୍ତି ଜଗତପିତା, ପରମେଶ୍ୱର, ମହାପ୍ରଭୁ ପରାତ୍ପର, ଅନାଦି ଇତ୍ୟାଦି। ବର୍ଣ୍ଣବୋଧର ବର୍ଣ୍ଣନା ଅନୁସାରେ :

ଆକାଶ ଦିଶେ କି ସୁନ୍ଦର । ତାହାକୁ ରଚିଲେ ଈଶ୍ୱର ॥
ମନୁଷ୍ୟ ପଶୁପକ୍ଷୀ ଆଦି । ସକଳ ସୃଜିଲେ ଅନାଦି ॥

ଏହାର ଭାବାର୍ଥ ହେଲା ଯେ ଈଶ୍ୱର ହିଁ ଗ୍ରହ ନକ୍ଷତ୍ର ଆକାଶ ମଣିଷ ବୃକ୍ଷ ଲତା ଓ ପଶୁପକ୍ଷୀଙ୍କୁ ସୃଷ୍ଟି କରିଛନ୍ତି। ଏ କଥା ବିଜ୍ଞାନ ଅନୁମୋଦିତ ଡାରୱିନଙ୍କ ବିବର୍ତ୍ତନବାଦର ସଂପୂର୍ଣ୍ଣ ବିରୋଧ କରୁଛି। ବିଜ୍ଞାନରେ ଅସମ୍ଭବ ପ୍ରଗତି କରିଥିଲେ ମଧ୍ୟ ଆମେରିକାର ଅନେକ ଲୋକ ରକ୍ଷଣଶୀଳ ଓ କୁସଂସ୍କାରଗ୍ରସ୍ତ। ସେମାନେ ବାଇବଲ୍‌ର ଜେନେସିସରେ ଲେଖା ଥିବା କଥାରେ ବିଶ୍ୱାସ କରନ୍ତି ଯେ ପୃଥିବୀ ମଣିଷ ପଶୁପକ୍ଷୀ ସମସ୍ତଙ୍କୁ ଈଶ୍ୱର ଛ' ଦିନରେ ସୃଷ୍ଟି କରିଥିଲେ। ଏ କଥା ବିଜ୍ଞାନ ବିରୋଧୀ ହୋଇଥିବାରୁ ବର୍ତ୍ତମାନ ବିବର୍ତ୍ତନବାଦ ଓ ସୃଷ୍ଟିବାଦ ଭିତରେ ଦ୍ୱନ୍ଦ୍ୱ ଲାଗି ରହିଛି। ୧୯୮୨ରେ ଲୁଇଆନା ଷ୍ଟେଟ ଉଭୟ ମତକୁ ଏକା ଭଳି ଦେଖିବା ପାଇଁ ଏକ ଆଇନ ପ୍ରଣୟନ କରିବାରେ ୭୨ଜଣ ବୈଜ୍ଞାନିକ ଓ ୧୭ଟି ବିଜ୍ଞାନ ଏକାଡେମୀ ଏ ବିଷୟରେ କଚେରୀକୁ ଯାଇଥିଲେ। ୧୯୮୭ରେ ସୁପ୍ରିମ କୋର୍ଟ ରାୟ ଦେଲେ ଯେ ଆଇନଟି ଅସିଦ୍ଧ କାରଣ ଏକ ପରମପୁରୁଷ ମଣିଷ ଜାତି ସୃଷ୍ଟି କରିଛନ୍ତି କହିବା ଦ୍ୱାରା ଏହି ଆଇନ ଧର୍ମ ପ୍ରବର୍ତ୍ତନ କରୁଛି ଯାହା ସମ୍ବିଧାନ ବିରୁଦ୍ଧ।

ବିବର୍ତ୍ତନବାଦରେ ଆଜି ଆଉ କାହାରି କୌଣସି ସଂଶୟ ନାହିଁ, କେବଳ କିଛି କୁସଂସ୍କାରବାଦୀ ଛଦିନିଆ ସୃଷ୍ଟିରେ ବିଶ୍ୱାସ କରୁଥିବା ଲୋକଙ୍କ ବ୍ୟତୀତ। ଏହି

**ପରିପ୍ରେକ୍ଷୀରେ ପୃଥିବୀ ମଣିଷ ପଶୁପକ୍ଷୀ ବିବର୍ତ୍ତନ ଦେଇ ନୁହେଁ ଜଣେ ଈଶ୍ୱରଙ୍କ ଦ୍ୱାରା ସୃଷ୍ଟି ହୋଇଛନ୍ତି ଏପରି କହିବା ପିଲାମାନଙ୍କୁ ଭୁଲ୍ ଶିକ୍ଷା ଦେବା ହେବ।**

ଏହା ବ୍ୟତୀତ ଅନେକ ବିଦ୍ୱାନ(ଯଥା ରିଚାର୍ଡ ହକିନ୍ସ, ଏ.ସି. ଗ୍ରେଲିଙ୍ଗ, କ୍ରିଷ୍ଟୋଫର ହିଚେନ୍ସ)ଙ୍କର ମତ ଯେ ପିଲାମାନଙ୍କୁ ଧର୍ମ ବା ଈଶ୍ୱରଙ୍କ ବିଷୟରେ କହି ସେମାନଙ୍କ କୋମଳ ମନକୁ ପ୍ରଭାବିତ କରିବା ଉଚିତ ନୁହେଁ। କୌଣସି ପୂର୍ବଗ୍ରହ ବିନା ବଡ଼ ହେଲେ ସେମାନେ ନିଜେ ନିଷ୍ପତ୍ତି ନେବେ ଈଶ୍ୱରରେ ବିଶ୍ୱାସ କରିବେ କି ନା ଏବଂ କୌଣସି ଧର୍ମକୁ ଗ୍ରହଣ କରିବେ କି ନା।

ଏହି ଦୃଷ୍ଟିକୋଣରୁ ମଧ୍ୟ ମଧୁବାବୁଙ୍କ ବର୍ଣ୍ଣବୋଧ ଆଜିର ପିଲାମାନଙ୍କ ପାଇଁ ଆଦୌ ଉପଯୋଗୀ ନୁହେଁ।

ବର୍ଣ୍ଣବୋଧର ଭବିଷ୍ୟତ କଣ ହେବ ତା ବର୍ତ୍ତମାନ ଏକ କମିଟି ହାତରେ। ଗୋଦାମ ଘରେ ରହିଥିବା ଅସଂଖ୍ୟ ବର୍ଣ୍ଣସଂକର ବର୍ଣ୍ଣବୋଧ ବହିସବୁକୁ ଛାଳି ଦେବା ପାଇଁ ସୁପାରିଶ କରିବା ସହିତ ସେମାନେ ନିଶ୍ଚୟ ପିଲାମାନଙ୍କ ପାଇଁ କି ପ୍ରକାରର ବହି ଦରକାର ସେ ବିଷୟରେ ପରାମର୍ଶ ଦେବେ। ବର୍ତ୍ତମାନ ସମସ୍ତେ ସେଇ କମିଟିର ଅଭିମତ ଅପେକ୍ଷାରେ। ତେବେ ଏ କଥା ମଧ୍ୟ କୁହାଯାଇଛି ଯେ, ବର୍ଣ୍ଣବୋଧର ସାଧୁ ଭାଷାରେ ଲେଖିଲେ, ଉଷ୍ଟ୍ର ହେଉଚି ଏକ କମିଟି ସୃଷ୍ଟ ଅଶ୍ୱ।

*ନଭେମ୍ବର, ୨୦୧୪*

# ବାପା ଯାହା କହିବେ ତାହା କରିବା ? !

– ୧ –

ଆମର ପିଲାମାନଙ୍କୁ କୁହାଯାଇଥାଏ, ମା ଯାହା ଖାଇବାକୁ ଦେବେ ଖାଇବା, ବାପା ଯାହା କହିବେ ତାହା କରିବା । କେହି କେହି ଏହି ଆର୍ଷବାଣୀରେ ନାରୀ ବିରୋଧୀ ଭାବ ଦେଖିପାରନ୍ତି କାରଣ ଏଥିରେ ମାଙ୍କର କାମ ହେଲା ରୋଷାଇ କରି ପରିବାରକୁ ଖାଇବାକୁ ଦେବା ଏବଂ ବାପାଙ୍କର ଦାୟିତ୍ୱ ହେଲା ପିଲାଙ୍କୁ ଶାସନ କରିବା । ଦୁଃଖର କଥା ଯେ ଏହା ହିଁ ମୋଟାମୋଟି ଆମ ସମାଜର ଚଳଣି । ବାପା ହିଁ ପିଲାମାନଙ୍କୁ ଆଦେଶ ଓ ଉପଦେଶ ଦିଅନ୍ତି, ମା ସବୁ କଥାରେ ହଁ ଭରିଥାନ୍ତି ।

ବରିଷ୍ଠ–କନିଷ୍ଠଙ୍କର ଏ ଭଳି ସଂପର୍କ ବୋଧହୁଏ ସାର୍ବଜନିକ ଓ ସର୍ବକାଳୀନ । ବୟସ୍କମାନେ ସବୁବେଳେ କନିଷ୍ଠମାନଙ୍କୁ ହେୟ ଓ ନ୍ୟୂନ ଭାବରେ ଦେଖିଥାନ୍ତି । ଅଢ଼େଇ ହଜାର ବର୍ଷ ତଳେ ବୟସ୍କଙ୍କ ପ୍ରତିନିଧି ଭଳି ସକ୍ରେଟିସ ମନ୍ତବ୍ୟ ଦେଇଥିଲେ : ଆଜିର ଯୁବ ସଂପ୍ରଦାୟ ବିଳାସପ୍ରିୟ । ସେମାନଙ୍କର ଆଚରଣ ମନ୍ଦ । ସତ୍ତାକୁ ସେମାନେ ଅବଜ୍ଞା କରନ୍ତି । ବୟସ୍କମାନଙ୍କ ପାଇଁ ସେମାନଙ୍କର ସମ୍ମାନର ଅଭାବ । ସେମାନେ ପିତାମାତାଙ୍କୁ ବିରୋଧ କରନ୍ତି ଓ ଶିକ୍ଷକମାନଙ୍କ ଉପରେ ଅତ୍ୟାଚାର କରନ୍ତି ।

ଏହିପରି ମନୋଭାବ ନେଇ ବୟସ୍କମାନେ ପିଲାମାନଙ୍କୁ ଶାସନ କରିଥାନ୍ତି । ଏହି ଅନୁଶାସନର ମୂଳମନ୍ତ୍ର ହେଲା ଯେ ସେମାନେ ଯାହା କହିବେ ତାହା ବେଦର ଗାର, ସ୍ୱର୍ଗକୁ ନିଶୁଣି ନଥିବା ଭଳି ବଡ଼ ବା ବୟସ୍କ ଲୋକକୁ ଉତ୍ତର ନାହିଁ । ଆମ ଦେଶ ଓ ଆମ ସମାଜରେ ଏହି ମାନସିକତା ଆହୁରି ଉତ୍କଟ । ଏହି ସମାଜସ୍ୱୀକୃତ କ୍ଷମତାର ସୁଯୋଗ ନେଇ ବରିଷ୍ଠମାନେ କନିଷ୍ଠମାନଙ୍କୁ ଏବଂ ବିଶେଷରେ ବାପମାନେ ପୁଅମାନଙ୍କୁ ଶୋଷଣ ଓ ଅତ୍ୟାଚାରିତ କରିଥାନ୍ତି । ଆମର ଶାସ୍ତ୍ର ଓ ପୁରାଣମାନଙ୍କରୁ ଏହାର ଅନେକ ଉଦାହରଣ ମିଳିବ, ଯଥା :

– ରାଣୀ କୈକେୟୀଙ୍କୁ ସନ୍ତୁଷ୍ଟ କରିବା ପାଇଁ ଦଶରଥ ବିନା କାରଣରେ ରାମଚନ୍ଦ୍ରଙ୍କୁ ଚଉଦ ବର୍ଷ ପାଇଁ ଅଯୋଧ୍ୟାରୁ ନିର୍ବାସିତ କରିଥିଲେ ଏବଂ ଏଥିପାଇଁ ରାମଚନ୍ଦ୍ରଙ୍କୁ ବିଭିନ୍ନ ବିପତ୍ତିର ସମ୍ମୁଖୀନ ହେବାକୁ ପଡ଼ିଥିଲା ।

– ଶୁକ୍ରାଚାର୍ଯ୍ୟଙ୍କ ଅଭିଶାପରେ ଅକାଳ ବୃଦ୍ଧ ହୋଇ ଯାଇଥିବା ରାଜା ଯଯାତି ନିଜର ଭୋଗ ବିଳାସ ପାଇଁ ପୁଅ ପୁରୁକୁ ନିଜର ବାର୍ଦ୍ଧକ୍ୟ ଦେଇ ତା ପାଖରୁ ତାର ଯୌବନ

ନେଇ ଯାଇଥିଲେ ଏବଂ ହଜାର ବର୍ଷ ସମ୍ଭୋଗ ସୁଖ ଉପଭୋଗ କରିଥିଲେ।

– ରାଜା ଶାନ୍ତନୁ ସତ୍ୟବତୀର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତାକୁ ବିବାହ କରିବାକୁ ଚାହିଁବାରେ ପୁଅ ଭୀଷ୍ମଙ୍କୁ କୌମାର୍ଯ୍ୟର ବ୍ରତ ନେବାକୁ ପଡ଼ିଥିଲା ଯେପରିକି ସତ୍ୟବତୀର ସନ୍ତାନକୁ ରାଜ ସିଂହାସନ ମିଳିବାରେ କୌଣସି ସମସ୍ୟା ନ ହୁଏ।

–ତୀର୍ଥର ପୁଣ୍ୟ ଅର୍ଜନ କରିବାକୁ ଚାହୁଁଥିବା ଅନ୍ଧ ପିତାମାତାଙ୍କୁ କାନ୍ଧ ଭାରରେ ନେଇ ଶ୍ରବଣ କୁମାର ସେମାନଙ୍କୁ ଚାଳିଶିଟି ତୀର୍ଥ ଦେଖାଇଥିଲେ ଏବଂ ଏହି ଯାତ୍ରାରେ ଆକସ୍ମିକ ମୃତ୍ୟୁ ଲାଭ କରିଥିଲେ।

–ସାରଳା ମହାଭାରତ ଆଦି ପର୍ବ ଅନୁସାରେ ସ୍ୱୟଂ ଶ୍ରୀକୃଷ୍ଣ ଦୂତୀ ଗର୍ଭରୁ ଜନ୍ମିତ ନିଜର ପୁଅ ଖଲ୍ୟକାରଙ୍କୁ ନିୟୋଜିତ କରିଥିଲେ କଦମ୍ବ ଗଛ ତଳୁ ରାଧାଙ୍କର ଶୋଇବା ଘର ପର୍ଯ୍ୟନ୍ତ ଏକ ସୁଡ଼ଙ୍ଗ ଖୋଳିବା ପାଇଁ ଯାହା ଦ୍ୱାରା ସେ ସହଜରେ ଏବଂ ଗୋପନରେ ନିଜର ପ୍ରେମିକା ପାଖରେ ପହଞ୍ଚି ପାରିବେ।

ଏ ସବୁ କାହାଣୀର ସାରକଥା ହେଲା ପିତାମାନେ କିପରି ପୁଣ୍ୟ, ସୁଖସ୍ୱାଛନ୍ଦ୍ୟ ଏବଂ ବିଶେଷରେ କାମବାସନା ଚରିତାର୍ଥ କରିବା ପାଇଁ ନିଜର ପୁତ୍ରମାନଙ୍କୁ ବ୍ୟବହାର କରିଛନ୍ତି, ଏବଂ ପୁତ୍ରମାନେ କିପରି ସହାସ୍ୟବଦନ ଏହି ଅତ୍ୟାଚାରକୁ ମାନି ନେଇଛନ୍ତି। ଆମର ଏକ ଧାରଣା ଅଛି ଯେ ବୟସ ସହିତ ପ୍ରଜ୍ଞାର ସମ୍ବନ୍ଧ ଅଛି ଏବଂ ବୟସ୍କମାନେ ପ୍ରାଜ୍ଞ। ଉପର ଉଦାହରଣମାନଙ୍କରୁ କିନ୍ତୁ ଦେଖାଯିବ ଯେ ସେମାନେ ବାସନାସକ୍ତ, ସଂସାରୀ ଏବଂ ସମ୍ବେଦନାବିହୀନ।

ଜନ୍ମ ହେବା ଦିନରୁ ହିଁ ପିଲାଟି ବାପର ସଂପତ୍ତି ହୋଇଯାଏ। ନାବିକ ସିନ୍ଦବାଦ ତାର ପଞ୍ଚମ ସମୁଦ୍ର ଯାତ୍ରାରେ ଯିବାବେଳେ ଗୋଟିଏ ବୁଢ଼ା ତାର କାନ୍ଧରେ ବସି ଆଉ ଓହ୍ଲାଉ ନଥିଲା। ସେହିପରି ଆମର ବାପାମାନେ ପିଲାମାନଙ୍କ ଉପରୁ ନିଜର କର୍ତ୍ତୃତ୍ୱ ଛାଡ଼ିବା ପାଇଁ ସବୁବେଳେ ନାରାଜ। ବାପାମାନେ ସ୍ଥିର କରନ୍ତି ପିଲା କି ପାଠ ପଢ଼ିବ, ବଡ଼ ହେଲେ କି ପେଶା ଗ୍ରହଣ କରିବ। ଏପରିକି ପିଲା କଣ ଖାଉଛି, କାହା ସାଙ୍ଗରେ ସାଙ୍ଗ ହେଉଛି ଓ କୁଆଡ଼େ ଯାଉଛି ତା ଉପରେ ବି ନିଘା ରଖିଥାନ୍ତି ବାପାମାନେ। ସ୍କୁଲ ବ୍ୟାଗର ଭାର ସହିତ ଗୁରୁଜନଙ୍କର ପୁରୁଣାକାଳିଆ ଚିନ୍ତାଧାରାର ବୋଝକୁ ମଧ୍ୟ ମୁଣ୍ଡାଇବାକୁ ପଡ଼ିଥାଏ ପିଲାକୁ। ଏ କଥା ସବୁବେଳେ ବାପ ପୁଅଙ୍କର ଯୁକ୍ତିତର୍କ, ମନୋମାଳିନ୍ୟ ଓ ଟଣାଟଣିର କାରଣ ହୋଇଥାଏ। ପିଲା ବେଶ ବଡ଼ ହେବା ପରେ ମଧ୍ୟ ବାପାଙ୍କର ଦୌରାତ୍ମ୍ୟ କମ୍ ହୁଏ ନାହିଁ ଏବଂ ପିଲା ଯେତେବେଳେ ନିଜେ ବୟସ୍କ ହୁଏ, ସେ ଏତେ ଦିନ ଧରି ସହି ଆସିଥିବା ଅଯୌକ୍ତିକ, ଅନୁଚିତ, ଅନୁପଯୁକ୍ତ, ଅଯଥାର୍ଥ ଓ ଅସଂଗତ ଅତ୍ୟାଚାର ଓ ଅନୁଶାସନକୁ ଭୁଲିପାରେ ନାହିଁ।

ବୟସ୍କମାନଙ୍କର ଏହି ଦୌରାତ୍ମ୍ୟକୁ ଆଡଲ୍‌ଟିଜ୍‌ମ୍ ବା ବୟସ୍କବାଦ ଆଖ୍ୟା ଦିଆଯାଇଛି, ଯାହାର ମୂଳାଧାର ହେଲା ପିଲା ଓ ଯୁବାଙ୍କୁ ଅବଜ୍ଞା କରିବା, ତାଙ୍କ କଥାକୁ ନ ଶୁଣିବା,

ତାଙ୍କ ମତକୁ କୌଣସି ମୂଲ୍ୟ ନ ଦେବା ଓ କଥା କଥାକେ ସେମାନଙ୍କୁ ଗାଳିମନ୍ଦ କରି ଦଣ୍ଡ ଦେବା। ପିଲାଙ୍କର ଏକମାତ୍ର ଅପରାଧ ହେଲା ଯେ ସେମାନେ ବୟସ୍କ ନୁହନ୍ତି।

ଏ ବିଷୟରେ ରବୀନ୍ଦ୍ରନାଥ ଠାକୁର ସ୍ପଷ୍ଟ ଓ ନିର୍ମମ ଭାବରେ ଯାହା କହିଛନ୍ତି, ତାର କିଛି ଅଂଶ ଏପରି :

"ପିଲାଦିନେ ଆମ କାନରେ ବାରମ୍ବାର କୁହାଯାଇଥାଏ ଯେ ଆମର ପିତା ଓ ଗୁରୁଜନମାନେ ଈଶ୍ୱର ସମାନ । କାହିଁକି ? ସେମାନେ କିପରି ଈଶ୍ୱରଙ୍କ ଭଳି ହେବେ ? ତାଙ୍କ ଉପରେ କାହିଁକି ଈଶ୍ୱରତ୍ୱର କଠୋର ଓ ଅନୁରାଗବିହୀନ ଭକ୍ତି ଆରୋପିତ ହେବ ? ସେମାନେ ଆମର ଭଲ ପାଇବାର ବାପା ମା, ଆମେ ସେମାନଙ୍କ ସହିତ ଏକାଠି ହେବା ଉଚିତ ପ୍ରେମର ଉନ୍ମୁକ୍ତ ବନ୍ଧନରେ, ଯୋଡ଼ହସ୍ତ ବିନୟରେ ନୁହେଁ।"

" ଆମେ ଆମର ପରିବାରର ବୟସ୍କମାନଙ୍କୁ ଅପ୍ରାକୃତିକ ସମ୍ମାନ ଦେଉ। ସେମାନେ ଆମର ଅନ୍ଧ ବିଶ୍ୱାସର ଦମ୍ଭରେ କନିଷ୍ଠମାନଙ୍କ ସହିତ ଯଥେଚ୍ଛ ବ୍ୟବହାର କରନ୍ତି। ସେମାନେ ଚାହାନ୍ତି ତାଙ୍କର ପିଲାମାନେ ନିଃସଙ୍କୋଚ ଓ ବିନା ପ୍ରଶ୍ନରେ ତାଙ୍କର ସବୁ ଆଦେଶ ଓ ବିଚାରକୁ ମାନି ନିଅନ୍ତୁ, ଯେପରିକି ପିଲାଙ୍କର ମନ, ଇଚ୍ଛା ଓ ବିଚାରଶକ୍ତି ନାହିଁ ଓ ସେମାନେ କାଠର କଣ୍ଢେଇ ମାତ୍ର।"

ମନୋବୈଜ୍ଞାନିକ ସୁଧୀର କକଡ଼ ଏହି ଲେଖାକୁ ବିଶ୍ଳେଷଣ କରି କହିଛନ୍ତି, ଯେ ଏହା ରବୀନ୍ଦ୍ରନାଥଙ୍କର ନିଜ ପିତା ଦେବେନ୍ଦ୍ରନାଥ ଠାକୁରଙ୍କ ସହିତ ସଂପର୍କର ବ୍ୟକ୍ତିଗତ ପ୍ରତିବାଦ। ଏଥିରୁ ଜଣାପଡ଼ିବ ଯେ ସେତେବେଳର ସମ୍ଭ୍ରାନ୍ତ ଓ ଶିକ୍ଷିତ ପରିବାରରେ ମଧ୍ୟ ପିତା–ପୁତ୍ର ସଂପର୍କରେ ଏ ଭଳି ଜଟିଳତା ଥିଲା।

– ୨ –

କାଳକ୍ରମେ ବୟସ୍କ ବାପା ଆହୁରି ବୟସ୍କ ହୋଇ ଜରା ଅବସ୍ଥାକୁ ଯାନ୍ତି ଓ ପିଲା ଯୁବା ସମୟ ଅତିକ୍ରମ କରି ପ୍ରୌଢ଼ତା ଆଡ଼କୁ ପାଦ ବଢ଼ାଏ। ସମସ୍ୟାର ତଥାପି ସମାଧାନ ହୁଏ ନାହିଁ। ଶିକାରୀ ବର୍ତ୍ତମାନ ଶିକାର ପାଲଟିଯାଏ, ବୃଦ୍ଧମାନେ ଉତ୍ପୀଡ଼କରୁ ହୋଇଯାନ୍ତି ଉତ୍ପୀଡ଼ିତ। ସେମାନେ ଅଭିଯୋଗ କରନ୍ତି ଯେ ପୁଅ ଆଉ ତାଙ୍କୁ ପଚାରୁନାହିଁ। ପିଲାମାନଙ୍କ ଉପରେ ହାକିମି କରୁଥିବା ବାପ ବର୍ତ୍ତମାନ ପୁଅ କିପରି ତାଙ୍କ ଉପରେ ହାକିମି କରୁଛି ତାର ତାଲିକା ତିଆରି କରନ୍ତି। ସେମାନେ ମନେ ମନେ ଭାଗବତ ଆବୃତ୍ତି କରି ଅଭିଶାପ ଦିଅନ୍ତି,

ତାତ ମାତାଙ୍କ ବୃଦ୍ଧ କାଳେ, ନିଜ ଭାରିଜା ଶିଶୁ ମେଳେ
ଗୋରୁ ବ୍ରାହ୍ମଣ ଗୁରୁଜନ, ଏହାଙ୍କୁ ନ ଦେଇ ଭୋଜନ
ଯେ ପ୍ରାଣୀ ଆତ୍ମାକୁ ତୋଷନ୍ତି, ଜୀବନ ଥାଉ ସେ ମରନ୍ତି ।

ଖବରକାଗଜ ପୃଷ୍ଠାରେ ଏ ଭଳି ପୁଅଝିଅ(ଏବଂ ବୋହୂ)ଙ୍କ ଦ୍ୱାରା ନିର୍ଯ୍ୟାତିତ ହୋଇ ପିତାମାତା ଘରୁ ବିତାଡ଼ିତ ହେବାର ଖବର ଦେଖିବାକୁ ମିଳେ। ଓଡ଼ିଆ ଗଳ୍ପ ଲେଖକଙ୍କ

ପାଇଁ ଏହା ଏକ ଅତି ପ୍ରିୟ ବିଷୟବସ୍ତୁ। ଏଥିରୁ ଗୋଟିଏ ଧାରଣା ଉପୁଜେ ଯେ ଆଜିର ପୁଅମାନେ ବାପମାଙ୍କୁ ଫିଙ୍ଗି ଫୋପାଡ଼ି ଦେଉଛନ୍ତି। ଏ ଅବସ୍ଥାକୁ ଫକୀରମୋହନ ସେନାପତିଙ୍କ ପ୍ରସିଦ୍ଧ ଗଳ୍ପ ଅନୁସାରେ ଡାକମୁନ୍‌ସି ସିନ୍‌ଡ୍ରମ୍ ବା ଡାକମୁନ୍‌ସି ଦଶା କୁହାଯାଇପାରେ।

ଏହି ଗଳ୍ପରେ ଡାକମୁନିସି ପୁଅ ଗୋପାଳଚନ୍ଦ୍ର ସିଂହ  ହେଡ଼ପିଅନ ବାପ ହରିସିଂହ ଉପରେ ରଗ ରଗ  ସିଂ ସିଂ ହୁଏ। ତାର ଏକମାତ୍ର କାରଣ ବୁଢ଼ା ମୂର୍ଖ, ଇଂରେଜୀ ଜାଣେ ନାହିଁ। ଦିନେ ରାତିରେ ବୁଢ଼ାର କାଶ ବଳି ପଡ଼ିବାରୁ ପୁଅ ବୁଢ଼ା ଛାତିରେ ଦୁଇଟା ଇଂରେଜୀ ଘୁଷି(ନିଶ୍ଚୟ ଆକ୍ଷରିକ ମୁଥ ନୁହେଁ, ଆଳଂକରିକ ବ୍ଲଡି ଫୁଲ ଭଳି ଗାଳି)  ମାରି ବିଛଣାପତ୍ର ବାହାରକୁ ଫୋପାଡ଼ି ଦିଏ ଓ ବୁଢ଼ା ଗାଁକୁ ପଳାଇଯାଏ।(ଏଥିରେ ଗୋପାଳର ସ୍ତ୍ରୀର ଚରିତ୍ର ଥିଲେ ବୋଧହୁଏ ଗଳ୍ପଟି ଅଧିକ ବାସ୍ତବବାଦୀ ଓ ବିଶ୍ୱାସଯୋଗ୍ୟ  ହୋଇଥାନ୍ତା, କିନ୍ତୁ ବର୍ତ୍ତମାନ ଏପରି କହିଲେ ନାରୀ ବିଦ୍ୱେଷୀ ବୋଲି ଆରୋପ ଆସିବ।)

ବରିଷ୍ଠମାନଙ୍କର ଅବହେଳା ଏକ ଆନ୍ତର୍ଜାତିକ ସମସ୍ୟା ଭାବରେ ସ୍ୱୀକୃତ ହେଉଛି। ଆମେରିକାର ୨୮ଟି ରାଷ୍ଟ୍ରର କାନୁନରେ ବାପମା ନିଜର ଯତ୍ନ ନେଇ ପାରୁ ନଥିଲେ ପିଲାମାନଙ୍କ ଉପରେ ସେମାନଙ୍କର ଯତ୍ନ ନେବାର ଦାୟିତ୍ୱ ଦିଆଯାଇଛି। ଆମ ଦେଶରେ ମଧ ୨୦୦୭ରେ 'ମାତା-ପିତା ଓ ବରିଷ୍ଠ ନାଗରିକଙ୍କର ଭରଣପୋଷଣ ତଥା କଲ୍ୟାଣ ଅଧିନିୟମ' ତିଆରି ହୋଇଛି ଓ ୨୦୦୯ରେ ଓଡ଼ିଶା ସରକାର ଏହି ସଂକ୍ରାନ୍ତ ନିୟମ ତିଆରି କରିଛନ୍ତି । ଏହି ଅଧିନିୟମ ଅନୁସାରେ ଯଦି କେହି ଦାୟାଦ ନିଜ ଦାୟିତ୍ୱରେ ଅବହେଳା କରନ୍ତି, ତାଙ୍କ ଉପରେ ତିନିମାସ ଜେଲ ଓ ୫୦୦୦ଟଙ୍କା ଜରିମାନା ଲାଗିବ।

ରବୀନ୍ଦ୍ରନାଥଙ୍କ କଥାକୁ ଆଉ ଟିକିଏ ଆଗକୁ ନେଇ କୁହାଯାଇପାରିବ ଯେ ପିତା-ପୁତ୍ର ସଂପର୍କକୁ ଆଉ ସ୍ନେହ ସୌହାର୍ଦ୍ଦ୍ୟରେ ନ ବାନ୍ଧି ଆଇନ କାନୁନ ବଳରେ ଯୋଡ଼ିବାକୁ ଚେଷ୍ଟା କରାଯାଉଛି। ଏ ପ୍ରକାର ହିସାବରେ ବରିଷ୍ଠ ଲୋକର ଦାୟିତ୍ୱ ନ ନେବାର ମୂଲ୍ୟ ୫୦୦୦ଟଙ୍କା ଓ ତିନିମାସ। ଏ ବ୍ୟବସ୍ଥା ଯେ କୌଣସି ସଭ୍ୟ ସମାଜ ପାଇଁ ଅପମାନଜନକ ମନେ ହେବା ଉଚିତ।

ବରିଷ୍ଠ ନାଗରିକ ଓ ଯୁବ ସଂପ୍ରଦାୟ ମଧ୍ୟରେ ଘନିଷ୍ଠତା ନ ରହିବାର ମୂଳ କାରଣ ହେଉଛି ବରିଷ୍ଠମାନଙ୍କର ସ୍ୱେଚ୍ଛାଚାରୀ ଓ ଯଥେଚ୍ଛ ବ୍ୟବହାର ଯାହା ଆରମ୍ଭରେ କୁହାଯାଇଛି। ଏ ସମସ୍ୟା ରହିବ ନାହିଁ ଯଦି ବରିଷ୍ଠମାନେ ପିଲା ଉପରେ ରଗ ରଗ ସିଂ ସିଂ ହେବା ବଦଳରେ ତା ସହିତ ଭଲରେ କଥା କହନ୍ତି, ତାକୁ ପଚାରି ବୁଝି ତାର ପାଠପଢ଼ା ଓ ଭବିଷ୍ୟତ ବିଷୟରେ ନିର୍ଣ୍ଣୟ ନିଅନ୍ତି ଏବଂ ପିଲା ଯୁବାବସ୍ଥାକୁ ଆସିଲେ ତା ସହିତ ସମାନସ୍କନ୍ଧ ଭଳି ବ୍ୟବହାର କରନ୍ତି।

ଆଗର ବରିଷ୍ଠମାନେ ପିଲାଙ୍କୁ କହୁଥିଲେ, ''ଆମେ ତମ ପାଇଁ କଷ୍ଟ ସହିବୁ। ଯଦି ତମେ ସଫଳ ହୁଅ ଓ ଆମର ଯତ୍ନ ନିଅ, ଆମେ ଆମ ତ୍ୟାଗର  ମୂଲ୍ୟ ପାଇଲୁ ବୋଲି ଜାଣିବୁ।'' ଏହା ଏକ ବ୍ୟବସାୟିକ ଚୁକ୍ତି, ସ୍ନେହର ସ୍ୱତଃପ୍ରବୃତ୍ତ ବ୍ୟବସ୍ଥା ନୁହେଁ। ବର୍ତ୍ତମାନର

ବାପ ପିଲାଙ୍କୁ କହିବା ଉଚିତ, "ଆମେ ତମ ପାଇଁ କିଛି ସହୁଛୁ, କିଛି ତ୍ୟାଗ କରୁଛୁ, କିନ୍ତୁ ସବୁ କିଛି ନୁହେଁ। କାରଣ ଆମକୁ ମଧ ଆମର ଜୀବନ ଜୀଇଁବାକୁ ଅଛି। ତମେ ଯେତେବେଳେ ବଡ଼ ହେବ, ତମର ଆମ ପ୍ରତି କୌଣସି ଋଣ ନାହିଁ ବୋଲି ଜାଣି ନିଅ।"

ଡାକମୁନ୍‌ସି ଗଳ୍ପର ଶେଷରେ ଫକୀରମୋହନ ଏହି ସମସ୍ୟାର ଏକ ସୁନ୍ଦର ସମାଧାନ କରିଛନ୍ତି : ବୁଢ଼ା ଗାଁକୁ ପଳାଇଲା। ଗୋପାଳବାବୁଙ୍କର ମନ ସେହି ଦିନଠାରୁ ବଡ଼ ଖୁସି। ଆଉ ତେଣେ ବୁଢ଼ା ଗାଁକୁ ଆସି ତାହାର ଯେଉଁ ଦୁଇମାଣ ଜମି ଥିଲା, ଭାଗରେ ଲଗାଇ ଦେଲା। ଘରେ ବସି ଧାନ ପାଏ। ପେନସନ ଟଙ୍କାରେ ଲୁଗାପଟା, ଲୁଣ ତେଲ ଖର୍ଚ୍ଚ ଚଳେ। କାଣ ହେଲା ଦିନଠୁ ବୁଢ଼ା ଟିକିଏ ଟିକିଏ ଅଫିମ ଧରିଛି। ସବୁ ଖର୍ଚ୍ଚ ଚଳେ। ଘରଠାରେ ପିଣ୍ଡାରେ ବସି ହରିନାମ କରେ। ଉଚ୍ଛୁଣି ବାପ ପୁଅ ଦୁହେଁ ଖୁସି।

ଏ ଗପ ପଢ଼ିବା ବେଳେ ଅବଶ୍ୟ ଏ କଥା ଭୁଲି ହୁଏ ନାହିଁ ଯେ ଫକୀରମୋହନଙ୍କର ନିଜ ପୁଅ ମୋହିନୀମୋହନଙ୍କ ସହିତ ସଂପର୍କ ଅତ୍ୟନ୍ତ ତିକ୍ତ ଥିଲା ଏବଂ କଥା ଶେଷକୁ କୋର୍ଟ କଚେରୀ ପର୍ଯ୍ୟନ୍ତ ଯାଇଥିଲା। ବାଷଠି ବର୍ଷ ବୟସରେ ଫକୀରମୋହନ କଟକ ଛାଡ଼ି ବାଲେଶ୍ୱର ଚାଲି ଆସିଲେ। ସେତେବେଳକୁ ପୁଅ କାର୍ଯ୍ୟୋପଲକ୍ଷରେ ସ୍ଥାନାନ୍ତରରେ ଥାଏ। ନିର୍ଜନ ବାସରେ ଏକାକୀ ଥିବାରୁ ସେ ଚିନ୍ତା କରିବାକୁ ଯଥେଷ୍ଟ ସମୟ ପାଇଲେ । ଶାନ୍ତି ଓ ନିର୍ଜନତାର କ୍ରୋଡ଼ରେ ବସି ସେ ତାଙ୍କ ଜୀବନର ଶେଷ ଗ୍ରନ୍ଥମାଳା ରଚନା କଲେ।

ମୋର ମନେ ହୁଏ ଶହେ ବର୍ଷ ପରେ ମଧ ଆମକୁ ଏଥିରୁ କିଛି ନୀତି ଶିକ୍ଷା ମିଳିବ।

*ନଭେମ୍ବର ୨୦୧୪*

# ଓଡ଼ିଆ ଭାଷାର ଶାସ୍ତ୍ରୀୟ ସମ୍ମାନ ଓ ସଂସ୍କାର

୨୩ ଫେବ୍ରୁଆରି ୨୦୧୪ରେ ଓଡ଼ିଆ ଖବରକାଗଜର ପୂରା ପୃଷ୍ଠା ମଣ୍ଡନ କରି ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକସଂପର୍କ ବିଭାଗର ବିଜ୍ଞପ୍ତି ପ୍ରକାଶ ପାଇଲା ଯେଉଁଥିରେ ଏ ଭଳି ଲେଖା ଥିଲା :

ଅଢ଼େଇ ହଜାର ବର୍ଷର ତଥ୍ୟ ପ୍ରମାଣ କରିଛି ଓଡ଼ିଆ ଭାଷାର ଗରିମା ଓ ଐଶ୍ୱର୍ଯ୍ୟ। ଦେଶର ୬ଷ୍ଠତମ ଭାଷା ଭାବରେ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା। ଆମ ଭାଷା ଓ ସାହିତ୍ୟକୁ ସମୃଦ୍ଧ କରିଥିବା ଯଶସ୍ୱୀ ସାଧକମାନଙ୍କୁ ଓଡ଼ିଆ ଜାତିର ବିନମ୍ର ପ୍ରଣାମ। ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ଦେବା ଉଦ୍ୟମରେ ସହଯୋଗ କରିଥିବା ସମସ୍ତଙ୍କୁ ଧନ୍ୟବାଦ। ଓଡ଼ିଆ ଭାଷା ପାଇଁ ଏକ ଗୌରବମୟ ମୁହୂର୍ତ୍ତ।

ଏ ବିଜ୍ଞପ୍ତିର ଉପର ଭାଗରେ ପାଞ୍ଚଟି ବହିର ପ୍ରଚ୍ଛଦ ଚିତ୍ର ଥିଲା :- ଏଗୁଡ଼ିକ ହେଲା ସାରଳା ମହାଭାରତ, ଶ୍ରୀମଦ୍‌ଭାଗବତ, ତପସ୍ୱିନୀ, ଛମାଣ ଆଠଗୁଣ୍ଠ ଓ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ। ଏଥିରେ ଆହୁରି ମଧ ଥିଲା ମୁଖ୍ୟମନ୍ତ୍ରୀଙ୍କର ଫଟୋ ଓ ନିଟୋଳ ଓଡ଼ିଆ ଅକ୍ଷରରେ ତାଙ୍କର ଦସ୍ତଖତ।

ଏହାର ତିନି ଦିନ ଆଗରୁ ଭାରତ ସରକାର ଓଡ଼ିଆ ଭାଷାର ଶାସ୍ତ୍ରୀୟତାକୁ ଅନୁମୋଦନ କରିଥିଲେ(ଯଦିଓ ଏ ବିଷୟରେ ରାଜପତ୍ର ପ୍ରକାଶ ପାଇଲା ୧୧ ମାର୍ଚ୍ଚ ୨୦୧୪ରେ)। ତା ପରେ ଆରମ୍ଭ ହେଲା ଆନନ୍ଦ ଉତ୍ସବର ପର୍ବ। ଏହିପରି (ବା ଏହାଠାରୁ ବେଶି) ଉତ୍ସବ ପାଳିତ ହୋଇଥିଲା ଓଡ଼ିଶାର ଇଂରେଜୀ ବନାନରେ ଦୁଇଟି ଅକ୍ଷର ପରିବର୍ତ୍ତନ ବେଳେ। ସେତେବେଳେ ଜଣେ ପାର୍ଲାମେଣ୍ଟ ସଭ୍ୟ ଏହାକୁ ଏକ ମହାନ୍ ମୁହୂର୍ତ୍ତ ଓ ଏହି ନାମ ପରିବର୍ତ୍ତନ ଦ୍ୱାରା ଓଡ଼ିଶା ତାର ଗୌରବ ଫେରି ପାଇଲା ବୋଲି କହିଥିଲେ।(ଟାଇମ୍‌ସ ଅଫ୍ ଇଣ୍ଡିଆ, ନୂଆଦିଲ୍ଲୀ ୨୫ ମାର୍ଚ୍ଚ ୨୦୧୧)

ଓଡ଼ିଆ ଭାଷାର ଶାସ୍ତ୍ରୀୟତା ପ୍ରାପ୍ତିରେ ଓଡ଼ିଶାର ଜନସାଧାରଣ ବିଶେଷ ଉଦ୍ଦୀପିତ ହେବା ଭଳି ଜଣାଗଲା ନାହିଁ। ଏ ବିଷୟରେ ଯେତେ ଯାହା ଉତ୍ତେଜନା ହୋଇଛି ତା ହେଲା ଏହି ଶାସ୍ତ୍ରୀୟତାକୁ ଆଣିବାରେ ଶ୍ରେୟ କାହାର ସେ କଥା ନେଇ। କୁହାଯାଇଥାଏ ଯେ ବିଫଳତା ଅନାଥ କିନ୍ତୁ ସଫଳତାର ଅନେକ ବାପ ମା। ବର୍ତ୍ତମାନ ଅନେକ ଲୋକ ଶାସ୍ତ୍ରୀୟତାର ପିତୃତ୍ୱ ଦାବୀ କରୁଛନ୍ତି ଏବଂ ଖବରକାଗଜରେ ଶାସ୍ତ୍ରୀୟ ମାନ୍ୟତାର ରାଜନୀତି, ଗୁମର ଓ ନେପଥ୍ୟ କଥାର ବିଶଦ ବିବରଣୀ ପ୍ରକାଶ ପାଉଛି। ଡି.ଏନ୍.ଏ ପରୀକ୍ଷାର ଫଳାଫଳ ଆସିବା ପରେ ହିଁ ଜଣାପଡିବ ପ୍ରକୃତ ବାପା କିଏ।

ଓଡ଼ିଆ ଭାଷା (ଅଢ଼େଇ ହଜାର ବର୍ଷ ହେଲା ?) ଥିଲା, ଅଛି ଏବଂ ରହିବ। ତେବେ ଭାରତ ସରକାରଙ୍କର ଶାସ୍ତ୍ରୀୟ ଛାପ ମିଳିବା ପରେ ମୁଁ ଭାବୁଛି ଆମକୁ ଦୁଇଟି ଲାଭ ମିଳିଲା। ପ୍ରଥମଟି ହେଲା ଅର୍ଥ ଲାଭ, ଆମ ଭାଷାର ବିକାଶ ପାଇଁ ଭାରି ସାହାଯ୍ୟ ମିଳିବ।(ମୋ ମତରେ ଅବଶ୍ୟ ଏ ଭଳି ସାହାଯ୍ୟ ଦୁର୍ବଳ ଭାଷାକୁ ଦିଆଯିବା ଉଚିତ, ପ୍ରତିଷ୍ଠିତ ଭାଷାକୁ ନୁହେଁ ।) ଆମ ମାନସିକ ସନ୍ତୋଷ ଯେ ଆମ ଭାଷାକୁ ଅନ୍ୟ ବିକଶିତ ଭାଷା ସହିତ ସମାନ ଆସନ ମିଳିଲା। ଏବଂ ବିଶେଷରେ ଯେତେବେଳେ ବଙ୍ଗଳା ଭାଷାକୁ ଏ ସମ୍ମାନ ମିଳିନାହିଁ। ଯେଉଁ ବଙ୍ଗାଳୀମାନେ ଓଡ଼ିଆକୁ ସ୍ୱତନ୍ତ୍ର ଭାଷାରେ ଗଣୁ ନଥିଲେ ବା ଦୟାକରି ବଙ୍ଗଳାର ଉପଭାଷା ବା ଛୋଟ ଭଉଣୀ ବୋଲି କହୁଛନ୍ତି, ସେମାନଙ୍କ ଆଖିରେ ଆଙ୍ଗୁଠି ଗେଞ୍ଜି କୁହାଗଲା ଯେ ଓଡ଼ିଆ ହେଉଛି ବଙ୍ଗଳାର ଆଈ ବା ସେମାନେ ବୁଝିପାରିବା ଭାଷାରେ କହିଲେ ଦିଦି ମା ବା ମାତାମହୀ !

ଓଡ଼ିଆ ଭାଷାର ବିକାଶ ପାଇଁ ଯେଉଁ ବିପୁଳ ପରିମାଣର ଅର୍ଥ ମିଳିବ ତା କିପରି ଭାବରେ ଓ କାହା ଦ୍ୱାରା ବ୍ୟୟ ହେବ ସେ ବିଷୟରେ ଆଲୋଚନା ଆରମ୍ଭ ହେଲାଣି। ଏଥିପାଇଁ ଆଗରୁ ଅନେକ ସରକାରୀ ଓ ବେସରକାରୀ ସଂସ୍ଥା ଅଛି। ଅର୍ଥ ହିଁ ଅନର୍ଥ ନ୍ୟାୟରେ ଟଙ୍କାର ଭାଗବଣ୍ଟା ନେଇ ବର୍ତ୍ତମାନ କନ୍ଦଳ ହେବା ଅସମ୍ଭବ ନୁହେଁ।

ଏତିକି ବେଳେ ଆଉ ଗୋଟିଏ ବିବାଦ ଏହି ପରିସ୍ଥିତିକୁ ଆହୁରି ଜଟିଳ କରି ଦେଇଛି, ତା ହେଉଛି ମଧୁବାବୁଙ୍କ ବର୍ଣ୍ଣବୋଧର ସଂଶୋଧନ। ଏହା ମଧ୍ୟ ଏକ ଭାଷାଗତ ସମସ୍ୟା ହୋଇଥିବାରୁ ଶାସ୍ତ୍ରୀୟ ଭାଷା ଆଲୋଚନାର ବାଦୀ ପ୍ରତିବାଦୀମାନେ ମଧ୍ୟ ଏହି ବିବାଦରେ ଜଡ଼ିତ।

ଏ ସବୁ ଆଲୋଚନାରେ ଆମର ସାହିତ୍ୟିକମାନେ ବିଶେଷ ଭାଗ ନେବାକୁ ଚାହାନ୍ତି। ସେମାନେ କିନ୍ତୁ ବୁଝିବା ଉଚିତ ଯେ ଭାଷା କେବଳ ସାହିତ୍ୟ ଲେଖିବା ପାଇଁ ତିଆରି ହୋଇନାହିଁ। ଭାଷାର ଅନେକ ପ୍ରକାର ପ୍ରୟୋଗ ମଧ୍ୟରୁ ସାହିତ୍ୟ ଗୋଟିଏ ଛୋଟ ବିଭାଗ ମାତ୍ର। ଭାଷାର ତାତ୍ତ୍ୱିକ , ବ୍ୟାବହାରିକ ଇତ୍ୟାଦି ଦିଗର ଆଲୋଚନା ସାହିତ୍ୟିକମାନଙ୍କର ଦାୟିତ୍ୱ ନୁହେଁ, ଏହା ଭାଷାତତ୍ତ୍ୱବିତ୍‌ମାନଙ୍କର ଇଲାକା। କୋଶଳୀ ସ୍ୱତନ୍ତ୍ର ଭାଷା ନା ଉପଭାଷା, ଆଦିବାସୀ ଭାଷାକୁ କିପରି ଉପଯୋଗ ଓ ସମୃଦ୍ଧ କରାଯିବ ଇତ୍ୟାଦି ସାହିତ୍ୟିକଙ୍କର ସମସ୍ୟା ନୁହେଁ। ତେଣୁ ସାହିତ୍ୟିକମାନେ ଏ ସବୁ ଆଲୋଚନାରୁ ଦୂରରେ ରହି ଭାଷାବିତ୍‌ମାନଙ୍କ ଉପରେ ଏହାକୁ ଛାଡ଼ିଦେବା ଉଚିତ।

ଓଡ଼ିଆ ଲିପି ଓ ବନାନ ଇତ୍ୟାଦିକୁ ନେଇ ବର୍ତ୍ତମାନ ଯେଉଁ ତର୍କ ବିତର୍କ ହେଉଛି ସେ ବିଷୟରେ ମୁଁ କିଛି କହିବାକୁ ଯାଉଛି ଜଣେ ଭାଷାତତ୍ତ୍ୱ ଅଜ୍ଞ ଓଡ଼ିଆ ଭାଷାଭାଷୀ ଓଡ଼ିଆ ଲେଖକ ଓ ଓଡ଼ିଆ ପାଠକ ଭାବରେ। ବର୍ତ୍ତମାନ ଏକ ସରଗରମ ଆଲୋଚନା ଚାଲିଛି ଓଡ଼ିଆ ବର୍ଣ୍ଣଲିପିର ବର୍ଣ୍ଣ ସଂଖ୍ୟାକୁ ନେଇ। କେନ୍ଦ୍ର ସାହିତ୍ୟ ଏକାଡେମିର ସଭାରେ କୁହାଯାଇଥିଲା ଯେ ଓଡ଼ିଆରେ ୩୪ଟି ବ୍ୟଞ୍ଜନ ବର୍ଣ୍ଣ ଓ ୧୬ଟି ସ୍ୱର ବର୍ଣ୍ଣ ଅଛି। ବର୍ତ୍ତମାନ

ବଜାରରେ ମିଳୁଥିବା ୨୧ ଜଣ ପ୍ରକାଶକଙ୍କ ଦ୍ୱାରା ପ୍ରକାଶିତ ୨୬ଟି ବର୍ଣ୍ଣବୋଧ ବହିକୁ ଅନୁଧ୍ୟାନ କରି ଦେଖାଯାଇଛି ଯେ, ବିଭିନ୍ନ ବହିରେ ବ୍ୟଞ୍ଜନ ବର୍ଣ୍ଣ ସଂଖ୍ୟା ୨୫ରୁ ୫୫ ପର୍ଯ୍ୟନ୍ତ ଅଛି। (ନିର୍ମଳକାନ୍ତି ମହାନ୍ତି, ସମୟ ୧୯.୩.୨୦୧୩)। ଏବେ ଯୁକ୍ତି କରାଯାଉଛି ଯେ ଏ ସଂଖ୍ୟାକୁ କମ କରାଯାଇପାରିବ ଯଦି କିଛି ବ୍ୟବହାର କରାଯାଉ ନ ଥିବା ଅକ୍ଷର ଯଥା – ଦୀର୍ଘ ଇ, ଉ, ଊ, ଗୋଟିଏ ଯ, ଦୁଇଟି ସ ଇତ୍ୟାଦି –କୁ କାଟି ଦିଆଯାଏ।

ଏ ସଂପର୍କିତ ଆଉ ଏକ ବିବାଦ ହେଉଛି ଯୁକ୍ତାକ୍ଷରକୁ ନେଇ। ୧୯୩୪ରେ ପଣ୍ଡିତ ନୀଳକଣ୍ଠ ଦାସ ପ୍ରସ୍ତାବ କରିଥିଲେ ଯେ କେତେକ ଯୁକ୍ତାକ୍ଷର ବଦଳରେ ହଳନ୍ତ ଓ ଅନୁସ୍ୱାର ବ୍ୟବହାର କରାଯାଉ।(ତାଙ୍କର ନବଭାରତ ପ୍ରେସରେ ଯୁକ୍ତାକ୍ଷର ପାଇଁ ବ୍ୟବହୃତ ଟାଇପ ଫାଉଣ୍ଡରି ଅକ୍ଷରର ଅଭାବ ଦୂରର କରିବା ପାଇଁ ନୀଳକଣ୍ଠ ଏ ପ୍ରକାରର ସମାଧାନ ବାହାର କରିପରିଥାନ୍ତି ବୋଲି ଏକ ଅନୁମାନ କରିଛନ୍ତି ବୈଷ୍ଣବ ଚରଣ ମହାନ୍ତି, ଭିଜାମାଟି ପୂଜାସଂଖ୍ୟା ୨୦୧୪) ।

ଏ ଉଭୟ ପ୍ରସ୍ତାବର ଯୁକ୍ତି ହେଲା ଯେ ଲିପିରୁ କିଛି ଅକ୍ଷର ଓ ମାତ୍ରାକୁ କାଟି ଦେଇ ହଳନ୍ତ ଓ ଅନୁସ୍ୱାର ବ୍ୟବହାର କଲେ ଏହା ସରଳ ଓ ସହଜଲଭ୍ୟ ହୋଇଯିବ। ଅନେକ ଦିନ ତଳେ ଜଣେ ଲେଖକ ଏହାର ଯଥାର୍ଥତା ଦର୍ଶାଇବାକୁ ଯାଇ ଲେଖିଥିଲେ ଯେ ଓଡ଼ିଆରେ ତିନିଟି ସ, ଦୁଇଟି ଇ, ଦୁଇଟି ଉ ଓ ଦୁଇଟି ଜ ଥିବାରୁ ହାର୍ଭାର୍ଡ ବିଶ୍ୱବିଦ୍ୟାଳୟର କୌଣସି ଜଣେ ଛାତ୍ର ଓଡ଼ିଆ ଶିଖିବାରେ ଅସୁବିଧାର ସମ୍ମୁଖୀନ ହୋଇଥିଲେ। (ସମାଜ ୩୧.୮.୨୦୦୨)

ପଣ୍ଡିତ ନୀଳକଣ୍ଠଙ୍କ ପ୍ରସ୍ତାବ ସତ୍ତ୍ୱେ ଏବଂ ଓଡ଼ିଆ ଶିଖିବାକୁ ଆଗ୍ରହୀ ବିଦେଶୀ ଛାତ୍ରର ଅସୁବିଧା ସତ୍ତ୍ୱେ ଓଡ଼ିଆରେ ଏ ଭଳି ଲିପି ସଂସ୍କାର ହୋଇନାହିଁ। ତାର କାରଣ ଲିପି ବଦଳୁଛି ବ୍ୟବହାର ଭିତ୍ତିରେ, କେଉଁ କମିଟି ବା ପଣ୍ଡିତଙ୍କ ଅନୁଶାସନ ଯୋଗୁଁ ନୁହେଁ।

ଜର୍ଜ ବର୍ଣ୍ଣାର୍ଡ ଶ' ନିଜେ ଶର୍ଟହ୍ୟାଣ୍ଡରେ ଲେଖୁଥିବାରୁ ଇଂରେଜୀ ବନାନ ପ୍ରତି ବିତୃଷ୍ଣ ଥିଲେ। ସେ ଇଂରେଜୀରେ ବନାନ ସଂସ୍କାର ଚାହୁଁଥିଲେ ଏବଂ ସେଥିପାଇଁ ନିଜର ଉଇଲ୍‌ରେ ବ୍ୟବସ୍ଥା କରିଥିଲେ ଯେ ତାଙ୍କର ମୃତ୍ୟୁର ୨୧ବର୍ଷ ପରବର୍ତ୍ତୀ ସମୟରେ ଯେତେ ରୟାଲ୍‌ଟି ମିଳିବ ସେଥିରେ ଏକ ଟ୍ରଷ୍ଟ ତିଆରି ହୋଇ ସେମାନେ ଏକ ଉଚ୍ଚାରଣ ଭିତ୍ତିକ ଲିପି ତିଆରି କରିବେ। ଶ' ମଲେ ୧୯୫୦ରେ ଏବଂ ଟ୍ରଷ୍ଟ ପକ୍ଷରୁ ଏକ ପ୍ରତିଯୋଗିତା ହୋଇ ୧୯୫୯ରେ ଚାଳିଶ ଅକ୍ଷର ବିଶିଷ୍ଟ ଏକ ଲିପି ତିଆରି ହେଲା। ସେହିଦିନଠାରୁ ଏ ପର୍ଯ୍ୟନ୍ତ ସେ ଲିପିରେ ମାତ୍ର ଗୋଟିଏ ବହି ଛପା ହୋଇଛି, ଶ'ଙ୍କର ଗୋଟିଏ ନାଟକ!

ଏଥିରୁ ଜଣା ପଡ଼ିବ ଯେ ଚେଷ୍ଟା କରି ଲିପିକୁ ବଦଳାଇ ତାକୁ ପାଠକମାନଙ୍କ ଉପରେ ଲଦି ଦିଆଯାଇପାରିବ ନାହିଁ। ଲେଖକମାନଙ୍କର ବ୍ୟବହାର ଓ ପାଠକମାନଙ୍କର ସୁବିଧା ପାଇଁ ଯଦି ଆବଶ୍ୟକ ହୁଏ ତେବେ ଲିପି ଆପେ ଆପେ ବଦଳିବ। ଆମ ଭାଷାରେ ଏହାର ଅନେକ ଉଦାହରଣ ଅଛି। ବର୍ଣ୍ଣମାଳାରେ ଥିବା ଋ ଓ ଌ ଅକ୍ଷର ଆଉ କେହି ବ୍ୟବହାର କରୁନାହାନ୍ତି ଏବଂ ଏ ଅକ୍ଷର ପିଲାଙ୍କ ଅକ୍ଷର ଶିକ୍ଷା ବହିରୁ ଉଠିଗଲାଣି। ଅନେକ ଯୁକ୍ତାକ୍ଷର

ବର୍ତ୍ତମାନ ଅନୁସ୍ୱାର ଦେଇ ଲେଖାଯାଉଛି। ଅତି ସୁଖର ବିଷୟ ଯେ ସରକାରଙ୍କ ପ୍ରଥମ ଶ୍ରେଣୀ ବହି 'ହସ ଖେଳ'(ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ, ୨୦୦୯)ରେ କୁହାଯାଇଛି ଯେ ଟଂକା, ଶଂଖ, ଢଂଘ, ସଂଙ୍ଘ, ପଂଝା ଇତ୍ୟାଦି ଶବ୍ଦ ଯୁକ୍ତାକ୍ଷରରେ ନ ଲେଖି ଅନୁସ୍ୱାର ଦେଇ ମଧ୍ୟ ଲେଖି ହେବ। ଲେଖକଙ୍କ ଦ୍ୱାରା ଉଭୟ ବ୍ୟବହାର ପାଠକମାନଙ୍କ ପାଇଁ କୌଣସି ସମସ୍ୟା ସୃଷ୍ଟି କରି ନାହିଁ।

କୃତ୍ରିମ ଉପାୟରେ ତିଆରି କରି ଲେଖକ ଓ ପାଠକମାନଙ୍କ ଉପରେ ବୋଝାଇବାର ଆଉ ଗୋଟିଏ ଉଦାହରଣ ନିଆଯାଉ ଅବର୍ଗ୍ୟ ବ ଅକ୍ଷର। ଇଂରେଜୀର ଡବ୍‌ଲିଉ ଭଳି ଉଚ୍ଚାରିତ ହେଉଥିବା ଅକ୍ଷର ଆମ ଲିପିରେ(ବଙ୍ଗଳାରେ ମଧ୍ୟ) ନଥିବାରୁ ଆମେ ତା ବଦଳରେ ବ ବ୍ୟବହାର କରୁ ଏବଂ ଲେଖୁ ରବୀନ୍ଦ୍ର, ବୈଦେହୀଶ ବିଳାସ, ବାଗିଦ୍ ଇତ୍ୟାଦି। ଏହି ସମସ୍ୟାର ସମାଧାନପାଇଁ ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଏକ ପେଟକିଳା ବ ଉଦ୍‌ଭାବନ କରି ଚଳାଇବାର ଚେଷ୍ଟା କରାଗଲା, କିନ୍ତୁ ଲେଖକ ଓ ପାଠକମାନଙ୍କର ଅନାଗ୍ରହରୁ ଏହା ଚଳିଲା ନାହିଁ।

୧୯୩୭ ମସିହାରେ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ଷଷ୍ଠ ଖଣ୍ଡ ପ୍ରକାଶିତ ହେଲା ବେଳେ ଗୋପାଳ ଚନ୍ଦ୍ର ପ୍ରହରାଜ ଏଥିପାଇଁ ଏକ ନୂଆ ଅକ୍ଷର ସୃଷ୍ଟି କରି ତାର ଟାଇପ୍ ତିଆରି କରାଇଲେ। ଏ ଅକ୍ଷର ବିଷୟରେ ସେ ଲେଖିଛନ୍ତି : ବର୍ତ୍ତମାନ ଅବର୍ଗ୍ୟ 'ବ'ର ଉଚ୍ଚାରଣକୁ ଚିହ୍ନାଇବା ପାଇଁ 'ବ'ରେ ଗୋଟିଏ ସ୍ୱାତନ୍ତ୍ର୍ୟ ବୋଧକ ଚିହ୍ନ ଓଡ଼ିଆ ଲିପିରେ ପ୍ରବର୍ତ୍ତିତ କରିବା ଆବଶ୍ୟକ ବୋଲି ଉପଲବ୍‌ଧ କରି ତାହା ପ୍ରବର୍ତ୍ତାଇବା ନିମନ୍ତେ ମୁଁ ଏ ଭାଷାକୋଷରେ – ଅବର୍ଗ୍ୟ ବ ପାଇଁ ଗୋଟିଏ ନୂଆ ଅକ୍ଷର ଉଦ୍‌ଭାବନ କଲି।'' ଜୟପୁରର ବିକ୍ରମଦେବ ବର୍ମା ମଧ୍ୟ ଏଥି ପୂର୍ବରୁ ଏପରି ଗୋଟିଏ ସ୍ୱତନ୍ତ୍ର ଅକ୍ଷର ତିଆରି କରିଥିଲେ। କିନ୍ତୁ ଏହା ଅନ୍ୟ ଲେଖକ ଓ ପାଠକମାନେ ଗ୍ରହଣ କରି ନଥିଲେ। ଭାଷାକୋଷ ବାହାରେ ପ୍ରହରାଜଙ୍କ ଅକ୍ଷରର କୌଣସି ବ୍ୟବହାର ହୋଇ ନଥିଲା।

ବିଶିଷ୍ଟ ଶବ୍ଦକୋଷକାର ପଣ୍ଡିତ କୃଷ୍ଣଚନ୍ଦ୍ର କର ନିଜର ତରୁଣ ଶବ୍ଦକୋଷ(୧୯୬୬)ରେ ଅବର୍ଗ୍ୟ ବ ବିଷୟରେ ଦୀର୍ଘ ଟିପ୍ପଣୀ ଦେଇଛନ୍ତି ଏବଂ ନିଜେ ଏହି ଅକ୍ଷର ପାଇଁ ଉଅ, ଉଆ, ଉଏ ରୂପ ବ୍ୟବହାର କରିଛନ୍ତି। ତାର କାରଣ ସ୍ୱରୂପ ସେ କହିଛନ୍ତି, ''ଆମ ଭାଷାରେ ଏହି ପ୍ରଶ୍ନର ଯଥାବିହିତ ସମାଧାନ ହୋଇ ସର୍ବଜନସ୍ୱୀକୃତ କୌଣସି ବର୍ଣ୍ଣ ଏ ପର୍ଯ୍ୟନ୍ତ ସୃଷ୍ଟି ହୋଇନାହିଁ।'' ତାଙ୍କ ଲେଖାରେ 'ସର୍ବଜନସ୍ୱୀକୃତ' କଥାଟି ବିଶେଷ ଭାବରେ ଲକ୍ଷ୍ୟ କରିବାର କଥା।

ସୁଖର କଥା ଯେ ଆପଣା ଆପେ ଏ ଭଳି ଗୋଟିଏ ଅକ୍ଷର– ଓ ତଳେ ବ ଫଳା ଦିଆ ଓ୍ୱ – ବର୍ତ୍ତମାନ ବହୁଳ ଭାବେ ପ୍ରଚଳିତ, ଲେଖକମାନଙ୍କ ଦ୍ୱାରା ବ୍ୟବହୃତ ଓ ସର୍ବଜନସ୍ୱୀକୃତ। ରୂଢ଼ିବାଦୀମାନେ କହିବେ ଯେ ସ୍ୱରବର୍ଣ୍ଣରେ ଫଳା ଲଗାଇବା ନିୟମ ବିରୁଦ୍ଧ। ତେବେ ତାଙ୍କ କଥାକୁ ପଚାରୁଛି କିଏ ?

ବନାନ ଓ ଲିପି ବ୍ୟତୀତ ଅନେକ ନୂଆ ଶବ୍ଦ ମଧ୍ୟ ବ୍ୟବହାର ଯୋଗୁ ଆମ ଭାଷାରେ ଗୃହୀତ ହୋଇଯାଇଛି। ଏହାର ଗୋଟିଏ ଉଦାହରଣ ସଂଖ୍ୟାବାଚକ ଶବ୍ଦ ଏକୋଇଶିତମ, ତେତିଶିତମ, ଅଣଚାଳିଶତମ ଇତ୍ୟାଦି। ଏଗୁଡ଼ିକର ଶୁଦ୍ଧ ରୂପ ହେଲା ଏକବିଂଶତିତମ, ତ୍ରୟସ୍ତ୍ରିଂଶତ୍ତମ ଓ ଏକୋନଚତ୍ୱାରିଂଶତ୍ତମ। କିଏ ଏତେ ଜଟିଳ ଶବ୍ଦ ଲେଖିବ ବା ପଢ଼ିବ? ଅଣଚାଳିଶତମ ବା ଏହି ଲେଖାର ଆରମ୍ଭରେ ସରକାରଙ୍କ ବିଜ୍ଞାପନର ୬୫ତମ ହିଁ ବର୍ତ୍ତମାନ ଠିକ୍। ଆମର ବହୁଳ ବ୍ୟବହାର ହିଁ ଏହି ଭୁଲ୍ ବ୍ୟବହାରକୁ ଠିକ କରି ଦେଇଛି। ତରୁଣ ଶବ୍ଦକୋଷର ପରିଶିଷ୍ଟରେ ଗୋଟିଏ ବିଭାଗ ଅଛି 'ଅଶୁଦ୍ଧ ହେଲେ ହେଁ ବହୁ ପ୍ରଚଳିତ'। ବର୍ତ୍ତମାନ ଅଭିଧାନରେ ଗୋଟିଏ ବିଭାଗ ରହିବା ଉଚିତ 'ବହୁ ପ୍ରଚଳିତ, ତେଣୁ ଶୁଦ୍ଧ'।

ଆମେ ବର୍ତ୍ତମାନ ବ୍ୟବହାର କରୁଥିବା ଭାଷା, ବନାନ ଓ ଲିପି, ଯାହା ସମୟ ସହିତ ତାଳ ଦେଇ ଚାଲିଆସିଛି, ଲେଖକ ଓ ପାଠକମାନଙ୍କ ପାଇଁ କୌଣସି ଅସୁବିଧା ସୃଷ୍ଟି କରୁନାହିଁ। ଆମର ପିଲାମାନେ ଏହାକୁ ଶିଖିବାରେ କୌଣସି ସମସ୍ୟା ନାହିଁ। ଯେ ଆମର ଲିପି ବନାନ ଇତ୍ୟାଦିରେ ସନ୍ତୁଷ୍ଟ ନୁହେଁ, ସମସ୍ୟା ତା'ର ଆମର ନୁହେଁ। ଆମ ଭାଷା ଓ ଲିପି ଆମ ପାଇଁ ତିଆରି ହୋଇଛି, ହାର୍ଭାର୍ଡରୁ ଆସିଥିବା ଗୋରା ଟୋକା ବା ଓଡ଼ିଆ ଶିଖିବାରେ ଆଗ୍ରହ ନଥିବା ବାହାରୁ ଆସିଥିବା ଲୋକଙ୍କ ପାଇଁ ନୁହେଁ। ଆମ ପାଇଁ କୌଣସି ଅସୁବିଧା ନାହିଁ ଏହାକୁ ଲେଖିବା ପଢ଼ିବାରେ।

ଏବେ ଆଉ ଗୋଟିଏ ଯୁକ୍ତି ଦିଆଯାଉଛି ଯେ ଲିପି ଓ ବନାନ ସଂସ୍କାର ନ ହେଲେ କଂପ୍ୟୁଟରରେ ଏହାର ବ୍ୟବହାର ହୋଇପାରିବ ନାହିଁ। ଏ ଏକ ଅଦ୍ଭୁତ ଯୁକ୍ତି। କାଲି ହୁଏ ତ କୁହାଯିବ ଯେ ରୋମାନ ଅକ୍ଷରରେ ଓଡ଼ିଆ ଲେଖିଲେ କଂପୁଟରକୁ ଆହୁରି ସୁବିଧା ହେବ। ଏହାର ଉତ୍ତର ହେଉଛି, ମେସିନ ମୋର ଚାକର, ମୁଁ ମେସିନର ଚାକର ନୁହେଁ। ମୋ ଭାଷା କିପରି ମେସିନରେ ପ୍ରୟୋଗ ହେବ ସେ କଥା ମେସିନ କାରିଗର ବୁଝିବେ, ଏହାର ସମାଧାନ ତାଙ୍କର ଦକ୍ଷତା ଉପରେ ନିର୍ଭର। ଏ ସମସ୍ୟା ସେମାନଙ୍କର, ଆମର ନୁହେଁ।

ଶହେ ବର୍ଷ ତଳେ ଫକୀରମୋହନ କହିଥିଲେ : " ତର୍କ କ୍ଷେତ୍ରରେ ସ୍ୱୀକାର କରାଯାଉ ଉତ୍କଳ ଅକ୍ଷର ତଥା ଭାଷାର ଉଚ୍ଚାରଣ କଦର୍ଯ୍ୟ ଭାବରେ ଅଛି, ତାହାର ସଂସ୍କାର ଆବଶ୍ୟକ। କାହା ସକାଶ? ଦେଶ ସକାଶ? ଉତ୍କଳୀୟମାନଙ୍କ ସକାଶ? ନିଶ୍ଚୟ ସେମାନେ କଦର୍ଯ୍ୟ ଅକ୍ଷରରେ ସନ୍ତୁଷ୍ଟ। ସେମାନେ ସଂସ୍କାର ଲୋଡ଼ୁନାହାନ୍ତି। ଜବରଦସ୍ତି ସଂସ୍କାରଟା ସେମାନଙ୍କ ବେକରେ ବାନ୍ଧିବାର ଆପଣଙ୍କର କି ଅଧିକାର ଅଛି?"

ଆମ ଓଡ଼ିଆ ଭାଷା ଆମ ସକାଶ, ଆମ ଲେଖକ ଓ ପାଠକଙ୍କ ସକାଶ। ଯେଉଁମାନେ ବର୍ତ୍ତମାନ ଆମର ଲିପି ଓ ବନାନ ଇତ୍ୟାଦି ସଂସ୍କାର କରିବାର ଯୋଜନାରେ ଲାଗିଛନ୍ତି ସେମାନଙ୍କୁ ଫକୀରମୋହନଙ୍କ ପ୍ରଶ୍ନର ଉତ୍ତର ଦେବାକୁ ପଡ଼ିବ।

*ଡିସେମ୍ବର, ୨୦୧୪*

# ଶବ୍ଦ ସହିତ ଖେଳ କସରତ

ଶବ୍ଦ ହେଉଛି ଏକ ଗମ୍ଭୀର, ଗୁରୁତ୍ୱପୂର୍ଣ୍ଣ ଏବଂ ସଂଘାତିକ ବସ୍ତୁ। ବାଇବଲରେ ଜନ୍ ଲିଖିତ ସୁସମାଚାରର ପ୍ରଥମ ଧାଡ଼ିଟି ହେଲା : ପ୍ରାରମ୍ଭରୁ ଥିଲା ଶବ୍ଦ, ଏବଂ ଶବ୍ଦ ଥିଲା ଈଶ୍ୱରଙ୍କ ସହିତ, ଏବଂ ଶବ୍ଦ ହିଁ ଥିଲା ଈଶ୍ୱର। କୁହାଯାଇଛି ଯେ ଏହି ଶବ୍ଦ କହିଲେ ଯୀଶୁଖ୍ରୀଷ୍ଟଙ୍କୁ ବୁଝାଏ। ସେହିପରି ବେଦର ସତପଥ ବ୍ରାହ୍ମଣରେ ଶବ୍ଦକୁ ବ୍ରହ୍ମ ବୋଲି କୁହାଯାଇଛି। ଶବ୍ଦ ଯଦି ବ୍ରହ୍ମ, ତା ସହିତ ଖେଳ କସରତ ପୁଣି କିପରି ?

ତେବେ ଲେଖକମାନେ ହେଉଛନ୍ତି ସୃଷ୍ଟିଛଡ଼ା, ମଧ୍ୟ ଦୁଃସାହସୀ। ସେମାନଙ୍କ ପାଇଁ ସାତଖୁଣ ମାଫ୍। ସେଥିପାଇଁ ସେମାନେ ଶବ୍ଦମାନଙ୍କ ସହିତ ଥଟ୍ଟା ତାମସା ଖେଳ କସରତ କରିବା ପାଇଁ ଆଗଭର ହୁଅନ୍ତି। ଏ ବିଷୟରେ ଅବଶ୍ୟ ପାଶ୍ଚାତ୍ୟ ଲେଖକମାନେ ଅନେକ ଆଗରେ। ସଂସ୍କୃତ ଓ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଏହାର ଅନେକ ଉଦାହରଣ ଅଛି, କିନ୍ତୁ ଆଜିର ଲେଖକମାନେ ଏ ବିଷୟଟି ପ୍ରତି ନିସ୍ପୃହ। ଇଂରେଜୀରେ ଶବ୍ଦ ସହିତ ଖେଳିବାକୁ ନେଇ ବିଭିନ୍ନ ପ୍ରକାରର ବିଭାଗ ଅଛି ଏବଂ ପ୍ରତିଟି ଖେଳର ନାଁ ମଧ୍ୟ ଅଛି।

ଏହି ଲେଖାରେ କେବଳ ଦୁଇଟି ଶବ୍ଦ ଚାତୁରୀର ଉଦାହରଣ ନିଆଯାଉଛି, pangram ଓ palindrome। ଏହି ଉଦାହରଣମାନ ଇଂରେଜୀରେ ହିଁ ଲେଖିବାକୁ ହେବ କାରଣ ଏହା ଇଂରେଜୀ ଅକ୍ଷରକୁ ଭାଙ୍ଗି ଯୋଡ଼ି ସଜାଡ଼ି ଲେଖିବା ଦ୍ୱାରା ସମ୍ଭବ ହୋଇଥିବାରୁ ଏହାକୁ ଓଡ଼ିଆରେ ଅନୁବାଦ କରିବା ସମ୍ଭବ ନୁହେଁ।

ପ୍ରଥମ ଉଦାହରଣ – ଯାହାର ଅର୍ଥ 'ସବୁ ଅକ୍ଷର'– ବର୍ଣ୍ଣମାଳାକୁ ନେଇ। ଇଂରେଜୀ ବର୍ଣ୍ଣମାଳରେ ମୋଟ ଛବିଶଟି ଅକ୍ଷର। ଉଦ୍ୟମ କରାଯାଇଛି କିପରି ଗୋଟିଏ ବାକ୍ୟରେ ଏହି ଛବିଶଟି ଯାକ ଅକ୍ଷର ରହିପାରିବ। ପାନ୍‌ଗ୍ରାମ ହେଉଛି ଛବିଶଟି ଯାକ ଅକ୍ଷର ଥିବା ବାକ୍ୟ। ବତିଶ ଓ ତେତିଶ ଅକ୍ଷର ସମ୍ବଳିତ ଦୁଇଟି ବାକ୍ୟ ହେଲା : Pack my box with five dozen liquor jugs (୩୨) ଏବଂ A quick brown fox jumps over the lazy dog (୩୩) ଏହାକୁ ଆହୁରି ଛୋଟ କରିବା ପାଇଁ ଚେଷ୍ଟା ଜାରି ରହିଛି ଏବଂ ସେଥିପାଇଁ Mr. Jock, TV quiz Ph.D. bags few lynx (୨୬ ଅକ୍ଷର) ଭଳି ହାସ୍ୟ ଉଦ୍ରେକକାରୀ ବାକ୍ୟ ତିଆରି କରାହୋଇଛି।

ଗୋଟିଏ ସଂସ୍କୃତ ପାନ୍‌ଗ୍ରାମ୍‌ର ଉଦାହରଣ ହେଲା :

କଃ ଖଗୌଘାଙ୍ଚି ଚ୍ଛୌଜାଝାଞ୍ଜ୍ଞୋଽ ଟୌଠୀଡଢ଼ଣଃ।

ତଥୋ ଦଧୀନ ପଫର୍ବାଭୀର୍ମଯୋରିଽଲ୍ଲାଶିଷାଂ ସହଃ ।।

ଏହି ଦୃଷ୍ଟି ଓ ଶ୍ରୁତିକଟୁ ପଦର ଅର୍ଥ କୁହାଯାଇଛି : କିଏ ସେହି ଲୋକ ଯେ ପକ୍ଷୀ ପ୍ରିୟ, ଧୀମାନ, ଅନ୍ୟର ବଳ ନିଜର କରିବାରେ ପାରଙ୍ଗମ, ଶତ୍ରୁ ହନ୍ତାଙ୍କ ମୁଖ୍ୟ, ଅଟଳ, ନିର୍ଭୀକ ଓ ଯେ ସମୁଦ୍ରକୁ ସଂପୂର୍ଣ୍ଣ କରିଛି ? ସେ ରାଜା ମାୟା, ଆଶୀର୍ବାଦର ଭଣ୍ଡାର, ଯେ ଶତ୍ରୁ ନିପାତ କରିପାରେ। କିଛି ବୁଝି ହେଲା ଏଥିରୁ ? ଆମ ଓଡ଼ିଆରେ ଏପରି ଲେଖାର ଉଦାହାରଣ ନାହିଁ କିନ୍ତୁ ପ୍ରାୟ ପଚାଶ ବର୍ଷ ତଳେ ପ୍ରଶାସକ ପ୍ରାଣନାଥ ମହାନ୍ତି ତାଙ୍କର ଏକ ଭାଷଣରେ ଏପରି ଏକ ଉଦାହରଣ ଦେବାର ଶୁଣିଥିଲି। ନିମ୍ନଲିଖିତ ବାକ୍ୟଟି ସ୍ୱୟଂ ଉପେନ୍ଦ୍ର ଭଞ୍ଜ କହିଥିଲେ ବୋଲି ସେ କହିଥିଲେ :

" କି ଖଗା ଘନେ ଚାଁଛ ଯେଝା ନାଟ ଠା ଡଢ଼ାର୍ଣ୍ଣ ତଥି ଦଧି ନେ ପା ଫାବି ଭୀମ ଢୋର ଲବ ଶଷା ସିଂହ "

ଏଥିରେ କ୍ରମାନ୍ୱୟରେ କ ଠାରୁ ହ ପର୍ଯ୍ୟନ୍ତ ଅକ୍ଷରମାନ ଅଛି ଏବଂ ବାକ୍ୟଟି କଃ ଖଗୌ ଭଳି ଦାନ୍ତଭଙ୍ଗା ନୁହେଁ। ଶ୍ରୀ ମହାନ୍ତି ଏହାର ଅର୍ଥ କରିଥିଲେ ଯେ ଉପେନ୍ଦ୍ର ଭଞ୍ଜଙ୍କ ଗାଁକୁ ଦୁଇଟି ଦଳ ଯାତ୍ରା କରିବାକୁ ଆସିଥିଲେ ଓ ଭଂଜ ଖଗା ନାମକ ଲୋକକୁ ଉଭୟ ଦଳଙ୍କର ନାଟକ କରିବା ଜାଗାକୁ ଭଲ ଭାବରେ ସମତଳ କରିବାକୁ କହୁଥିଲେ ଏବଂ ତାକୁ ଆଶ୍ୱାସନା ଦେଇଥିଲେ ଯେ କାମ କରି ସାରିବା ପରେ ତାକୁ ଦହଡ଼ ଅନ୍ନ ଓ ସେଥିରେ ଦଧି ଦିଆଯିବ, ତାକୁ ନେଇ ପା(ଖା) କାରଣ ଏହା ତାକୁ ଫାବି(ତାର ପ୍ରାପ୍ୟ) ଏବଂ ଏହାକୁ ଖାଇଲେ ତାର ଭୀମ ଭଳି ଢୋର ହେବ, ଯେପରିକି ଲବ(ସାମାନ୍ୟ) ଠେକୁଆ ସିଂହ ଭଳି ହୁଏ।

ଏହି କୃତ୍ରିମ ବାକ୍ୟଟି ଛବିଶ ଅକ୍ଷରିଆ ଇଂରାଜୀ ବାକ୍ୟ ବା ଉପରେ ଦିଆଯାଇଥିବା ରାଜା ମାୟାଙ୍କ ସ୍ତୁତି ବନ୍ଦନାଠାଁରୁ କୌଣସି ଗୁଣରେ ଊଣା ନୁହେଁ।

ଆମ ଓଡ଼ିଆ ସାହିତ୍ୟରେ ଏହି ବର୍ଣ୍ଣମାଳା ଖେଳର ନିକଟତମ ଉଦାହରଣ ହେଉଛି ଚଉତିଶା ଯେଉଁଥିରେ କବିତାର ପଦର ପ୍ରଥମ ଅକ୍ଷରମାନଙ୍କରେ କ ଠାରୁ କ୍ଷ ପର୍ଯ୍ୟନ୍ତ ବ୍ୟଂଜନ ବର୍ଣ୍ଣର ଚଉତିରିଶଟି ଯାକ ଅକ୍ଷର ବ୍ୟବହାର କରାଯାଏ। ଚଉତିଶା ଆମ ସାହିତ୍ୟର ଏକ ପ୍ରାଚୀନ ରୂପ ବିଧାନ ଏବଂ କଳଶା ଚଉତିଶାକୁ ଆଦ୍ୟ ଓଡ଼ିଆ ସାହିତ୍ୟର ଉଦାହରଣ ବୋଲି କୁହାଯାଇଥାଏ। ଏହା ବ୍ୟତୀତ ଉପେନ୍ଦ୍ର ଭଂଜଙ୍କର ବୈଦେହୀଶ ବିଳାସରେ ପ୍ରତିଟି ଧାଡ଼ିର ପ୍ରଥମରେ ବ ଅକ୍ଷର ଓ ଦୀନକୃଷ୍ଣ ଦାସଙ୍କ ରସକଲ୍ଲୋଳରେ କ ଅକ୍ଷରର ଉଦାହରଣ ମାନ ଦ୍ରଷ୍ଟବ୍ୟ।

ଆମର ଅଳଙ୍କାର ଶାସ୍ତ୍ରରେ ବିଭିନ୍ନ ପ୍ରକାରର ଅନୁପ୍ରାସର ବର୍ଣ୍ଣନା ଅଛି ଯାହାର ପ୍ରତିଟି ଚରଣର ଆଦ୍ୟ ଓ ପ୍ରାନ୍ତରେ ଏକ ବା ଏକାଧିକ ବ୍ୟଂଜନ ବର୍ଣ୍ଣ ବ୍ୟବହୃତ ହୋଇଛି। ଏକବର୍ଣ୍ଣାନୁପ୍ରାସରେ ପ୍ରତ୍ୟେକ ଚରଣର ଆଦ୍ୟ ଓ ପ୍ରାନ୍ତରେ ଗୋଟିଏ ବର୍ଣ୍ଣର ଉଦାହରଣ : ସନ୍ଥଜନ ଘେନ ଏ ଦିବ୍ୟ ରସ । ସଖା ପୁଣି ଗୋବିନ୍ଦ-ଚିନ୍ତା ଭାଷ ।। ଦ୍ୱିବର୍ଣ୍ଣାନୁପ୍ରାସରେ :

ତର ନ ସହି ପୁଚ୍ଛନ୍ତେ ଉତ୍ତର । ତରକିଲେ ଦେଖି ମହାକାତର ॥ ଏହିପରି ଭାବରେ ତ୍ରି, ଚତୁର ଓ ପଞ୍ଚ ବର୍ଣ୍ଣାନୁପ୍ରାସର କବିତା ମଧ୍ୟ ଲେଖା ହୋଇଛି ।

ଆଉ ଗୋଟିଏ ଆଳଂକାରିକ ଉଦାହରଣ 'ବର୍ଗାନୁପ୍ରାସ'ରେ କ୍ରମାନ୍ୱୟେ ଚରଣମାନଙ୍କ ଆଦ୍ୟରେ ବର୍ଗର ପ୍ରଥମ ବର୍ଣ୍ଣମାନ (କଚଟତପ), ଦ୍ୱିତୀୟ ବର୍ଣ୍ଣମାନ(ଖଛଠଥଫ) ଓ ଏପରି ବର୍ଗର ଅନ୍ୟ ବର୍ଣ୍ଣମାନ ବ୍ୟବହୃତ ହୋଇଥାଏ । ଯଥା,

କଂଜ ନୟନେ ଅଛି ହୃଦେ ଯାହାର୍,
ଚମତ୍କାର ଏ ସ୍ୱପ୍ନ ଅଂଗୀକାର ।
ଟଳି ଅଛି ଏଥିପାଇଁ ଧୀରତି,
ତଥ୍ୟ କାହୁଁ ଘେନନ୍ତା ଆମ୍ଭ ମତି ।
ପରପରା ଆମ୍ଭ ଗିର ନ ଧର,
ଖରେ ବୃନ୍ଦାବନକୁ ଛ୍ବିଛେ କର
ଛଳି ଛଇଳ ବର କୁଂଜେ ନେଲେ,
ଠକ ପଣେ ହାରରୁ ଚିହ୍ନାଇଲେ । ଇତ୍ୟାଦି ।

ଗଦ୍ୟ ଲେଖକମାନେ ମଧ୍ୟ ଏ ପ୍ରତିଦ୍ୱନ୍ଦ୍ୱିତାରେ ଭାଗ ନେଇଛନ୍ତି । ଅନେକ ବର୍ଷ ତଳେ ଶଶିଭୂଷଣ ରାୟ ଏକ ଭ୍ରମଣ ପ୍ରବନ୍ଧ ଲେଖିଥିଲେ (ବୋଧହୁଏ ସହକାର ପତ୍ରିକାରେ) ଯାହର ପ୍ରତ୍ୟେକ ଶବ୍ଦର ପ୍ରଥମ ଅକ୍ଷର ଥିଲା 'ପ' । ଏ ପ୍ରବନ୍ଧଟି ପଢ଼ି ଜଣେ ପାଠକ ସଂପାଦକଙ୍କୁ ପତ୍ର ଲେଖିଥିଲେ ଯେ ଲେଖକ ନିଜର ନାଁ ପରିବର୍ତ୍ତେ 'ପାର୍ବତୀ ପ୍ରଣେତା ପୁତ୍ର'(ଅର୍ଥାତ୍ 'ପାର୍ବତୀ' କାବ୍ୟ ଲେଖକ ରାଧାନାଥ ରାୟଙ୍କ ପୁଅ) ଲେଖିଥିଲେ ଉତ୍ତମ ହୋଇଥାନ୍ତା !

କଚଟତପକୁ ନେଇ ସେଇ ଶିରୋନାମାର ଏକ ସଂପୂର୍ଣ୍ଣ ବହି ଲେଖିଥିଲେ କ୍ଷୀରୋଦ ଚନ୍ଦ୍ର ପାଳ । ଏହାର ବିଷୟବସ୍ତୁ ଥିଲା ନିଶାଦ୍ରବ୍ୟ ପ୍ରତି ଆସକ୍ତି ଓ ବଦଭ୍ୟାସ, ଏବଂ ଏହାର ପାଞ୍ଚଟି ପରିଚ୍ଛେଦ ଥିଲା : କଳା କୃଷ୍ଣ କ୍ରିୟା କଳାପ(ଅଫିମ), ଚା ଚାତୁରୀ(ଚା), ଟଙ୍କଧରଙ୍କ ଟିପ(ନାସ) ତମାଖୁ ତର୍ଜମା(ଧୂଆଁପତ୍ର) ଓ ପାନ ପ୍ରସଙ୍ଗ(ପାନ) । ସେ ନିଜର ବହିକୁ କ ବର୍ଗରେ ସୀମିତ ରଖିଥିବାରୁ ଆମେ ତାଙ୍କ ଲେଖନୀରୁ ଗଂଜେଇ ଗଂଜଣା ଓ ମଦ୍ୟ ମୀମାଂସା ଭଳି ପରିଚ୍ଛେଦ ପାଇ ପାରିଲୁ ନାହିଁ । ତାଙ୍କ ଲେଖାରୁ ଗୋଟିଏ ଉଦ୍ଧରଣ :

ତରଳମତି ତରୁଣ ତରୁଣୀ ତୁଣ୍ଡିଆ, ତୁରୁତୁରିଆ, ତଳମୁହାଁ, ତୋତଲା, ତ୍ରିତଳ ଠାରୁ ତୃଣକୁଟୀରବାସୀ ସମସ୍ତେ ତମାଖୁର ତେଲଦିଆ । ... ତମାଖୁ ଟେଣ୍ଡିଲେ ତୁରନ୍ତ ଥକା ତିରୋହିତ ହୋଇ ତାଜା ବୋଧ ହୁଏ । ତେଣୁ ତୁଚ୍ଛ ତାଚ୍ଛିଲ୍ୟତାରେ ତୃପ୍ତିର ତାଜମହଲ ତକ୍ଷଣେ ତିଆରି ହୋଇ ତତ୍‌କ୍ଷଣାତ ତାଲିଯାଏ । ତତ୍‌ପରେ ତୀବ୍ର ନିକୋଟିନରେ ତାଜା ଘ୍ରାଣଶକ୍ତି, ତୀକ୍ଷ୍ଣ ଦୃଷ୍ଟି ଶକ୍ତି, ତଟକା ସ୍ୱାଦ ଶକ୍ତି, ତେଜୀୟାନ ପ୍ରାଣ ଶକ୍ତି, ତଥା ତଣ୍ଡ ହଜମ କ୍ଷମତା ତ୍ୱରା ତିରୋହିତ ହୁଏ ।

ଏହି ପ୍ରସଙ୍ଗରେ ମୁଁ ଅନେକ ଦିନ ତଳେ (ଆଲୁକୁଚି ମାଲୁକୁଚି, ଲାର୍କ ବୁକ୍‌ସ୍‌, ୧୯୯୩)ଲେଖିଥିବା 'ପ୍ରେମର ପ ବର୍ଗ' କବିତା ଉଦ୍ଧାର କରିବାର ଲୋଭ ସମ୍ବରଣ କରି ପାରୁ ନାହିଁ।

ପଡ଼ୋଶୀ ପରିକ୍ରମା ପ୍ରତୀକ୍ଷା, ପରିଚୟ ପ୍ରେମପତ୍ର ପରୀକ୍ଷା।
ଫୁଲାଫାଙ୍କିଆ ଫଟା କପାଳ, ଫଟୋ ଫାଣ୍ଡି ଫଲିତଲ।
ବାଇସ୍କୋପ ବାତାୟନ ବାହାନା, ବାପା ବିପଦ ବିଚରା ବଞ୍ଚନା ।
ଭଗାରିହସା ଭଗ୍ନମନୋରଥ, ଭର୍ତ୍ସନା ଭାଳେଣି ଭୟାର୍ତ୍ତ।
ମୂର୍ଚ୍ଛା ମୃଗୀ ମୋହ ମୌନ, ମାନ୍ଦା ମନଦୁଃଖ ମଦ୍ୟପାନ।

ଶବ୍ଦ ଖେଳର ଅନ୍ୟ ଉଦାହରଣଟି ହେଉଛି Palindrome – ଏ ଭଳି ଶବ୍ଦ ବା ବାକ୍ୟ ଯାହାକୁ ଆଗରୁ ପଛକୁ ଓ ପଛରୁ ଆଗକୁ ସମାନ ଭାବେ ପଢ଼ି ହେବ ଯଥା : race car, Madam I'm Adam, A man a plan a canal Panama ବା ନେପୋଲିଅନ କହିଥିଲେ ବୋଲି କୁହାଯାଉଥିବା Able was I ere I saw Elba। ଆମ ଓଡ଼ିଆରେ ମଧ ଏ ଭଳି ଅନେକ ଉଦାହରଣ ଅଛି ଏବଂ ଏ ଭଳି ପ୍ରୟୋଗକୁ ବିଲୋମ ପଦ, ଲୋମ ବିଲୋମ, ମେଷ ଯୁଦ୍ଧ ପ୍ରଭୃତି ଆଖ୍ୟା ଦିଆଯାଇଛି।

ରାଜସଭାରେ ଚକ୍ରପାଣି କୁଆଡ଼େ 'କାଣୀ ଗଣିକା' ଶବ୍ଦ ଦେଇ ଯଦୁମଣିଙ୍କୁ ଡକରା ଦେଇଥିଲେ ସେ ସେଇଭଳି ଶବ୍ଦ ଦିଅନ୍ତୁ ଯାହା ଉଭୟ ପାଖରୁ ଏକା ଭଳି ପଢ଼ି ହେବ। ଯଦୁମଣି ଅନାୟାସ ତାର ଉତ୍ତର ଦେଇଥିଲେ 'କଡ଼ାକୁ କାଣୀ ଗଣିକାକୁ ଡାକ'। ଆମେ ପିଲା ଦିନେ ଏହାର ନୀରସ ଉଦାହରଣ ଶୁଣୁଥିଲୁ, 'ବଣିଆ କକା କାକ ଆଣିବ'। ନିକଟରେ ମତେ ଏଇ ଭଳି ଆଉ ଏକ ଉଦାହରଣ ମିଳିଥିଲା 'ସୁନାରି ମାନଙ୍କୁ ନମାରି ନାଶୁ', ଯାହାର ଟାଣି ଓଟାରି ଅର୍ଥ ବାହାର କରାଯାଇପାରେ, ଆମେ ବଣିଆଙ୍କୁ ହତ୍ୟା ନକରି ଧ୍ୱଂସ କରୁ(କଣ କାକ ନ ଆଣିଥିବାରୁ ?)।

ସଂସ୍କୃତରେ ଏହାର ଏକ ସୁନ୍ଦର ଉଦାହରଣ ଅଛି :

ନାଦିନୋ ମଦନାଧି ସ୍ୱା ନ ମେ କାଚନ କାମିତା।
ତାମିକା ନ ଚ କାମେ ନ ସ୍ୱାଧୀନାଦ ମନୋଦିନା ॥

ସବୁଠାରୁ ସଂକ୍ଷିପ୍ତ ଓ ସବୁଠାରୁ ଦୀର୍ଘ Palindrome କ'ଣ ଏହାକୁ ନେଇ ଅନେକ ବିତର୍କ ହୋଇଛି। ଛୋଟ ଉଦାହରଣ କେବଳ ଗୋଟିଏ ଶବ୍ଦ ଯଥା mom ବା କଟକ। ଇଣ୍ଟରନେଟରୁ ଜଣାପଡ଼େ ଯେ ୧୯୨୦ରେ କଂପ୍ୟୁଟର ୫୪୦ଟି ଅକ୍ଷର ବିଶିଷ୍ଟ ଗୋଟିଏ ବାକ୍ୟ ତିଆରି କରିପାରିଥିଲା, କିନ୍ତୁ ଏଇଟି ମୋଟାମୋଟି ଅର୍ଥହୀନ ଥିଲା। ଏବେ କଂପ୍ୟୁଟରରେ ହଜାର ହଜାର ଅକ୍ଷର ଥିବା ନିରର୍ଥକ ବାକ୍ୟ ତିଆରି ହେଉଛି ଏବଂ କିଏ କେତେ ଦୀର୍ଘ ବାକ୍ୟ ତିଆରି କରିପାରିବ ତାର ପ୍ରତିଦ୍ୱନ୍ଦ୍ୱିତା ଜାରି ରହିଛି।

ଏ ଭଳି ପ୍ରତିଦ୍ୱନ୍ଦ୍ୱିତାରେ ଆମର ଉପେନ୍ଦ୍ର ଭଂଞ୍ଜ କଂପ୍ୟୁଟର ସମେତ ସମସ୍ତଙ୍କୁ ପଛରେ ପକାଇ ପାରିବେ। ତା ପୁଣି ଅର୍ଥବହ ବାକ୍ୟରେ ନୁହେଁ କବିତାରେ। ତାଙ୍କର 'ପ୍ରେମ ସୁଧାନିଧି'ର ଗୋଟିଏ ସଂପୂର୍ଣ୍ଣ ଛାନ୍ଦ ଏକ ଦୀର୍ଘ ପାଲିନଡ୍ରମ ଏବଂ ଏହାର ଅକ୍ଷର ସଂଖ୍ୟା ୫୬୦। ଏହି ଛାନ୍ଦର ପ୍ରଥମ ଦୁଇପଦ ଓ ଶେଷ ଦୁଇପଦ ହେଲା :

ରବର ବିହେ କଷ୍ଟ ସୁକୀର ତୋ ସରୋସ।
ରସଦା ଦରବ ତୁହି ନାଶ ପ୍ରାଣେ ରସ ॥୧॥
ରସାଳସୀ ତରଳାଇ ନତନୁ ତୁରିତ ।
ରମ୍ୟ ରହସ୍ୟ ବେଶର କହ ମୋ ସପତ ॥୨॥
ତପସ ମୋହ କର ସବେଶ ହରମ୍ୟର ।
ତରି ତୁ ନୂତନ ଇଳା ରତିଶୀଳ ସାର ॥୧୯॥
ଶରଣେ ପ୍ରାସ ନାହିଁ ତୁ ବରଦ ଦାସର।
ସରୋଷ ତୋର କି ସୃଷ୍ଟ କହେ ବୀରବର ॥୨୦॥

ଏହାକୁ ଆଗରୁ ପଛକୁ ଓ ପଛରୁ ଆଗକୁ ଏକା ଭଳି ପଢ଼ାଯାଇପାରେ।

ଉପେନ୍ଦ୍ର ଭଂଞ୍ଜ ଶବ୍ଦ ସହିତ ଯେ ଭଳି ଖେଳିଛନ୍ତି ଅନ୍ୟ କୌଣସି ସାହିତ୍ୟରେ (ବୋଧହୁଏ ସଂସ୍କୃତରେ ମଧ୍ୟ ନୁହେଁ) ତାର ତୁଳନା ପାଇବା କଷ୍ଟ। ଅନେକ ସମୟରେ କିନ୍ତୁ ସେ ଶବ୍ଦମାନଙ୍କୁ ଯେଉଁ ଭଳି ଟଣା ଓଟରା କରିଛନ୍ତି ତାକୁ କସରତ କୁହା ଯାଇପାରେ। ନିଆଁ ଭଳି ବୋହି ପବନ ଦେହକୁ ଜାଳି ଦେଉଛି, ଏ କଥା କହିବାକୁ ଯାଇ ସେ ଲେଖିଛନ୍ତି : ତ୍ୟଜି ଅନିଳ ଇକାର ବହିବାରୁ ଦହୁଅଛି କଳେବର, ଅର୍ଥାତ, ଅନିଳରୁ ଇକାର ବାହାର କରି ନେଲେ ଯେଉଁ ଅନଳ ରହିଯିବ ତାହା ଦେହକୁ ଦହୁଛି। ଅବଶ୍ୟ ଏହାକୁ ସଂପୂର୍ଣ୍ଣ ଅସଙ୍ଗତ କୁହାଯାଇପାରିବ ନାହିଁ। ଉପେନ୍ଦ୍ର ଭଂଜଙ୍କ ଲେଖାରେ ଏହିପରି ଶବ୍ଦ ସହିତ ଖେଳ କସରତର ଅନେକ ଉଦାହରଣ ରହିଛି। ସେ କେବଳ ଆମର କବିସମ୍ରାଟ ନୁହନ୍ତି, ଶବ୍ଦ କ୍ରୀଡ଼ା କୌଶଳର ମଧ୍ୟ ଅଦ୍ୱିତୀୟ ବୀରବର। ସେ ଯଥାର୍ଥ ଦାବି କରିପାରନ୍ତି,

କହେ ଉପଇନ୍ଦ୍ର ବୀର ଟେକି ବେନି ବାହାକୁ
ରବି ତଳେ କବି ପଣେ ନ ଗଣେ ସେ କାହାକୁ।

*ଡିସେମ୍ବର ୨୦୧୪*

# ସ୍ମୃତି ବିଭ୍ରମ ସ୍ମୃତି ବିଶୋଧନ ଓ ରାଶୋମନ

ସ୍ମୃତି ହେଉଛି ମଣିଷର ଏକ ବହୁମୂଲ୍ୟ ତଥା ଅତି ସମ୍ବେଦନଶୀଳ ସଂପଦ। ସ୍ମୃତି ସୁଖ ଦିଏ, ପୁଣି ତା ଠାରୁ ବେଶି ଦୁଃଖ ବି ଦିଏ। ଖୋଜିଲା ବେଳେ ମିଳେ ନାହିଁ, ଅସମୟରେ ଆସି ପହଞ୍ଚେ। ମନେ ରଖିବା ଯେତିକି ସହଜ ନୁହେଁ, ଭୁଲିଯିବା ସେତକି କଷ୍ଟ। ଯଦିଓ ପ୍ରୀତିକର ଓ ଦୁଃଖଦ ସ୍ମୃତିର ମାତ୍ରା ସମାନ ହେବା ଉଚିତ, ରାତିର ଉନିଦ୍ର ପ୍ରହରରେ କେବଳ ଦୁଃଖର ସ୍ମୃତି ହିଁ ମନକୁ ଆସିଥାଏ।

ସ୍ମୃତି ଲୁଚୁକାଳି ଖେଳିବାକୁ ଭଲ ପାଏ। ସ୍ମୃତି ଆସି ଛଳ କରେ, ଚିଡ଼ାଏ, ଦ୍ୱନ୍ଦୋଳରେ ପକାଏ। ପରିଣତ ବୟସରେ ଆପଣ ରାସ୍ତାରେ ଯାଉ ଯାଉ ଅକସ୍ମାତ୍ ପୁରୁଣା ସ୍କୁଲ ବନ୍ଧୁ ସୋମନାଥକୁ ଭେଟିଲେ। ନମସ୍କାର, କୁଣ୍ଢାକୁଣ୍ଢି, ପ୍ରୀତି ସମ୍ଭାଷଣ ସାରି ଅଲଗା ହୋଇଯିବା ପରେ ଆପଣଙ୍କର ସଂଶୟ ଉପୁଜିଲା ସୋମନାଥ ଆପଣଙ୍କ କ୍ଲାସରେ ଥିଲା ନା ଦି ବର୍ଷ ତଳେ ଥିଲା ନା ବର୍ଷେ ଉପରେ । ଅନେକ ଭାବିବା ପରେ ବି ଏ ପ୍ରଶ୍ନ ସମାଧାନ ହୋଇପାରିଲା ନାହିଁ। ଏ ଭଳି ଘଟଣାର ଏକ ହାସ୍ୟରସାତ୍ମକ ରୂପ ବି ଅଛି :

– କଣ ସୋମନାଥ, ବାଆଁରେଇ କୁଆଡ଼େ ପଳେଇ ଯାଉଚୁ ? ଆରେ, ତୁ ତ ଏବେ ପୂରାପୂରି ଅଲଗା ଦିଶୁଚୁ, କଳାପଡ଼ିଗଲୁଣି, ଆଗଠାରୁ ବାଙ୍ଗରା, ମୁଣ୍ଡରେ ବାଳ ନାହିଁ, ନାକ ବି କେମିତି ବେଶି ଚେପ୍‌ଟା।

– ଆପଣ ଆଜ୍ଞା ଭୁଲ୍ କରୁଛନ୍ତି। ମୁଁ ସୋମନାଥ ନୁହେଁ।

– ତୁ ତେବେ ତୋର ନାଁକୁ ବି ବଦଳେଇ ଦେଲୁଣି !

ସ୍ମରଣକୁ ନେଇ ଅନେକ ବିଚାର ବିବେଚନା ଓ ଗବେଷଣା ହେଇଛି। ଏ ବିଷୟରେ ଦୁଇଜଣ ଆମେରିକାର ବିଦ୍ୱାନଙ୍କ ନିଷ୍କର୍ଷ ନିମ୍ନମତେ :

'ଯେତେବେଳେ ଅତି ପୁରୁଣା ସ୍ମୃତି ସହିତ ଛୋଟ ଛୋଟ ନୂଆ ତଥ୍ୟ ଓ ସମ୍ବାଦ ଯୋଡ଼ି ହୋଇଯାନ୍ତି, ସେତେବେଳେ କିଛି ପୁରୁଣା ସ୍ମୃତି ବଦଳି ଯାନ୍ତି, ଛିନ୍ନ ଭିନ୍ନ ହୋଇଯାନ୍ତି କିମ୍ବା ଦୂର କୋଣକୁ ନିର୍ବାସିତ ହୋଇଯାନ୍ତି। ସ୍ମୃତି ଯେଉଁଭଳି କ୍ଷୟ ହୁଏ ସେଇଭଳି ବୃଦ୍ଧି ମଧ୍ୟ ପ୍ରାପ୍ତ ହୁଏ। ସ୍ମୃତିରେ ଯାହା ହଜିଯାଏ, ସେଇଟି କେବଳ ପ୍ରାଥମିକ ଅନୁଭୂତି ଓ କୌଣସି ଘଟଣାର ସିଧାସଳଖ ଅନୁଭୂତି।

ଆମେ ଯେତେଥର ଗୋଟିଏ ଘଟଣାକୁ ମନେ ପକାଇବାକୁ ଚେଷ୍ଟା କରୁ ସେତିକି ଥର ଅମେ ଆମର ସ୍ମରଣକୁ ମଧ୍ୟ ପୁଣି ଥରେ ସଜାଡ଼ି ଦେଉ। ପ୍ରତିଥର ମନେ ପକାଇବା

ବେଳେ ଆମର ସ୍ମୃତି ବଦଳିଯାଇଥାଏ। ପରେ ଘଟିଥିବା ଘଟଣା ଓ ସେ ବିଷୟରେ ଅନ୍ୟମାନଙ୍କର ବର୍ଣ୍ଣନା ଓ ଧାରଣାର ପୁଟରେ ତାର ରଂଗ ଅଲଗା ହୋଇ ଯାଇଥାଏ।

ସତ୍ୟ ଓ ବାସ୍ତବ ଘଟଣାକୁ ଆମେ ଯେତେବେଳେ ଆମର ସ୍ମରଣର କାଚ ଦେଇ ଦେଖୁ, ସେତେବେଳେ ସେଗୁଡ଼ିକ ଆଉ ନିରପେକ୍ଷ ନ ରହି ବ୍ୟକ୍ତିନିଷ୍ଠ ହୋଇଯାଇଥାନ୍ତି ଓ ସେଥିରେ ଆମର ବ୍ୟାଖ୍ୟା ମଧ୍ୟ ମିଶି ଯାଇଥାଏ।'

ଏହି ସ୍ମୃତିକୁ ଜଣେ ଯେତେବେଳେ ଲିପିବଦ୍ଧ କରେ, ବିଷୟଟି ଆହୁରି ଜଟିଳ ହୋଇଯାଏ। କାଗଜ କଲମରେ ଲେଖିବା ବେଳେ ମଣିଷ ସତର୍କ ହୋଇ ନିଜର ସବୁଠାରୁ ଭଲ ଦିଗଟି ଦେଖାଇବାକୁ ଚେଷ୍ଟା କରେ। ସେଥିପାଇଁ ଆତ୍ମଜୀବନୀମୂଳକ ଲେଖା ସବୁବେଳେ ସନ୍ଦେହର ବଳୟ ଭିତରେ ରହେ। କୁହା ଯାଇଛି ଯେ ଯଦି ସତ କହିବାକୁ ଚାହଁ ତେବେ ଉପନ୍ୟାସ ଲେଖ, ନ ହେଲେ ଆତ୍ମଜୀବନୀ ଲେଖ। ସ୍ମରଣ ଉପରେ ଗବେଷଣା କରୁଥିବା ବିଦ୍ୱାନଙ୍କ ମତରେ ଆତ୍ମଜୀବନୀମୂଳକ ସ୍ମୃତି ମନ ଭିତରେ ତିଆରି ହୁଏ ଲୋକଟିର ସମସ୍ତ ଆତ୍ମଜୀବନୀମୂଳକ ତଥ୍ୟକୁ ଏକାଠି କରି। ଆମେ ଆତ୍ମଜୀବନୀରେ ଗୋଟିଏ ମିଥ୍ ବା କଥାକଳ୍ପ ତିଆରି କରୁ ଏବଂ ଚାହୁଁ ଯେ ଅନ୍ୟମାନେ ସେଥିରେ ବିଶ୍ୱାସ କରନ୍ତୁ। ଗ୍ରୀକ୍ ପୁରାଣରେ ସ୍ମୃତିର ଦେବୀ ନେମୋସାଇନ ମିଥ୍ୟାବାଦୀ ବୋଲି ମଧ୍ୟ ବିଦିତ ଥିଲେ।

ଯେତେବେଳେ ଜଣେ ସାହିତ୍ୟିକ ନିଜର ଆତ୍ମଜୀବନୀ ଲେଖେ ସେ ତାହାକୁ ଚିତ୍ତାକର୍ଷକ କରିବା ପାଇଁ ଚେଷ୍ଟା କରେ ଏବଂ ସେଥିପାଇଁ ସେଥିରେ ନିଜର କଳ୍ପନାଶୀଳତାର ବ୍ୟବହାର କରେ। ଏହା ଉଦାହରଣ ସ୍ୱରୂପ ଆମ ଓଡ଼ିଆର ପ୍ରଥମ ଆତ୍ମଜୀବନୀ ଫକୀରମୋହନଙ୍କ ଆତ୍ମଚରିତକୁ ନିଆଯାଇପାରେ। ସେ ନିଜର ଶେଷ ବୟସରେ ଏହାକୁ ଲେଖିଥିଲେ, ଯେତେବେଳେ ହୁଏ ତ ତାଙ୍କର ସ୍ମୃତିଶକ୍ତି ଏତେ ପ୍ରଖର ନଥିଲା। ତଥାପି ସେ ଅଧିକାଂଶ ବିଷୟ ଅତି ବିସ୍ତାରରେ ଲେଖିଛନ୍ତି। ଅନ୍ନଦାଶଙ୍କର ରାୟ ସେଥିପାଇଁ ଲେଖିଛନ୍ତି, ଫକୀରମୋହନଙ୍କର ସବୁକିଛି ଠିକ ଠିକ ସ୍ମରଣ ଥିଲା ବୋଲି ବିଶ୍ୱାସ କରିବା ଶକ୍ତ, ନିଶ୍ଚୟ ତାଙ୍କୁ କଳ୍ପନାର ଖାଦ ମିଶାଇବାକୁ ପଡ଼ିଛି। କେନ୍ଦୁଝରର ପ୍ରଜା ବିଦ୍ରୋହ ଆତ୍ମଚରିତରେ ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ ଏବଂ ଏଥିରେ ଥିବା ଭୋଳାନାଥ ଖମାରିଆକୁ ଲେଖିଥିବା ପାନଗୁଆ ଚିଠିଟି ସବୁଠାରୁ ରୋଚକ ପ୍ରସଙ୍ଗ। କିନ୍ତୁ ଏହି ଚିଠି ଘଟଣାଟି ମତେ ଆଦୌ ବିଶ୍ୱାସଯୋଗ୍ୟ ମନେ ହୋଇ ନଥିବାରୁ ମୁଁ ସେଇଟିକୁ ମୋର 'ଦେଶକାଳପାତ୍ର' ବହିରେ ଦେଇ ନ ଥିଲି। ସେହି ଅଧ୍ୟାୟରେ ଫକୀରମୋହନ ଲେଖିଛନ୍ତି ସେ କିପରି ଧରଣୀଧରକୁ ଗୋଟିଏ ବୁଢ଼ା ହାଡୁଆ ରୋଗା ଘୋଡ଼ା ଉପରେ ବସାଇ ସାହେବଙ୍କୁ ଭେଟିବାକୁ ପଠାଇଥଲେ। ସେତେବେଳର କାଗଜପତ୍ରରେ କିନ୍ତୁ ଧରଣୀଧର ହାତୀ ଉପରେ ବସି ଯାଇଥିବାର ଉଲ୍ଲେଖ ଥିବାରୁ ମୁଁ ମୋ ବହିରେ ଜନ୍ତୁଟିକୁ ହାତୀ ବୋଲି ଲେଖିଛି।

ଆତ୍ମଜୀବନୀର ଆଉ ଏକ ଦିଗ ହେଲା ଅନ୍ୟମାନଙ୍କ ବିଷୟରେ ଲେଖା। ଅନେକ ଆତ୍ମଜୀବନୀକାର ଯେତେ ନିଜ ବିଷୟରେ ଲେଖି ନଥାନ୍ତି ସେତିକି ଲେଖିଥାନ୍ତି ଅନ୍ୟମାନଙ୍କ ବିଷୟରେ, ବିଶେଷରେ ସେମାନଙ୍କ ଦୋଷ ଦୁର୍ବଳତା ଦର୍ଶାଇ। ଅନେକ ରାଜନୈତିକ

ନେତାମାନଙ୍କ ଆତ୍ମଜୀବନୀରେ ଏହା ଦେଖିବାକୁ ମିଳିବ, ଯଥା ଗୋଦାବରୀଶ ମିଶ୍ର, ନୀଳକଣ୍ଠ ଦାସ ବା ନୀଳମଣି ରାଉତରାୟଙ୍କ ଆତ୍ମଜୀବନୀରେ। ସାହିତ୍ୟରେ ଏହାର ଏକ ଉଦାହରଣ ହେଉଛି ସଚ୍ଚି ରାଉତରାୟ ଓ ସୁରେନ୍ଦ୍ର ମହାନ୍ତିଙ୍କ ଲେଖାରେ ବାଜିରାଉତକୁ ନେଇ ବିବାଦ ଯାହା ଶେଷ ପର୍ଯ୍ୟନ୍ତ ଅଦାଲତକୁ ଯାଇଥିଲା।

ସେହିପରି ଆଉ କିଛି ଆତ୍ମଜୀବନୀରେ ଲେଖକଙ୍କର ମୂଳମନ୍ତ୍ର ହେଲା ନିଜକୁ ଗୌରବାନ୍ୱିତ କରିବା। ସେଥିପାଇଁ ସେମାନେ ପୂର୍ବେ କରିଥିବା ଭୁଲଭ୍ରାନ୍ତି ପାଇଁ ଦୀର୍ଘ ସ୍ପଷ୍ଟୀକରଣ ଦେଇ ଅନ୍ୟମାନଙ୍କୁ ଛୋଟ କରି ଦେଖାଇଥାନ୍ତି ଏବଂ ପ୍ରତିଟି ସଫଳ କାମ ପାଇଁ ନିଜେ ବାହାଦୁରି ନେଇଥାନ୍ତି। ନିକଟରେ ଅନେକ ଅବସରପ୍ରାପ୍ତ ଅମଲାଙ୍କର ଆତ୍ମଜୀବନୀ ପ୍ରକାଶ ପାଇ ଚହଳ ପକାଇଛି। ଏ ସବୁ ବହିର ସ୍ଥାୟୀପଦ ବା ଘୋଷା ହେଲା କିପରି ସେହି ଅମଲାଜଣକ ଦୁର୍ନୀତିଗ୍ରସ୍ତ କ୍ଷମତାସୀନ ନେତାଙ୍କ ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ନିଜର ବିଭାଗକୁ ସୁଚାରୁ ରୂପେ ଚଳାଇ ଦେଶର ଉନ୍ନତି ବିଧାନ କରିଛନ୍ତି।

ସ୍ମୃତିର ରୋମନ୍ଥନ କରିବାବେଳେ ବିଭିନ୍ନ ଲୋକ ସେହି ଗୋଟିଏ ଘଟଣାକୁ ବିଭିନ୍ନ ଭାବରେ ଦେଖିଥାନ୍ତି ବା ଦେଖାଇବାକୁ ଚେଷ୍ଟା କରିଥାନ୍ତି। ଏହା ଭିନ୍ନ ଭିନ୍ନ ଅବବୋଧ ଯୋଗୁ ହୋଇଥାଇପାରେ କିମ୍ବା ନିଜର ସ୍ୱାର୍ଥ ଦୃଷ୍ଟିରୁ ବିଭିନ୍ନ ଲୋକ ଘଟଣାଟିକୁ ଭିନ୍ନ ଭାବରେ ଦେଖାଇବାକୁ ଉଦ୍ୟମ କରିଥାଇ ପାରନ୍ତି। ଏହାକୁ ରାଶୋମନ ଏଫେକ୍ଟ ବା ରାଶୋମନ ପ୍ରଭାବ ବୋଲି କୁହାଯାଇଛି। ଏହି ନାଁଟିର ଉତ୍ସ ହେଲା ୧୯୫୦ରେ କୁରୋସଓ୍ୱାଙ୍କ ନିର୍ଦ୍ଦେଶିତ ଜାପାନୀ ଫିଲ୍ମ 'ରାଶୋମନ' ଯାହା ସେତେବେଳେ ବହୁ ପୁରସ୍କାରରେ ସମ୍ମାନିତ ହୋଇଥିଲା ଏବଂ ଯାହା ବର୍ତ୍ତମାନ ପୃଥିବୀର ଫିଲ୍ମ ଇତିହାସରେ ଏକ ସର୍ବକାଳୀନ କ୍ଲାସିକ ଭାବରେ ସ୍ୱୀକୃତ। ଏହି ଚଳଚ୍ଚିତ୍ରରେ ଚାରିଜଣ ଲୋକ ଏକା ଘଟଣାକୁ ସଂପୂର୍ଣ୍ଣ ଅଲଗା ଅଲଗା ଓ ପରସ୍ପର ବିରୋଧୀ ଭାବରେ ବର୍ଣ୍ଣନା କରୁଛନ୍ତି ଯେପରି ଏହା ପ୍ରତ୍ୟେକକୁ ସୁହାଇବ।

ଉପର ଲିଖିତ ଏ ସବୁ କଥା ମୋ ମନକୁ ଆସିଥିଲା ମୁଁ ନିକଟରେ(ନଭେମ୍ବର ୨୦୧୪) ଭବାନୀପାଟଣା ଯାଇଥିବା ବେଳେ। ମୁଁ ପଚାଶ ବର୍ଷ ପୂର୍ବେ ୧୯୬୩ରୁ ୬୬ ତିନିବର୍ଷ କଳାହାଣ୍ଡିରେ କଲେକ୍ଟର ଥିଲି ଏବଂ ପୁରୁଣା ଜାଗାକୁ ଯାଇଥିଲି ଅନେକ ବର୍ଷ ପରେ। ସେଠାରେ ମୁଁ ଏକ ନାଗରିକ ମଞ୍ଚର ସଭାରେ ଯୋଗ ଦେବାର ସୁଯୋଗ ପାଇଥିଲି। ଏ ସଭାରେ ମୋର ଅନେକ ପୂର୍ବ ପରିଚିତ ଉପସ୍ଥିତ ଥିଲେ ଏବଂ ଆମେମାନେ ପୁରୁଣା କଳାହାଣ୍ଡି କଥା ମନେ ପକାଉଥିଲୁ। ଶ୍ରୀ ପ୍ରଦୀପ କୁମାର ବେହେରା, ଯେ କି ବିଜୁଳି ବିଭାଗର ଉଚ୍ଚ ପଦରୁ ଅବସର ନେଇ ଭବାନୀପାଟଣାଠାରେ ରହୁଛନ୍ତି, କଥା ପ୍ରସଙ୍ଗରେ କହିଲେ ଯେ ସେତେବେଳେର ଦୁଇଟି ବିଶେଷ ଘଟଣା ଥିଲା ପୁଲିସର ଗୁଳିକାଣ୍ଡ ଓ ଦୁର୍ଭିକ୍ଷ।

କଳାହାଣ୍ଡିର ଦୁର୍ଭିକ୍ଷ କଥା ମୋର ସବୁବେଳେ ମନେ ଥିଲା ଏବଂ ପରବର୍ତ୍ତୀ ସମୟରେ ମୁଁ ସେ ବିଷୟରେ ଲେଖିଛି ମଧ୍ୟ, କିନ୍ତୁ ପୁଲିସ ଗୁଳି କଥା ମୋ ମନକୁ ଆସି ନଥିଲା।

୧୯୬୪ରେ କଟକରେ ଗୋଟିଏ ଛୋଟ ଘଟଣାରୁ ଆରମ୍ଭ ହୋଇ ଛାତ୍ର ଅନ୍ଦୋଳନ ସାରା ଓଡ଼ିଶାକୁ ବ୍ୟାପି ଯାଇଥିଲା । ପରିସ୍ଥିତି ଏଭଳି ସୀମାରେ ପହଞ୍ଚି ଯାଇଥିଲା ଯେ ଛାତ୍ରମାନେ ଆସେମ୍ଲି ଭିତରେ ପଶି ଭଙ୍ଗାରୁଜା କରିଥିଲେ । ଓଡ଼ିଶାରେ ସେତେବେଳେ କଂଗ୍ରେସ ସରକାର ଥିଲା ଏବଂ ଅନ୍ୟ ସବୁ ବିରୋଧୀ ଦଳ ଏହି ସୁଯୋଗରେ ଛାତ୍ରମାନଙ୍କୁ ସମର୍ଥନ ଦେଉଥିଲେ । କଳାହାଣ୍ଡିରେ ସେତେବେଳେ ସ୍ୱତନ୍ତ୍ର ପାର୍ଟିର ପ୍ରାଧାନ୍ୟ ଥିଲା । ତେଣୁ ସେଠାରେ ମଧ୍ୟ ବିରୋଧୀ ଦଳ ସମର୍ଥିତ ଛାତ୍ର ଆନ୍ଦୋଳନ ଆରମ୍ଭ ହେବା ସ୍ୱାଭାବିକ ଥିଲା । ଅନେକ ଦିନର ବିକ୍ଷୋଭ ଶେଷ ହୋଇଥିଲା ୨୯ ଅକ୍ଟୋବର ୧୯୬୪ ଦିନ ଗୋଟିଏ ଶୋଭାଯାତ୍ରା ଉପରେ ପୋଲିସ୍‌ର ଗୁଳି ଚାଳନାରେ ।

॥୧॥ ଘଟଣା ଯେପରି ମୋର ମନେ ଥିଲା

ସେ ସମୟରେ ସାରା ଓଡ଼ିଶାରେ ଚାଲୁଥିବା ଛାତ୍ର ଆନ୍ଦୋଳନର ଭୟଙ୍କର ରୂପ ବିଷୟରେ ଖବର ଆସୁଥିଲା ଓ ଭବାନୀପାଟଣାରେ ଦଳ ଦଳ ଛାତ୍ର ଶୋଭାଯାତ୍ରାରେ ବାହାରୁଥିଲେ । ଆମେମାନେ ସେମାନଙ୍କୁ ବୁଝାଇବାକୁ ଚେଷ୍ଟା କରୁଥିଲୁ । ସେତେବେଳକୁ ବୋଧହୁଏ ଅନ୍ୟ କେତେକ ଜାଗାରେ ଗୁଳିଚାଳନା ହୋଇଥିଲା ଏବଂ ଛାତ୍ରମାନେ ଦାବୀ କରୁଥିଲେ ସରକାର ଏକ ତଦନ୍ତ କମିଶନ ବସାନ୍ତୁ ।

୨୯ ଅକ୍ଟୋବର ସକାଳେ ଗୋଟିଏ ଶୋଭାଯାତ୍ରା ମୁଁ ରହୁଥିବା ଘର ଆଡ଼କୁ ଆସୁଥାଏ । ଖବର ପାଇ ମାଜିଷ୍ଟ୍ରେଟ ପାଲିତ ଓ ଏସ୍‌ପି ଶଙ୍କର ସେନ ସେଠାରେ ପହଞ୍ଚିଥିଲେ । ମୁଁ ବାହାରକୁ ଯାଇ ପିଲମାନଙ୍କ ସହିତ ଆଲୋଚନା କରିଥିଲି । ସେମାନେ ରାସ୍ତାରେ କଥାବାର୍ତ୍ତା ନକରି ଅଫିସ(ମୋ ଘର ଫାଟକକୁ ଲାଗି କୋଠରି)କୁ ଆସିବାକୁ ଚାହିଁଲେ । ସମସ୍ତଙ୍କୁ ଆସିବାକୁ ନ ଦେଇ ମୁଁ ତିନି ଚାରି ଜଣଙ୍କୁ ସାଙ୍ଗରେ ନେଇ ଭିତରକୁ ଆସିଲି । ଫାଟକ ବାହାରେ ମାଜିଷ୍ଟ୍ରେଟ ଓ ପୋଲିସ ଶୋଭାଯାତ୍ରାକୁ ସାମନା କରୁଥିଲେ ଏବଂ ତାଙ୍କଠାରୁ ମାତ୍ର କେତେ ହାତ ଦୂରରେ ଫାଟକର ଭିତର ପାଖେ ଆମେମାନେ ଥିଲୁ । ଗୁଳି ଶବ୍ଦ ଶୁଣି ଆମେ ବାହାରକୁ ଆସିଲୁ । ସେତେବେଳକୁ ଶୋଭାଯାତ୍ରା ଛିନଛତ୍ର ହୋଇ ଯାଇଥିଲା ଓ ପୋଲିସ ପିଲାଙ୍କୁ ଗୋଡ଼ାଉଥିଲେ ।

ପରବର୍ତ୍ତୀ ସମୟରେ ପ୍ରଦେଶର ବିଭିନ୍ନ ସ୍ଥାନରେ ହୋଇଥିବା ଗୁଳିକାଣ୍ଡର ତଦନ୍ତ କରିବା ପାଇଁ ସରକାର ଜଷ୍ଟିସ୍ ବର୍ମନଙ୍କର ଏକ ଜଣିକିଆ କମିଶନ ବସାଇଲେ । ଏହି କମିଶନ୍‌ର ଭବାନୀପାଟଣାରେ ହୋଇଥିବା ଶୁଣାଣି ସମୟରେ ଛାତ୍ରମାନେ ଓ ସଂପୃକ୍ତ ଅଫିସରମାନେ ଆଫିଡେଵିଟ ବା ଶପଥ ପାଠ ଦେଇଥିଲେ । ମୋର ଶପଥ ପାଠରେ ମୁଁ ଗୁଳିଚାଳନା ଆଦେଶର ଦାୟିତ୍ୱ ନେଇଥିଲି ଯଦିଓ ମାଜିଷ୍ଟ୍ରେଟ୍ ପାଲିତ ଲିଖିତ ଆଦେଶ ଦେଇଥିଲେ । ମୋର ବନ୍ଧୁ ଶ୍ରୀ ସମରେନ୍ଦ୍ର କୁଣ୍ଡୁ ପିଲାମାନଙ୍କ ପକ୍ଷରୁ ଓକିଲାତି କରୁଥିଲେ ଓ ପାଲିତଙ୍କୁ ଦୋଷୀ ସାବ୍ୟସ୍ତ କରିବାକୁ ଚାହୁଁଥିଲେ । ତାଙ୍କର ଯୁକ୍ତି(ଯାହା ଯଥାର୍ଥ) ଥିଲା

ଯେ ଏଭଳି ପରିସ୍ଥିତିରେ ମାଜିଷ୍ଟ୍ରେଟଙ୍କୁ ନିଜର ସିଦ୍ଧାନ୍ତ ନେବାକୁ ହେବ, କାହାରି ଆଦେଶ ଯୋଗୁଁ ନୁହେଁ। ମୋର ଯୁକ୍ତି ଥିଲା ଯେ ନିର୍ଣ୍ଣୟ ଯଦିଓ ପାଲିତଙ୍କର ଥିଲା ମୁଁ ବେଶ୍ ପାଖରେ ଥିବାରୁ ତାଙ୍କ ଆଦେଶକୁ ରଦ୍ଦ କରି ଦେଇ ପାରିଥାନ୍ତି।

ଦୀର୍ଘ ପଚାଶ ବର୍ଷ ପରେ ଏତିକି ମାତ୍ର ମୋର ସ୍ମରଣରେ ଥିଲା। ସେ ଦିନ ନାଗରିକ ମଂଚ ସଭାରେ ପ୍ରଦୀପ ଏ କଥା ଉଠାଇବାରୁମୁଁ ତାଙ୍କୁ ଅନୁରୋଧ କଲି ତାଙ୍କର କଣ ମନେ ଅଛି ମତେ ଜଣାଇବା ପାଇଁ। ଘଟଣା ବେଳେ ଛାତ୍ରନେତା ପ୍ରଦୀପଙ୍କର ବୟସ ଥିଲା ୧୮ ବର୍ଷ।

॥୨॥ ଘଟଣା ଯେପରି ପ୍ରଦୀପ କୁମାର ବେହେରାଙ୍କର ମନେ ଥିଲା

'ସେହି ବିଶେଷ ଦିନ ଆମେ ଗୋଟିଏ ଛାତ୍ରଙ୍କ ଶୋଭାଯାତ୍ରା ନେଇ ଖରାବେଳକୁ କଲେକ୍ଟରଙ୍କ ଘର ଅଫିସ ପାଖରେ ପହଞ୍ଚିଲୁ। ଆମର ଇଚ୍ଛା ଥିଲା ଯେ କଲେକ୍ଟରଙ୍କୁ ଭେଟି ତାଙ୍କୁ କେବଳ ଆମର ଦାବୀ ଶୁଣାଇବୁ ନାହିଁ, ସେଠାରେ ଗିରଫ ମଧ ହେବୁ ଯାହା ଫଳରେ ଓଡ଼ିଶାର ଛାତ୍ର ଆନ୍ଦୋଳନ ଆହୁରି ବଳଶାଳୀ ହେବ।

ଶୋଭାଯାତ୍ରା ଘର ଅଫିସ ପାଖେ ପହଞ୍ଚିବା ପରେ ଅନେକ ଭାବପ୍ରବଣ ବକ୍ତୃତା ଓ ସ୍ଲୋଗାନ ହେଲା ଏବଂ ତା ପରେ ମୁଁ କଲେକ୍ଟରଙ୍କୁ ଭେଟିବାର ଅନୁମତି ପାଇଲି। ଆଉ କେତେକ ଛାତ୍ର ମଧ ମୋ ସହିତ ଆସିଲେ। ଆମର ଯେତେ ସବୁ ଦାବୀ ଥିଲା ତା'ର ଉତ୍ତରରେ ସରକାର କି କି ପଦକ୍ଷେପ ନେଇଛନ୍ତି କଲେକ୍ଟର ଆମକୁ ସେ କଥା ଜଣାଇଲେ। ଯେ ହେତୁ ଆମର ଉଦ୍ଦେଶ୍ୟ ଥିଲା କିପରି ଆରେଷ୍ଟ ହେବୁ, ଆମେ ଦୁଇ ତିନି ଜଣ ଅଫିସ ଭିତରେ ଚକା ପକାଇ ବସିଲୁ, କାରଣ ଆମେ ଭାବିଲୁ ଯେ ଏହା ଆମକୁ ଆରେଷ୍ଟ କରିବା ପାଇଁ ପୋଲିସକୁ କାରଣ ଯୋଗାଇବ।

ବାହାରେ ଜମା ହୋଇଥିବା ଲୋକ ଅଶାନ୍ତ ହୋଇ ସ୍ଲୋଗାନ ଦେଉଥିଲେ। ଏଇ ସମୟରେ କଲେକ୍ଟର ମତେ ତାଙ୍କ ଅଫିସ ଘରୁ ଫାଟକ ଆଡ଼କୁ ନେଇଗଲେ ଏବଂ ସେଠାରେ ଠିଆ ହୋଇ ଆମେ ପୁଣି କିଛି ସମୟ ଯୁକ୍ତିତର୍କ କଲୁ। ସେତେବେଳେ କଲେକ୍ଟର ମତେ କହିଲେ, ଶୋଭଯାତ୍ରା ଭାଙ୍ଗିଦିଅ, ନ ହେଲେ ମୁଁ ତମକୁ ଜେଲ୍‌ରେ ପୂରାଇ ଦେବି। ମୁଁ ଏହାର ଉତ୍ତରରେ କହିଲି, ଯଦି ବୁଦ୍ଧିସୁଦ୍ଧି ଥିବା ଲୋକଙ୍କୁ ଜେଲକୁ ପଠାଇ ଦିଆଯାଏ, ତେବେ ଜେଲ ହେଉଛି ସମସ୍ତଙ୍କର ରହିବାର ଜାଗା। କଲେକ୍ଟର ସାଙ୍ଗେ ସାଙ୍ଗେ ମତେ ସେହି ଦାର୍ଶନିକଙ୍କ ନାଁ କହିଲେ ଯାହାଙ୍କ ବାକ୍ୟ ମୁଁ ଉଦ୍ଧୃତ କରିଥିଲି ।

କିଛି କ୍ଷଣ ପରେ ବାହାରେ ଟିଅର୍ ଗ୍ୟାସ ଓ ବନ୍ଧୁକ ଗୁଳିର ଆବାଜ ଶୁଭିଲା ଓ ଜମା ହୋଇଥିବା ପିଲାମାନେ ଏତେ ତେଣେ ଦୌଡ଼ିବାରେ ଲାଗିଲେ। ପରଦିନ ମତେ ପୋଲିସ ଘେରିଗଲେ ଓ କଲେକ୍ଟର ମତେ ନେଇ ଏସ୍‌ପିଙ୍କ ଘର ଆଗରେ ଠିଆ ହୋଇଥିବା ଗାଡ଼ିରେ ଭର୍ତ୍ତି କରିବାକୁ ଆଦେଶ ଦେଲେ।'

ପ୍ରଦୀପଙ୍କର ବିବରଣୀ ପଢ଼ିବା ପରେ ମୋର ଜାଣିବାକୁ ଇଚ୍ଛା ହେଲା ସେତେବେଳେ

ପ୍ରକୃତରେ କଣ ଘଟିଥିଲା। ମୁଁ ସେ ପର୍ଯ୍ୟନ୍ତ ବର୍ମନ କମିଶନଙ୍କ ରିପୋର୍ଟ ଦେଖି ନଥିଲି, କେବଳ ଜାଣିଥିଲି ଯେ ସେ ଭବାନୀପାଟଣାରେ ହୋଇଥିବା ଗୁଳିକାଣ୍ଡ ଯଥାର୍ଥ ବୋଲି ମତ ଦେଇଥିଲେ। ଅନେକ କଷ୍ଟରେ ରିପୋର୍ଟଟି ସଂଗ୍ରହ କରି ସେଥିରେ ସେ ଯେଉଁପରି ଏ ବିଷୟରେ ଲେଖିଛନ୍ତି ତା ମୁଁ ପ୍ରଥମ ଥର ପାଇଁ ପଢ଼ିବାର ସୁଯୋଗ ପାଇଲି।

।।୩।। ଘଟଣା ଯେପରି ଜଷ୍ଟିସ ବର୍ମନ ତଦନ୍ତ କରି ଜାଣିଲେ

'୨୯ ଅକ୍ଟୋବର ପ୍ରାୟ ଦଶଟା ବେଳେ ଡିଷ୍ଟ୍ରିକ୍ଟ ମ୍ୟାଜିଷ୍ଟ୍ରେଟ(ଡିଏମ୍) ତାଙ୍କ ଘରୋଇ ଅଫିସରେ ବସିଥିବା ବେଳେ ଏଡିଏମ୍‌ଙ୍କ ପାଖରୁ ଖବର ପାଇଲେ ଯେ ଛାତ୍ରମାନଙ୍କର ଶୋଭାଯାତ୍ରା ତାଙ୍କ ଘର ଆଡ଼କୁ ଆସୁଛି। ସେ ଏସ୍‌ପିଙ୍କୁ ଡକାଇଲେ ଓ ପ୍ରାୟ ସାଢ଼େ ଦଶଟାରେ ଏସ୍‌ଡିଏମ୍ ଏ.କେ.ପାଲିତ ଜିପ୍‌ରେ କିଛି ସଶସ୍ତ୍ର ପୋଲିସ ନେଇ ପହଞ୍ଚିଲେ। ପ୍ରାୟ ୪୦୦ଜଣଙ୍କର ଶୋଭାଯାତ୍ରା ସ୍ଲୋଗାନ ଦେଉଥିଲେ। ଡିଏମ୍ ତାଙ୍କ ଘର ବାହାରକୁ ଯାଇ ଶୋଭଯାତ୍ରାକୁ ଭେଟିଲେ। ସେ ପିଲାଙ୍କୁ ତାଙ୍କର ଦାବୀ ସେହିଠାରେ ଦେବାକୁ କହିଲେ କିନ୍ତୁ ପିଲାମାନେ ସମସ୍ତେ ଭିତରକୁ ଆସିବାକୁ ଚାହିଁଲେ। ଡିଏମ୍ ତିନିଜଣଙ୍କୁ ଭିତରକୁ ଆସିବାକୁ ଦେଲେ। ପାଲିତ ମଧ ଭିତରକୁ ଆସିଲେ। ସେତେବେଳକୁ ଏସପି ପହଞ୍ଚି ସାରିଥିଲେ। ପିଲମାନେ ଡିଏମ୍‌ଙ୍କୁ ଗୋଟିଏ କାଗଜ ଲେଖା ଦେଲେ ଯେ ସେମାନେ ତାଙ୍କ ଅଫିସ ଆଗରେ ଧାରଣା ଦେବେ। ସେମାନେ ଡିଏମ୍‌ଙ୍କୁ ଜବାବ ଦେବାକୁ କହିଲେ ଯେ କଟକ ଓ ଅନ୍ୟତ୍ର ପୋଲିସ ଜୁଲୁମ ବିରୁଦ୍ଧରେ କମିଶନ ବସିବ। କିନ୍ତୁ ଡିଏମ୍ ଏଭଳି ଘୋଷଣା କରିପାରିବେ ନାହିଁ ବୋଲି କହିଲେ। ସେ ଆହୁରି କହିଲେ ଯେ ସେମାନେ ପିଲାଲୋକ ଏବଂ ବଡ଼ ଭାଇ ଭଳି ସେ ସେମାନଙ୍କୁ ଉପଦେଶ ଦେବେ ଯେ ଏ ସବୁ ନକରି ସେମାନେ ଯାହା ଚାହୁଁଛନ୍ତି ଲିଖିତ ଦିଅନ୍ତୁ, ସେ ତାକୁ ଠିକଣା ଜାଗାକୁ ପଠାଇ ଦେବେ। ସେ ଆଉ ମଧ ଅଶ୍ୱାସନା ଦେଲେ ଯେ ତାଙ୍କ ଜିଲ୍ଲାରେ ପୋଲିସ ଆତିଶଯ୍ୟ ହେବ ନାହିଁ।

ଏ ସବୁ ସତ୍ତ୍ୱେ ସେମାନେ ନ ଯିବାରୁ ସେମାନଙ୍କ ମଧ୍ୟରୁ ଜଣକୁ ଆରେଷ୍ଟ କରାଗଲା। ତାକୁ ଛାଡ଼ି ଦେବାକୁ ଦାବି କରି ସମସ୍ତେ ଭିତରକୁ ପଶିବାକୁ ଚାହିଁଲେ। ସେମାନଙ୍କୁ ବୁଝାଇବାରେ ବିଫଳ ହୋଇ ଡିଏମ୍ ସେମାନଙ୍କୁ ଆଇନ ଶୃଙ୍ଖଳା ସହିତ ନଖେଳିବାକୁ କହିଲେ।

ଜନତା ଅସମ୍ଭାଳ ହେବାରୁ ପାଲିତ ଡିଏମ୍ ଓ ଏସ୍‌ପିଙ୍କ ପରାମର୍ଶ ନେଇ ଭିଡ଼କୁ ଅବୈଧ ଘୋଷଣା କଲେ ଏବଂ ସେଠାରୁ ଚାଲିଯିବା ପାଇଁ ଦୁଇ ମିନିଟ ସମୟ ଦେଲେ। ତା ସତ୍ତ୍ୱେ ଭିଡ଼ ଡିଏମ୍‌ଙ୍କ ଫାଟକ ଭିତରକୁ ଉଦ୍ୟମ କରିବାରୁ ପାଲିତ ଟିଅର ଗ୍ୟାସର ଆଦେଶ ଦେଲେ କିନ୍ତୁ ଏହା ଫଳପ୍ରଦ ହେଲାନାହିଁ।

ବର୍ତ୍ତମାନ ଭିଡ଼ ଆହୁରି ଦୃଢ଼ସଂକଳ୍ପ ହୋଇ ଭିତରକୁ ପଶିବାକୁ ଚେଷ୍ଟା କଲା। ସେତେବେଳକୁ ସେଠାରେ ମାତ୍ର ଚାରିଜଣ ସଶସ୍ତ୍ର କନଷ୍ଟେବଲ ଓ ଚାରିଜଣ ଲାଠିଧାରୀ କନଷ୍ଟେବଲ ଥିଲେ। ଏମାନଙ୍କୁ ନେଇ ୪୦୦ଲୋକଙ୍କ ଭିଡ଼କୁ ଅଟକାଇବା ଅସମ୍ଭବ

ଥିଲା । ମିଷ୍ଟର ପାଲିତ ଭିଡ଼କୁ ସତର୍କବାଣୀ ଶୁଣାଇଲେ । ଯଦିଓ ଏସ୍‌ପି ଓ ଅନ୍ୟ ଅଫିସରମାନେ ବାରମ୍ବାର ଏହି ସତର୍କବାଣୀ ଶୁଣାଇଲେ, ଭିଡ଼ ଆଗକୁ ଆସିବାକୁ ଲାଗିଲା । ସେମାନେ ଆହୁରି ପାଖକୁ ଆସିଯିବାରୁ ମିଷ୍ଟର ପାଲିତ ଏସପିଙ୍କୁ ଦୁଇ ରାଉଣ୍ଡ ଗୁଳି ଚଳାଇବାର ଆଦେଶ ଦେଲେ । ଦ୍ୱିତୀୟ ରାଉଣ୍ଡ ଗୁଳି ପରେ ଭିଡ଼ ପଛଘୁଞ୍ଚା ଦେଲା ।'

ଜଷ୍ଟିସ ବର୍ମନଙ୍କର ନିଷ୍କର୍ଷ ଥିଲା ଯେ ପରିସ୍ଥିତି ଦୃଷ୍ଟିରୁ ଗୁଳିଚାଳନା ଏକମାତ୍ର ଅପରିହାର୍ଯ୍ୟ ପନ୍ଥା ଥିଲା । ତଦନ୍ତ ବେଳେ ଅନେକ ଲୋକ ସାକ୍ଷୀ ଦେଇଥିଲେ କିନ୍ତୁ ଘଟଣାରେ ଜଡ଼ିତ ଓ ପ୍ରତ୍ୟକ୍ଷଦର୍ଶୀ ଏସ୍‌ପିଙ୍କର ସାକ୍ଷ୍ୟ ନିଆ ଯାଇ ନ ଥିଲା । କଳାହାଣ୍ଡିର ପରବର୍ତ୍ତୀ ଏସ୍‌ପି ଶରତ ଚନ୍ଦ୍ର ମିଶ୍ରଙ୍କର ଆତ୍ମଜୀବନୀରୁ ଜଣାଯାଏ ଯେ ବର୍ମନ ଶଙ୍କର ସେନଙ୍କ ପିତାଙ୍କର ବନ୍ଧୁ ଥିଲେ ଏବଂ ସେଥିପାଇଁ ସେନଙ୍କୁ ସାକ୍ଷ୍ୟ ଦେବା ପାଇଁ ଡାକି ନ ଥିଲେ ।

ଏସପି ଶଙ୍କର ସେନ ଏ ବିଷୟରେ କଣ କହନ୍ତି ତା ମତେ ଶେଷକୁ ମିଳିଲା ୨୦୦୨ ମସିହାରେ ପ୍ରକାଶିତ ତାଙ୍କର ଆତ୍ମଜୀବନୀରେ ।

।।୪।। ଘଟଣା ଯେପରି ଶଙ୍କର ସେନ ଲେଖିଛନ୍ତି

'ସେହି ଘଟଣାବହୁଳ ଦିନ ମୁଁ ଜିଲ୍ଲା ମାଜିଷ୍ଟ୍ରେଟ୍ ଜେ.ପି. ଦାସଙ୍କ ଘରେ ପହଞ୍ଚି ଦେଖିଲି ଯେ ସେ ସବ୍‌ଡିଭିଜନାଲ ମାଜିଷ୍ଟ୍ରେଟ୍ ମହାପାତ୍ର ଓ ସ୍ଥାନୀୟ ମାଜିଷ୍ଟ୍ରେଟଙ୍କ ସହିତ ଆଲୋଚନାରେ ବ୍ୟସ୍ତ ଥିଲେ । ଛାତ୍ରମାନେ କଲେକ୍ଟରଙ୍କ ଘର ଆଗରେ ଧାରଣା ଦେଇଥିବାର ଧୃଷ୍ଟତା କରିଥିବାରୁ ଡିଏମ୍ ବିବ୍ରତ ଥିଲେ । ଛାତ୍ରମାନେ ଟେକା ପକାଇଲେ ଓ କଲେକ୍ଟରଙ୍କ ବଙ୍ଗଳା ଭିତରକୁ ପଶିବାକୁ ଚେଷ୍ଟା କଲେ । ଦାସ ଧୈର୍ଯ୍ୟ ହରାଇ ଗୁଳି ଚାଳନାର ଆଦେଶ ଦେଲେ । ଏସ୍‌ପି ଭାବରେ ମୁଁ ଲିଖିତ ଆଦେଶ ଚାହିଁଲି ଓ ସେ ତୁରନ୍ତ ଏହା ମାଜିଷ୍ଟ୍ରେଟ ପାଲିତଙ୍କ ଜରିଆରେ ପଠାଇ ଦେଲେ । ମୁଁ ଦୁଇଜଣ କନେଷ୍ଟବଲ ଓ ଜଣେ ହାବିଲଦାରଙ୍କୁ ଡାକି ପ୍ରତ୍ୟେକଙ୍କୁ ଗୋଟିଏ ରାଉଣ୍ଡ ଗୁଳି ଚାଳନା କରିବାକୁ କହିଲି । ମୁଁ ସେମାନଙ୍କୁ ଏ କଥା ମଧ କହିଲି ଯେ ସେମାନେ ଛାତ୍ରମାନଙ୍କ ଆଡ଼କୁ ନୁହେଁ ଆକାଶକୁ ଗୁଳି କରନ୍ତୁ । ମୋର ଆଦେଶ ନିୟମ ଦୃଷ୍ଟିରୁ ଅବୈଧ ଥିଲା, କାରଣ ପୋଲିସ ମାନୁଆଲରେ ଏହା ନିଷିଦ୍ଧ । କିନ୍ତୁ ମୁଁ ଅନୁଭବ କଲି ଯେ ଛାତ୍ରମାନେ ଯଦିଓ ଉତ୍ତେଜିତ ଓ ଉଚ୍ଛୃଙ୍ଖଳ ଥିଲେ, ହିଂସାପୂର୍ଣ୍ଣ ନ ଥିଲେ ।

ମୋର ତତ୍‌କ୍ଷଣାତ ନେଇଥିବା ନିଷ୍ପତ୍ତି ଫଳପ୍ରଦ ହେଲା । ସ୍ଥାନୀୟ ଲୋକ, ବିଶେଷତଃ ଓକିଲମାନେ, ଉତ୍ତେଜିତ ଥିଲେ ଏବଂ ଗୁଳି ଚଳାଇବାକୁ ଉନ୍ମୁଖ ଜିଲ୍ଲା ପ୍ରଶାସନକୁ ସମାଲୋଚନା କରି କାଗଜ ବାଣ୍ଟିଲେ । କିନ୍ତୁ ପୋଲିସ ସୁପରିନଟେଣ୍ଡେଣ୍ଟ କୁଶଳତାର ସହିତ ପରିସ୍ଥିତିକୁ ସମ୍ଭାଳିଥିବାରୁ ତାଙ୍କୁ ଖୋଲାଖୋଲି ଓ ଅବାଧ ପ୍ରଶଂସା କରା ହୋଇଥିଲା । ଏପରିକି ଏ ଘଟଣାର ଦୁଇ ସପ୍ତାହ ପରେ ଭବାନୀପାଟଣା କଲେଜର ବାର୍ଷିକ ସ୍ପୋର୍ଟସ ଉତ୍ସବକୁ ମତେ ସଭାପତିତ୍ୱ କରିବାକୁ ଓ ମୋ ସ୍ତ୍ରୀ ଗୌରୀକୁ ପୁରସ୍କାର ବିତରଣ କରିବାକୁ ଡକା ହୋଇଥିଲା । ଏହା ମୋ ପାଇଁ ସାମାନ୍ୟ

ଅପ୍ରୀତିକର ଥିଲା କାରଣ ସେମାନେ ଜାଣିଶୁଣି କଲେକ୍ଟରଙ୍କୁ ଡାକି ନ ଥିଲେ। ଏହି ଅନୁଷ୍ଠାନରେ କଲେଜ କର୍ତ୍ତୃପକ୍ଷ ଓ ଛାତ୍ରନେତା ପୋଲିସକୁ ଅକୁଣ୍ଠିତ ପ୍ରଶଂସା କରିଥିଲେ।'

ମୋର ଅଭିଜ୍ଞତା କିନ୍ତୁ ସଂପୂର୍ଣ୍ଣ ଭିନ୍ନ ଥିଲା। ଅଳ୍ପ କିଛି ଦିନ ଭିତରେ ସବୁ କିଛି ସହଜ ହୋଇଯାଇଥିଲା। କେବଳ ପାଲିତଙ୍କ ପ୍ରତି ଲୋକମାନଙ୍କର ବିଦ୍ୱେଷ ଥିବାରୁ ସେ ଜିଲ୍ଲାରୁ ବଦଳି ଚାହିଁଥିଲେ। ପିଲାମାନେ ପୂର୍ବ ପରି ସ୍କୁଲ କଲେଜରେ ପାଠପଢ଼ାରେ ଲାଗିଲେ। ପ୍ରଶାସନ ପ୍ରତି କାହାରି କିଛି ଅସଦ୍‌ଭାବ ନ ଥିଲା। ଆମର ଟେନିସ କୋର୍ଟରେ ଓକିଲ ଗଣାଧିପ ଭୋଇ ଓ ଛାତ୍ରନେତା ପ୍ରଦୀପଙ୍କ ପିଉସା ପରମାନନ୍ଦ ବେହେରା ନିୟମିତ ଖେଳିବାକୁ ଆସୁଥିଲେ। ମୋର ଅନ୍ୟତମ ଟେନିସ ସାଙ୍ଗ ଯୁବନେତା ରାସବିହାରୀ ବେହେରା(ପରବର୍ତ୍ତୀ ସମୟରେ ପାର୍ଲାମେଣ୍ଟ ସଦସ୍ୟ ଓ ଓଡ଼ିଶାରେ ମନ୍ତ୍ରୀ) ଓ ଅନ୍ୟମାନେ ମିଶି ଭବାନୀପାଟଣାର କେତୋଟି ଅନୁଷ୍ଠାନକୁ ମିଶାଇ ମହାବୀର ସାଂସ୍କୃତିକ ଅନୁଷ୍ଠାନ ଗଢ଼ିବାରେ ବ୍ୟସ୍ତ ଥିଲେ। ଗୁଳି ଘଟଣାର ଦୁଇ ସପ୍ତାହ ପରେ ନଭେମ୍ବର ୧୪ ତାରିଖରେ ଏହି ଅନୁଷ୍ଠାନର ପ୍ରତିଷ୍ଠା ଉତ୍ସବ ହେଲା ଏବଂ ମୁଁ ତାର ଉଦ୍‌ଘାଟନ କରିଥିଲି। କିଛି ଦିନ ପରେ ପାଲିତଙ୍କର ବଦଳି ଆଦେଶ ଆସିଲା ଏବଂ ଆଉ କିଛି ଦିନ ପରେ ଶଙ୍କର ସେନ ମଧ କଳାହାଣ୍ଡିରୁ ବଦଳି ହୋଇ ଚାଲିଗଲେ। ମୁଁ କିନ୍ତୁ କଳାହାଣ୍ଡିରେ ଆହୁରି ଦୁଇବର୍ଷ ରହିଗଲି, ସେଠାରେ ମୋର ଏକ ଭୟଙ୍କର ମରୁଡ଼ିର ମୁକାବିଲା କରିବାର ଥିଲା।

ନଭେମ୍ବର ୧୪, ୨୦୧୪ରେ ମହାବୀର ସାଂସ୍କୃତିକ ଅନୁଷ୍ଠାନ(ଯାହା ବର୍ତ୍ତମାନ ଏମ୍.ଏସ୍.ଏ ନାଁରେ ଜଣାଶୁଣା)କୁ ପଚାଶ ବର୍ଷ ପୂରିଲା। ଏହାର ସୁବର୍ଣ୍ଣ ଜୟନ୍ତୀ ଅବସରରେ ଏହାର କର୍ମକର୍ତ୍ତାମାନେ ମତେ ମନେ ପକାଇଲେ ଏବଂ ସେଦିନ ପ୍ରଧାନ ଅତିଥି ହେବା ପାଇଁ ଡାକିଲେ। ଏହା ହିଁ ଥିଲା ମୋର ନିକଟରେ ଭବାନୀପାଟଣା ଯାଇଥିବାର ଉପଲକ୍ଷ୍ୟ।

*ଡିସେମ୍ବର ୨୦୧୪*

ଏହି ଲେଖାରେ ନିମ୍ନଲିଖିତ ବହିମାନଙ୍କର ପ୍ରାସଂଗିକ ଅଂଶରୁ ସଂକ୍ଷିପ୍ତ ଓ ସ୍ୱଚ୍ଛନ୍ଦ ଅନୁବାଦ ଦିଆଯାଇଅଛି :

1. Loftus, Elizabeth and K. Ketcham.
Witness for the Defense : The Accused, the Eye Witness, and the Expert who puts Memory on Trial, 1991

2. Justice S.K. Barman
Report of the Commission of Enquiry into the Student's Agitation of 1964,1966

3. Sankar Sen
Tryst with Law Enforcement and Human Rights: Four Decades in Indian Police, 2002

# ଲେଖକର ବ୍ୟକ୍ତିଗତ ଜୀବନ

'କବିରେ ପାବେ ନା ତାର ଜୀବନ ଚରିତେ'

– ରବୀନ୍ଦ୍ର ନାଥ ଠାକୁର

ଟେନିସନଙ୍କ ଜୀବନୀର ଆଲୋଚନା କରି ରବୀନ୍ଦ୍ରନାଥ କହିଥିଲେ, ଯେ କବିତା ଲେଖିଛନ୍ତି, ଗୀତ ତିଆରି କରିଛନ୍ତି, ସେ କେବଳ ଗୀତ ଓ କବିତା ହିଁ ଦାନ କରିଯାଇଛନ୍ତି, ସେ ଜୀବନ ଦାନ କରିଯାଇ ନାହାନ୍ତି, ତାଙ୍କର ଜୀବନ ଚରିତରେ କାହାର କି ପ୍ରୟୋଜନ ? ଟେନିସନଙ୍କ କବିତା ପଢ଼ି ଆମେ ତାଙ୍କୁ ଯେତେ ବଡ଼ କରିଜାଣିଛୁ, ତାଙ୍କ ଜୀବନ ଚରିତ ପଢ଼ି ତାହାଙ୍କୁ ତା ଅପେକ୍ଷା ଅନେକ ଛୋଟ କରି ଜାଣିଛୁ ମାତ୍ର।

ଆମେରିକାରେ ୧୯୩୦-୪୦ ଦଶକରେ ଆରମ୍ଭ ହୋଇଥିବା ଆନ୍ଦୋଳନ 'ନିଉ କ୍ରିଟିସିଜ୍ମ୍' ମଧ୍ୟ ଏ ଭଳି ଏକ ମତ ପୋଷଣ କରିଥିଲେ ଯେ କୌଣସି ଲେଖାର ଆଲୋଚନା କରିବା ବେଳେ ଲେଖକର ଜୀବନୀ ବା ଲେଖାର ପୃଷ୍ଠଭୂମି ପ୍ରାସଙ୍ଗିକ ନୁହେଁ। କାଗଜ ପୃଷ୍ଠା ଉପରେ ଥିବା ପାଠ ହିଁ ସର୍ବେସର୍ବା।

ପାଠକ ଓ ସମାଲୋଚକମାନେ କିନ୍ତୁ ସଦାସର୍ବଦା ଲେଖକର ବ୍ୟକ୍ତିଗତ ଜୀବନ ବିଷୟରେ ଆଗ୍ରହୀ। ରବୀନ୍ଦ୍ରନାଥଙ୍କର ନିଜ ଲେଖାର ଆଲୋଚନା ବେଳେ ତାଙ୍କ ଜୀବନକୁ ଟଣାଯାଇଥାଏ। ତାଙ୍କ ଗଳ୍ପ 'ନଷ୍ଟନୀଡ଼'(ଯାହା ଉପରେ ସତ୍ୟଜିତ ରାୟଙ୍କ 'ଚାରୁଲତା' ଆଧାରିତ) ପଢ଼ିବା ବେଳେ ସମସ୍ତେ ନିଃସନ୍ଦେହ ଯେ ଏଥିରେ ଥିବା ଚରିତ୍ର ଅମଳ ଓ ଚାରୁଲତା ନିଜେ ରବୀନ୍ଦ୍ରନାଥ ଏବଂ ତାଙ୍କର ବଡ଼ ଭାଇଙ୍କର ସ୍ତ୍ରୀ କାଦମ୍ବରୀ ଭିନ୍ନ ଆଉ କେହି ନୁହଁନ୍ତି।

ସେହପରି ଫକୀରମୋହନଙ୍କ ବିଷୟରେ ଜନ୍ ବୋଲ୍ଟନ୍ କହିଛନ୍ତି ଯେ ଜୁନ ୧୯୧୩ରେ ନିଜର ପୁତ୍ରବଧୂଙ୍କ ବ୍ୟବହାର ତାଙ୍କ ଲେଖା ଉପରେ ପ୍ରଭାବ ପକାଇଲା ଓ ସେହି ଦିନଠାରୁ ତାଙ୍କର ଗଳ୍ପ ଉପନ୍ୟାସର ଚରିତ୍ରମାନେ ଭିନ୍ନ ପ୍ରକାରର ହୋଇଗଲେ। ଜୁନ ୧୯୧୩ ପୂର୍ବରୁ ସ୍ୱାମୀମାନେ ସେମାନଙ୍କର ଧର୍ମପ୍ରାଣା ସ୍ତ୍ରୀମାନଙ୍କ ପାଖରୁ ସମ୍ମାନ ପାଉଥିଲେ କିନ୍ତୁ ଏହି ତାରିଖ ପରେ ପିତା ଓ ସ୍ୱାମୀମାନେ ନିଜର ଧର୍ମବିଚ୍ୟୁତି ଯୋଗୁ ଆଉ କନ୍ୟା ଓ ସ୍ତ୍ରୀ ପାଖରୁ ସମ୍ମାନ ପାଇଲେ ନାହିଁ। କିନ୍ତୁ ଜୁନ୍ ୧୯୧୩ରେ ଠିକ୍ କଣ ଘଟି ଫକୀରମୋହନଙ୍କ ଲେଖାରେ ଏ ଭଳି ପରବର୍ତ୍ତନ ଆସିଥିଲା ବୋଲଟନ(ବା ଅନ୍ୟ କେହି) ସେ ବିଷୟରେ କୌଣସି ବିବରଣ ଦେଇନାହାନ୍ତି।

ଫକୀରମୋହନଙ୍କ ଲେଖକ ଜୀବନର ଆଉ ଏକ ଦୁର୍ଭାଗ୍ୟ ଥିଲା ତାଙ୍କ ପୁଅ ମୋହିନୀମୋହନ ତାଙ୍କର ଆତ୍ମଚରିତର ବିଭିନ୍ନ ଅଂଶକୁ ମନଇଚ୍ଛା କର୍ତ୍ତିତ, ପରିବର୍ଦ୍ଧିତ, ସଂକୁଚିତ ଓ ବିକୃତ କରିଦେବା। ଏଥିରେ ମୋହିନୀମୋହନଙ୍କର ବୋଧହୁଏ ଗୋଟିଏ ସଦୁଦ୍ଦେଶ୍ୟ ଥିଲା ଯେ ଏହା ଦ୍ୱାରା ପିତାଙ୍କର ମଦ୍ୟପାନ ଇତ୍ୟାଦି ଦୁର୍ବଳତା ଲୋକଲୋଚନରୁ ଅଗୋଚର ହୋଇଯିବ। କିନ୍ତୁ ଫକୀରମୋହନଙ୍କ ଆତ୍ମଜୀବନୀର ଅଂଶ ପୂର୍ବରୁ ପତ୍ରିକାମାନଙ୍କରେ ପ୍ରକାଶିତ ହୋଇଥିବାରୁ ପରବର୍ତ୍ତୀ ସମୟରେ ସେଥିରୁ ଉଦ୍ଧାର କରି ନିର୍ଭୁଲ ସଂସ୍କରଣ ପ୍ରକାଶ କରାଯାଇଛି। ଫଳରେ ଫକୀରମୋହନ ନିଜର ବ୍ୟକ୍ତିଗତ ଜୀବନକୁ ସର୍ବସାଧାରଣରେ ଯେଭଳି ଜଣାଇବାକୁ ଚାହୁଁଥିଲେ, ଆମେ ବର୍ତ୍ତମାନ ସେଇଭଳି ଜାଣିପାରୁଛୁ।

ଫକୀରମୋହନଙ୍କ ସମସାମୟିକ ଅନ୍ୟତମ ପ୍ରସିଦ୍ଧ ଲେଖକ ରାଧାନାଥ ରାୟଙ୍କ ସତୀଦ୍ରୋହ କଥା ବର୍ତ୍ତମାନ ଊଣା ଅଧିକେ ସମସ୍ତଙ୍କୁ ଜଣା। ୧୯୦୧ ମସିହାରେ ୫୨ବର୍ଷ ବୟସ୍କ ରାଧାନାଥ ଜଣେ ୨୪ ବର୍ଷ ବୟସ୍କା ବିବାହିତ ସ୍ତ୍ରୀଙ୍କ ସଂପର୍କରେ ଆସିଥିଲେ। ସେ ଏ ବିଷୟରେ ଲେଖି କାଗଜ ବାଣ୍ଟି ନଥିଲେ ହୁଏ ତ କେହି ଏ କଥା ଜାଣି ନଥାନ୍ତେ। ତାଙ୍କ କବିତାର ଦୁଇଧାଡ଼ି, "ନଗେନ୍ଦ୍ରବାଳା ପାଦ ପଦ୍ମ ଯୁଗଳ, ଛୁଇଁ ଦେହ ଧାରଣ ହେବ ସଫଳ" ଯେ ରାଧାନାଥ ଏହି ମହିଳାଙ୍କୁ ଉଦ୍ଦେଶ୍ୟ କରି ଲେଖିଥିଲେ ଏ କଥା ଭାବି ଆମେ ଆମୋଦିତ ହେଉ। ପ୍ରକୃତରେ କିନ୍ତୁ ଏ ପଂକ୍ତିର ଲକ୍ଷ୍ୟ ଥିଲେ ବଙ୍ଗଳା କବୟିତ୍ରୀ ନଗେନ୍ଦ୍ରବାଳା ସରସ୍ୱତୀ ନୁହେଁ ହିମାଳୟ-କନ୍ୟା ବା ନଗେନ୍ଦ୍ରବାଳା ପାର୍ବତୀ। ଏବଂ ରାଧାନାଥ ଏହା ତାଙ୍କ 'ମେଘଦୂତ' କାବ୍ୟରେ ଲେଖିଥିଲେ ସଶରୀର ନଗେନ୍ଦ୍ରବାଳାଙ୍କୁ ଜାଣିବାର ୨୭ ବର୍ଷ ପୂର୍ବରୁ।

ରବୀନ୍ଦ୍ରନାଥଙ୍କ ଜୀବନରେ ମଧ୍ୟ ଏହାର ଏକ ସମାନ୍ତରାଳ ଉଦାହରଣ ଅଛି। ୧୯୨୪ରେ ରବୀନ୍ଦ୍ରନାଥ ଆର୍ଜେଣ୍ଟିନାରେ ତାଙ୍କର ପ୍ରଶଂସିକା ଭିକ୍ଟୋରିଆ ଓକାମ୍ପୋଙ୍କୁ ଭେଟିଥିଲେ। ତାଙ୍କର ବୟସ ସେତେବେଳେ ୬୪ ଓ ଭିକ୍ଟୋରିଆଙ୍କର ୩୪। ସମସ୍ତେ ଭାବନ୍ତି ରବୀନ୍ଦ୍ରନାଥଙ୍କର ତ ଗୀତ "ଆମି ଚିନି ଗୋ ଚିନି ତୋମାରେ, ଓଗୋ ବିଦେଶିନୀ" ଲେଖା ହୋଇଥିଲା ଭିକ୍ଟୋରିଆଙ୍କ ଉଦ୍ଦେଶ୍ୟରେ। ବାସ୍ତବରେ କିନ୍ତୁ ଗୀତଟିର ରଚନାକାଳ ପ୍ରାୟ ୩୦ ବର୍ଷ ପୂର୍ବେ, ୧୮୯୫ରେ!

ଏଠାରେ ଅନ୍ୟ ଏକ ସଂଯୋଗର ଉଲ୍ଲେଖ କରାଯାଇପାରେ। ମହାତ୍ମା ଗାନ୍ଧୀ ତାଙ୍କର ୫୨ ବର୍ଷ ବୟସରେ ସମାଜ ସେବିକା ସରଳାଦେବୀ ଚୌଧୁରାଣୀଙ୍କ ସହିତ ସଂପର୍କରେ ଆସିଥିଲେ ଯାହା ଏକ ଆଧାତ୍ମିକ ବିବାହରେ ପରିଣତ ହେବ ବୋଲି ସେ ଭାବୁଥିଲେ। କିନ୍ତୁ ପରେ ରାଧାନାଥ ରାୟଙ୍କ ଭଳି ଗାନ୍ଧୀ ମଧ୍ୟ ଅନୁତାପଗ୍ରସ୍ତ ହୋଇ ଏକ ପତ୍ର ଲେଖିଥିଲେ। ଲକ୍ଷ୍ୟ କରିବାର କଥା ଯେ ରାଧାନାଥ ନିଜର ଆତ୍ମବିବୃତିରେ ଯେଉଁ ଭଳି 'ସ୍ଖଳନ', 'ବିଦୂଷୀ ମହିଳା' ଓ 'କୁହକ ଓ ମାୟାଜାଲ ପ୍ରଭାବ' ଶବ୍ଦ ବ୍ୟବହାର କରିଛନ୍ତି, ଗାନ୍ଧୀ ମଧ ମାର୍ଗାରେଟ ସାଙ୍ଗରଙ୍କୁ ଲେଖିଥିବା ପତ୍ରରେ ପ୍ରାୟ ଏକା ଭଳି ଅର୍ଥଦ୍ୟୋତକ ଶବ୍ଦ ବ୍ୟବହର କରିଛନ୍ତି : 'ସ୍ଲିପଡ୍', 'ଏ ଓମାନ୍ ଉଇଥ୍

ଏ ବ୍ରଡ୍ କଲ୍‌ରୋଲ୍ ଏଜୁକେଶନ', 'ଗ୍ରାନ୍‌ସ୍'। (ରାଜମୋହନ ଗାନ୍ଧୀଙ୍କ ଲିଖିତ 'ଗାନ୍ଧୀ', ୨୦୦୮)

ପାଠକମାନେ ଯେ ଲେଖକର ବ୍ୟକ୍ତିଗତ ଜୀବନ ବିଷୟରେ ଜାଣିବାକୁ କୁତୂହଳୀ ତା ସ୍ପଷ୍ଟ ହୁଏ ପତ୍ରପତ୍ରିକାରେ ପ୍ରକାଶିତ ସାକ୍ଷାତ୍‌କାରମାନଙ୍କରୁ। ସାକ୍ଷାତ୍‌କାର ପାଇଁ ଲେଖକ ପାଖକୁ ଯେଉଁ ପ୍ରଶ୍ନାବଳୀ ଆସିଥାଏ, ସେଥିରେ ଏ ଭଳି ପ୍ରଶ୍ନ ମଧ୍ୟ ଥାଏ : ଆପଣ କଣ ଖାଇବାକୁ ଭଲ ପାନ୍ତି? ବର୍ତ୍ତମାନ କେଉଁ ମହିଳାଙ୍କ ସହିତ ଗୋଟିଏ ଦିନ (ଭାଗ୍ୟକୁ ପ୍ରଶ୍ନରେ ଦିନ ଅଛି, ରାତି ନୁହେଁ) ବିତାଇବାକୁ ଚାହିଁବେ? ବିଚରା ଲେଖକ ଯାହା ବି ଉତ୍ତର ଦେବ ବିପଦ। ସେ ଯଦି ପ୍ରଥମ ପ୍ରଶ୍ନର ଉତ୍ତରରେ କହେ 'ପାସ୍ତା', ହୁଏତ ନିଷ୍କର୍ଷ ବାହାରିବ ଯେ 'ଡିଭାଇନ କମେଡି' ପଢ଼ି ନଥାଉ ପଛେ ସେ ଜଣେ ନିରୋଳା କଂଗ୍ରେସ ଭକ୍ତ। ଦ୍ୱିତୀୟ ପ୍ରଶ୍ନଟି ଆହୁରି ମାରାତ୍ମକ। ଯଦି ଉତ୍ତରରେ କହିଲ 'କାଟ୍ରିନା କୈଫ', ପ୍ରତିକ୍ରିୟା ହେବ ମୁରୁକି ହସ। କିନ୍ତୁ ଦୁର୍ଭାଗ୍ୟକୁ ଯଦି ଭୁଲରେ ବି କହିଲ 'ମୋ ସ୍ତ୍ରୀ' ତେବେ ମିଳିବ ଅଟ୍ଟହାସ ସହିତ ନିପଟ ମିଥ୍ୟାବାଦୀ ହୋଇଥିବାର ଆରୋପ ମଧ୍ୟ।

ଟେଲିଭିଜନରେ ଏ ଭଳି ସାକ୍ଷାତ୍‌କାରରେ ପ୍ରଶ୍ନକର୍ତ୍ତା ସବୁବେଳେ ଉତ୍ତରଦାତାଙ୍କୁ ଅପ୍ରସ୍ତୁତ କରିବା ପାଇଁ ଚେଷ୍ଟା କରୁଥାଏ, ତଥାପି ନେତାମାନଙ୍କ ଭଳି ଲେଖକମାନେ ମଧ୍ୟ ଏହି ଜାଲ ଭିତରକୁ ପଶିବା ପାଇଁ କୁଣ୍ଠିତ ହୋଇ ନଥାନ୍ତି।

ସାକ୍ଷାତ୍‌କାରର ଆଉ ଗୋଟିଏ ପ୍ରିୟ ପ୍ରଶ୍ନ ହେଲା, ଆପଣ କାହିଁକି ଓ କେଉଁ ପରିସ୍ଥିତିରେ ଏ ଲେଖାଟି ଲେଖିଥିଲେ। ଏହାର ଏକ ଉଦାହରଣ :

ଶତ୍ରୁଘ୍ନ ପାଣ୍ଡବଙ୍କର ପ୍ରଶ୍ନ : ... 'ବାଘ ଶିକାର' ଦୀର୍ଘ କବିତାର ପରିକଳ୍ପନାର ପ୍ରଚ୍ଛଦ କଥା କିଛି କହନ୍ତୁ।

ରମାକାନ୍ତ ରଥଙ୍କ ଉତ୍ତର : ଅନେକ ବର୍ଷ ତଳେ ଜଙ୍ଗଲଟିଏ ପାର ହୋଇ ଗୋଟିଏ ତହସିଲ ମହକୁମାରେ ପହଞ୍ଚିବାର ଥିଲା। କୌଣସି କାରଣରୁ ଗାଡ଼ି ଆସି ପାରିଲା ନାହିଁ। ସାରା ରାତି ଜଙ୍ଗଲ ଉପକଣ୍ଠରେ ବିତିଗଲା ଜହ୍ନରାତି। ଗାଡ଼ି ସିନା ଆସିଲାନି, 'ବାଘଶିକାର' କବିତାଟି ଆସିଲା । (ଉଦ୍‌ଭାସ, ଏପ୍ରିଲ ୨୦୦୮)

ଏ କଥା ପଢ଼ିବା ପରେ ନିଉ କ୍ରିଟିକ କହିବ, ଏତେ କଥାରୁ ମତେ କିଛି ଲାଭ ମିଳିଲା ନାହିଁ, କାରଣ କବିତାକୁ ବୁଝିବା ବା ଉପଭୋଗ କରିବା ପାଇଁ ଏ ସବୁ ବ୍ୟକ୍ତିଗତ ତଥ୍ୟ ଆଦୌ ସହାୟକ ନୁହନ୍ତି।

ଅନେକେ ଏ କଥାକୁ ଲିଟରାରି ଟ୍ରିଭିଆ ବା ସାହିତ୍ୟିକ ଟାହିଟାପରା ପର୍ଯ୍ୟାୟକୁ ନେଇଯିବେ। ଯେପରିକି ଲେଖିଲା ବେଳେ ଜର୍ମାନ କବି ଗେଟେ ତାଙ୍କ ଟେବୁଲ ଡ୍ରୟାରରେ ଗୋଟିଏ ପଚା ଆପଲ ରଖୁଥିଲେ। ଏ କଥା ସତ, କିନ୍ତୁ ଏ ଭଳି ତଥ୍ୟର କୌଣସି ସାହିତ୍ୟିକ ମୂଲ୍ୟ ନାହିଁ।

ସୌଭାଗ୍ୟବଶତଃ ଆମର ମଧ୍ୟଯୁଗୀୟ କବିମାନଙ୍କ କ୍ଷେତ୍ରରେ ଏ ଆଲୋଚନା ମୂଲ୍ୟହୀନ, କାରଣ ସେମାନଙ୍କର ବ୍ୟକ୍ତିଗତ ଜୀବନ ସଂପର୍କରେ ଆମକୁ କିଛି ବି ଜଣାନାହିଁ। ଆମର

ପ୍ରାଚୀନତମ କବି ସାରଳା ଦାସଙ୍କ ସମୟ ବିଷୟରେ ତାଙ୍କର ମହାଭାରତର ଗୋଟିଏ ଧାଡ଼ି ଲେଖା ''ପ୍ରଳୟିତେ ଖଟଇ ଶ୍ରୀ କପିଳେଶ୍ୱର ମହାରାଜା'ରୁ ଆମେ ସ୍ଥିର କରୁ ଯେ ସେ ପଞ୍ଚଦଶ ଶତାବ୍ଦୀର ଗଜପତି କପିଳେନ୍ଦ୍ର ଦେବଙ୍କ ସମସାମୟିକ ଥିଲେ। (ଅନ୍ୟ ଯୁକ୍ତି ଦେଇ ଗୋପୀନାଥ ମହାନ୍ତି ସାରଳା ଦାସଙ୍କୁ ଦଶମ ଶତାବ୍ଦୀର କବି ବୋଲି କହନ୍ତି।) କବି ନିଜ ଲେଖାରେ ଉଭୟ ସାରଳା ଓ ସାରୋଳ ବ୍ୟବହାର କରିଥିବାରୁ ତାଙ୍କର ଜନ୍ମସ୍ଥାନ ସାରଳା ଠାକୁରାଣୀ ଥିବା ଝଙ୍କଡ଼ରେ ନା କୋଣାର୍କ ପାଖର ସାରୋଳଚଣ୍ଡୀ ଗାଁ'ରେ ସେ ବିଷୟରେ ମଧ୍ୟ ସଂଶୟ ଅଛି।

ସେହିପରି ଦୀନକୃଷ୍ଣ ଜଣେ ନା ଦୁଇଜଣ ବା ବାରଜଣ ସେ ବିଷୟରେ ଲୁରି ଏ ପର୍ଯ୍ୟନ୍ତ କୌଣସି ସିଦ୍ଧାନ୍ତରେ ପହଞ୍ଚି ପାରିନାହାନ୍ତି। ତେଣୁ ଏହି ଲେଖକମାନଙ୍କର ଲେଖା ଆମେ ଲେଖକ ଜୀବନୀ ବିବର୍ଜିତ ହୋଇ ଆଲୋଚନା କରିପାରୁ।

ପାଶ୍ଚାତ୍ୟ ସାହିତ୍ୟ ଜଗତ ମଧ୍ୟ ଏ ଭଳି ସମସ୍ୟାରୁ ମୁକ୍ତ ନୁହେଁ। ଶେକ୍ସପିଅରଙ୍କ ନାଟକ ଓ ସନେଟ ଷ୍ଟ୍ରାଟଫୋର୍ଡର ସେଇ ଅତି ସାଧାରଣ ଲୋକଟି ଲେଖିଥିଲା ବା ଅନ୍ୟ କେହି, ଏ ପର୍ଯ୍ୟନ୍ତ ସମାଧାନ ହୋଇପାରିନାହିଁ।

ଆହୁରି ନିକଟ ସମୟକୁ ଆସିଲେ ମଧ୍ୟ ଆମେ ଦେଖିବା ଯେ କେତେକ ଲେଖକଙ୍କ ଜୀବନ ବିଷୟରେ ଆମେ ଅତି ଅଜ୍ଞ। ରାଧାନାଥଙ୍କ ସମସାମୟିକ ଭୀମଭୋଇଙ୍କ ଜୀବନ ଏ ପର୍ଯ୍ୟନ୍ତ ରହସ୍ୟମୟ ହୋଇ ରହିଛି। ଦେଖିବାକୁ ଗଲେ ଫକୀରମୋହନଙ୍କ ଆତ୍ମଜୀବନୀ ଓ କେତେକ ବିଶିଷ୍ଟ ଲୋକଙ୍କର ଜୀବନୀ ଲେଖା ହେବା ପର୍ଯ୍ୟନ୍ତ ଜଣେ ଲେଖକ ବିଷୟରେ ଜାଣିବାର କୌଣସି ସହଜ ଉପାୟ ନଥିଲା। ବର୍ତ୍ତମାନ ଅବଶ୍ୟ ଅନେକ ଲୋକ ସେମାନଙ୍କର ଆତ୍ମଜୀବନୀ ଲେଖୁଛନ୍ତି ଏବଂ ସେଥିରୁ ନିଷ୍କଷ ନହେଲେ ମଧ୍ୟ ଅନେକ ବ୍ୟକ୍ତିଗତ ତଥ୍ୟ ମିଳିଥାଏ। ଏହା ସେମାନଙ୍କ ଲେଖାକୁ ମୂଲ୍ୟାୟନ କରିବାରେ କି ଭଳି ସହାୟକ ହେବ ତା ଏକ ପ୍ରଶ୍ନବାଚୀ। ଏ କଥା ମଧ୍ୟ ଜଣା ଯେ ଅନେକ ଲେଖକ ନିଜର ବ୍ୟକ୍ତିଗତ ଜୀବନ ବିଷୟରେ ପ୍ରକାଶ କରିବାକୁ କୁଣ୍ଠିତ । ଆମେରିକାର 'ଗ୍ରାଭିଟିକ୍ ରେନବୋ'ର ଲେଖକ ଟମାସ ପିଞ୍ଚନ ନିଜକୁ ସଂପୂର୍ଣ୍ଣ ରୂପେ ଲୁଚାଇ ରଖିଛନ୍ତି, ତାଙ୍କ ବିଷୟରେ କେହି କିଛି ଜାଣନ୍ତି ନାହିଁ।

ଏ ସବୁ ଆଲୋଚନାର ଅନ୍ୟ ଏକ ଦିଗ ହେଲା ଯେ ଅନ୍ତତଃ ଅଳ୍ପ କିଛି ଲେଖକ ଅଛନ୍ତି ହୁଏ ତ ଯାହାଙ୍କର ବ୍ୟକ୍ତିଗତ ଜୀବନ ବିଷୟରେ ଜାଣିଲେ ତାଙ୍କର ଲେଖାକୁ ଆଉ ଟିକିଏ ଭଲ ଭାବେ ବୁଝି ହେବ। ଏହା ବିଶେଷରେ କବିମାନଙ୍କ ପ୍ରତି ପ୍ରଯୁଜ୍ୟ କାରଣ କବିତାରେ ଅନେକ କଥା ସିଧାସଳଖ ନ କହି ବ୍ୟଂଜନାରେ କୁହା ଯାଇଥାଏ। ସେ କ୍ଷେତ୍ରରେ କବିର ଜୀବନ ତାର କବିତାର କିଛି ଗୂଢ଼ ପ୍ରସଙ୍ଗ ଓ ସାଙ୍କେତିତ ଭାଷାକୁ ବୁଝିବାରେ ସହାୟକ ହୋଇପାରେ। ଏ ବିଷୟରେ ହଠାତ୍ ମନକୁ ଆସନ୍ତି ଦୁଇଜଣ କବୟିତ୍ରୀ : କୁନ୍ତଳା କୁମାରୀ

ସାବତ ଓ ସିଲଭିଆ ପ୍ଲାଥ। ସିଲଭିଆ(୧୯୩୨–୧୯୬୩)ଙ୍କର ନିଜର ପିତା ଓ ସ୍ୱାମୀଙ୍କ ସହିତ ମଧୁର ତିକ୍ତ ସଂପର୍କ ଓ ବାରମ୍ବାର ଆତ୍ମହତ୍ୟା କରିବାର ଇଚ୍ଛା ଓ ମାତ୍ର ୩୧ବର୍ଷ ବୟସରେ ସେଥିରେ ସଫଳ ହେବାକୁ ଆଖିରେ ରଖିଲେ ବୋଧହୁଏ ତାଙ୍କ କବିତାର ମର୍ମକୁ ବେଶି ଉପଲବ୍‌ଧି କରି ହେବ। ସେଇଭଳି ଆମର କୁନ୍ତଳାକୁମାରୀ (୧୯୦୧–୧୯୩୮)ଙ୍କ ସ୍ୱଳ୍ପ ଜୀବନ କାଳରେ ଲେଖା 'ଅଞ୍ଜଳି' ଓ 'ପ୍ରେମ ଚିନ୍ତାମଣି'ର କବିତା ସବୁ ଭଗବାନଙ୍କୁ ଉଦ୍ଦିଷ୍ଟ ନା ନିଜର ପ୍ରେମିକକୁ ତାର ସୂଚନା ଆମେ ପାଇପାରିବା ତାଙ୍କର ଜୀବନରୁ। ଚକ୍ରଧର ମହାପାତ୍ର ଲିଖିତ ଜୀବନୀ ଅନୁସାରେ କବିତାର ଉପଲକ୍ଷ ଈଶ୍ୱର ନୁହନ୍ତି, ସେ ହେଉଛନ୍ତି ଜଣେ ନିତାନ୍ତ ପାର୍ଥିବ ପ୍ରେମିକ ଡାକ୍ତର ରାଓ, ଯାହାଙ୍କ ପ୍ରରୋଚନାରେ କବିତାଗୁଡ଼ିକୁ ଭକ୍ତି କବିତା ନାଁରେ ପ୍ରସାର କରାଯାଇଥିଲା।

ଆମେ ଯେପରି ଲେଖକର ବ୍ୟକ୍ତିତ୍ୱରୁ ତାର ଲେଖାକୁ ବୁଝିବାର ଅସମ୍ଭବ ଚେଷ୍ଟା କରିଥାଉ, ଅନେକ ସମୟରେ ତା'ର ଲେଖାରୁ ଲେଖକକୁ ମଧ ଆକଳନ କରିବାର ଚେଷ୍ଟା କରାଯାଇଥାଏ। ଶେକ୍ସପିଅରଙ୍କ ଲେଖାରୁ ସେ ଡାକ୍ତର, ଓକିଲ, ନାବିକ, ଖଂଜ ଓ ସିଫିଲିସ୍‌ଗ୍ରସ୍ତ ଇତ୍ୟାଦି ବୋଲି କଳନା କରାଯାଇଛି। ସାରଳା ଦାସ ଯୁଦ୍ଧ ବିଷୟରେ ବିଶଦ ବର୍ଣ୍ଣନା କରିଥିବାରୁ କୁହାଯାଉଛି ଯେ କପିଳେନ୍ଦ୍ର ଦେବଙ୍କ ସେନାବାହିନୀର ସୈନିକ ଥିଲେ। ଏ ପ୍ରକାରର କଳନାର ଖରାପ ଦିଗଟି ହେଉଛି ଯେ ଆମେ ଲେଖାର ଚରିତ୍ରକୁ ଲେଖକ ଉପରେ ଆରୋପ କରୁ। ଏବଂ ମଦ୍ୟପାନ ଓ ବେଶ୍ୟାଳୟ ବିଷୟରେ ଲେଖୁଥିବା ଲେଖକକୁ ମଦ୍ୟପ ଓ ବେଶ୍ୟାସକ୍ତ ଆଖ୍ୟା ଦେଉ।

ଏତେ କଥାର ନିଷ୍କର୍ଷ ହେଲା ଯେ ଗୋଟିଏ ଲେଖା ପଢ଼ିବା ବେଳେ ଆମର କିଛି ବି ଆବଶ୍ୟକ ନାହିଁ ଜାଣିବା ଲେଖକଟି ଦେଖିବାକୁ କିପରି, ସେ ମଦ୍ୟପ କି ନା, ସେ କଣ ସ୍ତ୍ରୀକୁ ପିଟେ, ଗତ ନିର୍ବାଚନରେ ସେ କାହାକୁ ଭୋଟ ଦେଇଥିଲା ବା ୟୁନିଫର୍ମ ସିଭିଲ କୋଡ ବିଷୟରେ ତାର ମତ କଣ। ତାର ଯେଉଁ ଲେଖାଟି ଆମ ଆଗରେ ଅଛି ତାକୁ ହିଁ ପଢ଼ି ଆମେ ଜାଣିବା ସେ କଣ କହିବାକୁ ଚାହୁଁଛି।

କୁହାଯାଇଥାଏ ଯେ ଜଣେ ସାହିତ୍ୟିକର ଲେଖାର ନ୍ୟାଯ୍ୟ ନିରପେକ୍ଷ ମୂଲ୍ୟାୟନ ସମ୍ଭବ ଯେତେବେଳେ ସେ ନିଜେ ମୃତ, ତାର ବନ୍ଧୁମାନେ ମୃତ, ତାର ଶତ୍ରୁମାନେ ମଧ ମୃତ। ଏହାକୁ ଭାଙ୍ଗି କୁହାଯାଇପାରେ ଯେ ଏଭଳି ମୂଲ୍ୟାୟନ ସମ୍ଭବ ଯଦି ଆମକୁ ଜଣା ନାହିଁ କିଏ କାହିଁକି କେତେବେଳେ ଲେଖାଟି ଲେଖିଥିଲା।

*ଜାନୁଆରି ୨୦୧୫*

# ନୀରବତା(ବା ଅଳ୍ପ କଥା) ଯେତେବେଳେ ପ୍ରଗଳ୍‌ଭ

## ୧. ନୀରବତା

କ୍ଷମତାସୀନ ନେତାମାନଙ୍କୁ ଯେତେବେଳେ କୋଇଲା ବା ଚିଟ୍‌ଫଣ୍ଡ ଦୁର୍ନୀତି ଭଳି ସମ୍ବେଦନଶୀଳ ବିଷୟରେ ପ୍ରଶ୍ନ କରାଯାଏ, ସେମାନେ ଅତି ସହଜରେ ସ୍ୱତଃସ୍ଫୂର୍ତ୍ତ ଉତ୍ତର ଦିଅନ୍ତି, ନୋ କମେଣ୍ଟ, ଆଇନ ତା ବାଟରେ ଯିବ। ଓଡ଼ିଶାର ମୁଖ୍ୟମନ୍ତ୍ରୀ ଏଭଳି ଉତ୍ତର ଦେବାରେ ପାରଙ୍ଗମ ବୋଲି ଜଣା ଏବଂ ବର୍ତ୍ତମାନ ଏହା ଏକ ଜୋକ୍‌ରେ ପରିଣତ। ଆମେ ଭାବୁ ଯେ ଏ ଭଳି ଉତ୍ତର ଦିଆଯାଏ 'ନୀରବତା ସ୍ୱର୍ଣ୍ଣିମ' ଭଳି ନୀତି ଯୋଗୁ, ଅଥବା ଉତ୍ତରଦାତାର ଅପାରଗତା ଯୋଗୁ। କିନ୍ତୁ ଆମେ ଭୁଲିଯାଉ ଯେ ଚୁପ ରହିବା ମଧ୍ୟ ଏକ ଅସ୍ତ୍ର ଯାହାକୁ ବଳଶାଳୀ ଲୋକ ଅନେକ ସମୟରେ ନିଜ ସୁବିଧା ମତେ ସାଧାରଣ ଲୋକଙ୍କ ବିରୁଦ୍ଧରେ ପ୍ରୟୋଗ କରିଥାନ୍ତି। ଚୁପ ରହି ଅନେକ କଥା ଲୁଚାଇ ଦେଇ ହୁଏ, କାହାରି ମିଛ କଥାକୁ ନୀରବ ସମର୍ଥନ କରାଯାଇପାରେ। ଅଧିକନ୍ତୁ ଚୁପ୍ ରହି କପଟ ବିନୟ ଜ୍ଞାପନ କରି ହୁଏ। ମୁନି ଓ ମୌନ ସହଜାତ ଶବ୍ଦ, କିନ୍ତୁ ଆମ ଓଡ଼ିଆରେ ମୁନିର ଆଉ ଗୋଟିଏ ଅର୍ଥ ହେଉଛି 'ଚୁପ ସଇତାନ'। ନୋ କମେଣ୍ଟର ପ୍ରକୃତ ଅର୍ଥ ହେଲା, ମୁଁ ଯାହା ଇଚ୍ଛା କରିବି, ତମେ ପଚାରିବାକୁ କିଏ ?

ଆଜିକାଲି ଜନତା ପାଖରେ ପହଞ୍ଚିବାର ମୁଖ୍ୟ ମାଧ୍ୟମ ହେଉଛି ଟେଲିଭିଜନ ଓ ସୋସାଲ୍ ମିଡିଆ, ଯଥା ଫେସ୍ ବୁକ୍, ଟ୍ୱିଟର ଇତ୍ୟାଦି। ମଧ୍ୟ ପ୍ରାଚ୍ୟର ଯାସ୍‌ମିନ ବିପ୍ଳବର ଅନ୍ଦୋଳନକାରୀଙ୍କଠାରୁ ଆରମ୍ଭ କରି ପ୍ରଧାନମନ୍ତ୍ରୀଙ୍କ ପର୍ଯ୍ୟନ୍ତ ସମସ୍ତେ ବର୍ତ୍ତମାନ ଏହି ଲୋକ ସଂପର୍କର ମାଧମକୁ ବ୍ୟବହାର କରୁଛନ୍ତି। ମହାତ୍ମା ଗାନ୍ଧୀ ଯେତେବେଳେ ତାଙ୍କର ଆନ୍ଦୋଳନ ଆରମ୍ଭ କରିଥିଲେ ଅଳ୍ପ କିଛି ଖବରକାଗଜ ଓ ସରକାରୀ ରେଡିଓ ବ୍ୟତୀତ ସଂଚାରର ଆଉ କୌଣସି ସୁବିଧା ନଥିଲା। ତଥାପି ଗାନ୍ଧୀ ଭାରତର ଘରେ ଘରେ ପହଞ୍ଚି ପାରିଥିଲେ ତୁଣ୍ଡରୁ ତୁଣ୍ଡ କଥାବାର୍ତ୍ତାରେ ଏବଂ ତା ସମ୍ଭବ ହୋଇଥିଲା ଗାନ୍ଧୀଙ୍କର ଆଣ୍ଠୁ ଲୁଚୁ ନଥିବା ଲୁଗା, ଖାଲି ଦେହ, ରାମଧୁନ ଗୀତରେ, ଉପବାସରେ ଏବଂ ବିଶେଷ କରି ତାଙ୍କର ମୌନ ରହିବାରେ। ସେ ଯେତେ କଥା ବକ୍ତୃତାରେ ଲୋକଙ୍କ ପାଖରେ ପହଞ୍ଚାଇ ପାରୁ ନଥିଲେ, ସେତିକି ପହଞ୍ଚାଇ ପାରୁଥିଲେ ତାଙ୍କ ମୌନରେ। ତାଙ୍କର ଉପବାସ ଓ ମୌନ ହିଁ ୧୯୩୨ରେ ଆମ୍ବେଦକରଙ୍କୁ ବାଧ କରିଥିଲା ପୁନା ପ୍ୟାକ୍ଟରେ ଦସ୍ତଖତ କରିବା ପାଇଁ। ଗାନ୍ଧୀ କହୁଥିଲେ, କେବଳ ସେତିକି ବେଳେ କଥା କହ ଯେତେବେଳେ ତାହା ନୀରବତାର ଉତ୍କର୍ଷ ହେବ।

ଜନସାଧାରଣଙ୍କ ପ୍ରତିବାଦକୁ ଦମନ କରିବା ପାଇଁ ଶାସକମାନେ ସବୁବେଳେ ସେମାନଙ୍କୁ ଚୁପ୍ କରିବାକୁ ଚେଷ୍ଟା କରୁଥିଲେ। ଏଥିପାଇଁ ଆଇନରେ ସେନସର୍ କରିବାର ବ୍ୟବସ୍ଥା ଅଛି। କୌଣସି ପ୍ରଜା ରାଜାଙ୍କୁ ବା ଶୂଦ୍ର ବ୍ରାହ୍ମଣକୁ ଅପମାନିତ କଲେ ଚାଣକ୍ୟଙ୍କ ଅର୍ଥଶାସ୍ତ୍ରରେ ତାର ଜିଭ କାଟି ଦେବାର ଦଣ୍ଡ ଥିଲା। ସାରଳା ମହାଭାରତରେ ଅଛି ଯେ କୁକୁରର ଭୁକିବା ବନ୍ଦ କରିବା ପାଇଁ ଦ୍ୱାରା ଏକଲବ୍ୟ ସାତଟି ତୀର ମାରି ତାର ପାଟିକୁ ବନ୍ଦ କରି ଦେଇଥିଲେ। ଆମର ସଭାମାନଙ୍କରେ କିନ୍ତୁ ସଭାପତିଙ୍କ ପାଖରେ ଏପରି କୌଣସି ଅସ୍ତ୍ର ନାହିଁ ଯାହାଦ୍ୱାରା ଭୁକୁଥିବା ସଭାସଦଙ୍କ ବୋବାଳିକୁ ବନ୍ଦ କରି ଦେବ।

ଜିଭ କାଟି ଓ ସେନସର କରି ମଧ୍ୟ ପ୍ରତିବାଦକୁ ବନ୍ଦ କରାଯାଇ ପାରେ ନାହିଁ। ଚୁପ ରହି ପ୍ରତିବାଦ କରିବାର କେତେକ ଉପାୟ ହେଲା, ମୁହଁରେ ତୁଣ୍ଡି ବାନ୍ଧି ପାଟିକୁ ବନ୍ଦ କରିବା, ଜାମାର ହାତରେ କଳାପଟି ବାନ୍ଧିବା, ଅନ୍ଧାରରେ ମହମବତୀ ଶୋଭାଯାତ୍ରା କରିବା ଇତ୍ୟାଦି। ଇନ୍ଦିରା ଗାନ୍ଧୀଙ୍କ ଏମର୍ଜେନ୍ସି ସମୟରେ କେତେକ ଖବର କାଗଜ ସଂପାଦକୀୟ ସ୍ତମ୍ଭରେ ଶୂନ୍ୟସ୍ଥାନ ଛାଡ଼ି ଦେଇ ପ୍ରତିବାଦ ଜଣାଇଥିଲେ। ସିପାହୀ ବିଦ୍ରୋହ ସମୟରେ ରୁଟି ବାଣ୍ଟି ସ୍ଥାନରୁ ସ୍ଥାନକୁ ବିଦ୍ରୋହର ବାର୍ତ୍ତା ପଠାଯାଉଥିଲା।

ଏହାର ତାତ୍ପର୍ଯ୍ୟ ହେଲା ଯେ ମୌନ ରହି ମଧ୍ୟ ଅନେକ କଥା ପ୍ରସାର କରାଯାଇ ପାରେ। ନାଟକରେ ମାଇମ୍ ବା ମୂକ ଅଭିନୟର ବିଶେଷ ସ୍ଥାନ ଅଛି। ମଞ୍ଚ ଉପରେ ସଂଳାପ କହିବା ବେଳେ ତା ମଝିରେ ସାମୟିକ ବିରତି ଏକ ପ୍ରଭାବଶାଳୀ ପ୍ରସଙ୍ଗ। ଭଲ ପାଇବା ବେଳେ କଥାବାର୍ତ୍ତାର ପ୍ରୟୋଜନ ହୁଏ ନାହିଁ, ସେଥିପାଇଁ ଜନ୍ ଡନ୍‌ଙ୍କ କବିତାରେ ପ୍ରେମିକାକୁ ପ୍ରେମିକ କହୁଛି (ରବୀନ୍ଦ୍ରନାଥଙ୍କର ସୁନ୍ଦର ଅନୁବାଦରେ) : ଦୋହାଇ ତୋଦେର ଏକଟୁକୁ ଚୁପ କର, ଭାଲୋବାସିବାରେ ଦେ ଆମାରେ ଅବସର।

ମୌନ ରହି ନିଜକୁ ଅନ୍ୟ ଭାବରେ ପ୍ରକାଶ କରାଯାଇପାରେ, ଯଥା କାନ୍ଦିବା। କିଛି ନ କହି, ଚୁପ ରହି କେବଳ କାନ୍ଦିବା ଦ୍ୱାରା ମଧ୍ୟ ପ୍ରତିବାଦ ଜଣାଇ ଦିଆଯାଇପାରେ। ୧୯୦୩ରେ ଉତ୍କଳ ସମ୍ମିଳନୀର ପ୍ରଥମ ଦିନ ମଧୁବାବୁ ଗୋପବନ୍ଧୁଙ୍କୁ ବାହାରି ଯିବାକୁ କହିଲେ କାରଣ ସେ ଓଡ଼ିଶାକୁ ମଧ୍ୟପ୍ରଦେଶ ସହିତ ମିଶାଇବାକୁ ମତ ଦେଇଥିଲେ। ମଧୁବାବୁ ରାଗିଯାଇ ଗୋପବନ୍ଧୁଙ୍କୁ କହିଲେ, ତୁମେ ବାହାରି ନଗଲେ ମୁଁ ଭଲଣ୍ଟିଅର ଦ୍ୱାରା ତୁମକୁ ବାହାର କରିଦେବି, ଏବଂ ଗୋପବନ୍ଧୁ କାନ୍ଦି କାନ୍ଦି ସଭାରୁ ଚାଲିଗଲେ। ଗୋପବନ୍ଧୁଙ୍କର କାନ୍ଦ ନିଶ୍ଚୟ ତାଙ୍କର କୌଣସି ମୌଖିକ ପ୍ରତିବାଦରୁ ବେଶି ଶକ୍ତିଶାଳୀ ଥିଲା।

କାନ୍ଦିବା ଭଳି କଥା ନ କହି ବିଭିନ୍ନ ଭାବରେ ନିଜର ଅଭିବ୍ୟକ୍ତି ଜଣାଇବା ସମ୍ଭବ। କିଛି ନ କହି ପାଟି ନ ଖୋଲି ଅନେକ କଥା ଜଣାଇ ଦିଆଯାଇପାରେ ନାକ ଫୁଲାଇ, ହାତ ଛିଞ୍ଚାଡ଼ି, ଭ୍ରୂକୁଞ୍ଚ କରି, ଦାନ୍ତ ନିକୁଟି, ମୁହଁ ବୁଲାଇ। ଗଳା ଖଙ୍କାର ଦେଇ ନିଜର ଉପସ୍ଥିତିକୁ ସାବ୍ୟସ୍ତ କରିହୁଏ। ଆଖି ଏଥିପାଇଁ ଏକ ଅତି ପ୍ରୟୋଜନୀୟ ମାଧ୍ୟମ ଯାହାକୁ ତରାଟି ହୁଏ, ଢଳ ଢଳ କରି ହୁଏ, ଟେକି ହୁଏ, ଖୋସି ହୁଏ, ଦେଖାଇ ହୁଏ। କବିତାର ଭାଷାରେ,

ଯେତେ କଥା କହିବାର ଅଛି ସବୁ– ପୂର୍ବରାଗ, ପ୍ରେମ, ମୃତ୍ୟୁ, ପୁନର୍ଜନ୍ମ ଇତ୍ୟାଦି ଇତ୍ୟାଦି– କେବଳ ଆଖିରେ ଥରେ କହି ଦିଅ କେବଳ ଆଖିରେ।

ଫକୀରମୋହନଙ୍କ ମାମୁ ଉପନ୍ୟାସରେ ବିବାହ ପ୍ରସ୍ତାବ ଆଲୋଚନା ହେଉଛି ଏବଂ ଜାଣିବା ଦରକାର ଏ ପ୍ରସ୍ତାବରେ ଝିଅର ମତ କଣ। ଝିଅର କିନ୍ତୁ ପଳାଇବାକୁ ବାଟ ନାହିଁ। ସେ ପୋଷା ବିରାଡ଼ିର ଲାଞ୍ଜ କାନ ଧରି ଭିଡୁଛି। ଧୀରେ ଧୀରେ ଚାପୁଡ଼ା ମାରୁଛି, କର୍ଣ୍ଣ ମର୍ଦ୍ଦନ କରୁଚି। ଏ ସବୁ ମଧ୍ୟ ଏକ ପ୍ରକାର ଅଭିବ୍ୟକ୍ତି ଯାହା ଦେଖି ତାର ଧାଈ ମା ଠିକ୍ ବୁଝି ପାରିଲେ ଯେ ଉପସ୍ଥିତ ପ୍ରସ୍ତାବ ସମ୍ବନ୍ଧରେ ଚାନ୍ଦମଣିର ସମ୍ମତି ଅଛି।

## ୨. ଅଳ୍ପକଥା

ନୀରବତାରୁ ଅଳ୍ପକଥାକୁ ଆସିଲେ ଆମେ ସେଇ ଭଳି ଦେଖିବା ଯେ ସୂକ୍ଷ୍ମରେ ଅନେକ ଗୁରୁତର କଥା କୁହାଯାଇପାରୁଛି। ବ୍ୟାବସାୟିକ ବିଜ୍ଞାପନରେ ଏହାର ବ୍ୟବହାର ପ୍ରବଳ, ଯଥା କୋକାକୋଲାର 'ଦ ରିଅଲ୍ ଥିଙ୍ଗ୍' । ନିର୍ବାଚନ ବେଳେ ରାଜନୈତିକ ନେତାମାନେ ଏ ଭଳି ଛୋଟ ବାର୍ତ୍ତାର ପ୍ରୟୋଗ କରିଥାନ୍ତି, ଯଥା ବାରାକ ଓବାମାଙ୍କ 'ୟେସ୍, ୱି କ୍ୟାନ୍' ବା ମମତା ବାନାର୍ଜୀଙ୍କର 'ପରିବର୍ତ୍ତନ'। ଗାନ୍ଧୀଙ୍କର ସ୍ଲୋଗାନ ଥିଲା 'କ୍ୱିଟ୍ ଇଣ୍ଡିଆ', ଯାହାର ଅନୁକରଣରେ ଇନ୍ଦିରା ଗାନ୍ଧୀଙ୍କ ସମୟରେ ଏକ ଅଦ୍ଭୁତ ନାରା ତିଆରି ହୋଇଥିଲା 'କ୍ୱିଟ୍ ପଭର୍ଟି'। ସେହିପରି ଭାବଦ୍ୟୋତକ ସ୍ଲୋଗାନମାନ ଥିଲା ସୁଭାଷ ବୋଷଙ୍କର 'ଦିଲ୍ଲୀ ଚଲୋ' ବା ତିଳକଙ୍କର 'ସ୍ୱରାଜ ମୋର ଜନ୍ମଗତ ଅଧିକାର' ।

ସାହିତ୍ୟ ଶବ୍ଦକୁ ନେଇ ଗଢ଼ା ହେଉଥିବାରୁ ଏଥିରେ ନୀରବତା ନୁହେଁ, ଅଳ୍ପ ଶବ୍ଦର ବ୍ୟବହାର କଥା ହିଁ କୁହାଯାଇପାରିବ। କବିତାର କଳେବର ଛୋଟ ହୋଇ ଥିବାରୁ ଏଥିରେ ଅଳ୍ପ ଶବ୍ଦ ମାଧ୍ୟମରେ ଅନେକ କଥା କହିବାକୁ ହୁଏ। ଏଥିରେ ସହାୟକ ହୁଏ ବ୍ୟଂଜନା ବା ଶବ୍ଦର ଗୂଢ଼ାର୍ଥ ଓ ବ୍ୟଙ୍ଗାର୍ଥ ପ୍ରକାଶକ ଗୁଣ। ବ୍ୟଂଜନାର ଏକ ହାସ୍ୟୋଦ୍ଦୀପକ ଉଦାହରଣ ହେଲା ଜଣେ ପ୍ରସିଦ୍ଧ ଲେଖକ ଓ ତାଙ୍କ ପ୍ରକାଶକଙ୍କ ଭିତରେ ଟେଲିଗ୍ରାମ ବିନିମୟ। ଭିକ୍ଟର ହ୍ୟୁଗୋ କୁଆଡ଼େ ପାରିସରୁ ବାହାରକୁ ଯାଇଥିବା ବେଳେ ତାଙ୍କର ପ୍ରକାଶକଙ୍କୁ ଟେଲିଗ୍ରାମ ପଠାଇଲେ, '?'। ତାଙ୍କୁ ଉତ୍ତର ଆସିଲା, '!'। ଏହାର ଗୂଢ଼ ଅର୍ଥ ହେଲା, ମୋର 'ଲେ ମିଜରାବଲ' ବହି କେମିତି ବିକ୍ରି ହେଉଛି? ବହୁତ ବଢ଼ିଆ!

ଇଂରେଜୀରେ ମଜାର ଛୋଟ କବିତା ଓ ଗଳ୍ପର ଅନେକ ଉଦାହରଣ ଅଛି। ସବୁଠାରୁ ଛୋଟ କବିତା କୁହାଯାଏ : ଆଡାମ୍, ହ୍ୟାଡ୍ ଦେମ୍। କିମ୍ବା ହାଉ ଅଡ୍, ଅଫ୍ ଗଡ୍, ଟୁ ଚୁଜ୍, ଦ ଜିଉଜ୍। ହେମିଂୱେ ଲେଖିଥିବା ବୋଲି କୁହାଯାଉଥିବା କ୍ଷୁଦ୍ରତମ ଗଳ୍ପ : ବିକ୍ରି ପାଇଁ, ଛୁଆର ଜୋତା, ବ୍ୟବହାର ହୋଇନାହିଁ। ଏଇ ଛ'ଟି ଶବ୍ଦ ପାଇଁ ସେ କୁଆଡ଼େ ଦଶ ଡଲାରର ବାଜି ଜିତିଥିଲେ। ସେହିଭଳି କ୍ଷୁଦ୍ରତମ ଭୂତ ଗଳ୍ପ ହେଲା : ରାତି ଅଧରେ

କବରଖାନାରେ ବସିଥିବା ଜଣେ ସାଙ୍ଗ କହିଲା, ମୁଁ ଭୂତରେ ବିଶ୍ୱାସ କରେନା, ଅନ୍ୟ ସାଙ୍ଗଟି କହିଲା, ମୁଁ କିନ୍ତୁ କରେ ଏବଂ ନିଜେ ଉଭେଇ ଗଲା। କ୍ଷୁଦ୍ରତମ ଭୟ ଉଦ୍ରେକକାରୀ ଗଳ୍ପ : ପରମାଣୁ ଯୁଦ୍ଧରେ ସମଗ୍ର ପୃଥିବୀ ବିଧ୍ୱସ୍ତ ହୋଇଯିବା ପରେ ଦୈବକ୍ରମେ ଏକମାତ୍ର ଜୀବିତ ବ୍ୟକ୍ତିଟି ବନ୍ଦ ଘରେ ଏକୁଟିଆ କୋଠରି ଭିତରେ ବସିଥିଲା, ହଠାତ୍ କବାଟରେ କରାଘାତ ହେଲା।

ଯଦିଓ କବିତା କେତେ ଦୀର୍ଘ ହେବ ସେ ବିଷୟରେ କୌଣସି ନୀତି ନିୟମ ନାହିଁ, ହାଇକୁ, କ୍ଲରିହିଉ, ଲିମେରିକ ଇତ୍ୟାଦିର ନିର୍ଦ୍ଧାରିତ ଦୈର୍ଘ୍ୟ ଅଛି। ଜାପାନୀ ହାଇକୁର ଗୁଣ ହେଲା ତା'ର ସଂକ୍ଷିପ୍ତତା। ଏହାର ନିୟମ ଅନୁସାରେ କବିତାରେ ରହିବ ତିନିଟି ଧାଡ଼ି ଓ ସତରଟି ସିଲେବଲ ବା ଶବ୍ଦାଂଶ। ସପ୍ତଦଶ ଶତାବ୍ଦୀର ଜାପାନୀ କବି ମାତ୍ସୁୟୋ ବାଶୋଙ୍କର ଗୋଟିଏ ପ୍ରସିଦ୍ଧ ହାଇକୁର ଅନୁବାଦ ଏପରି ହେବ : ପୁରୁଣା ପୋଖରୀ, ଡେଇଁ ପଡ଼ିଲା ବେଙ୍ଗ, ଝପ୍। ରବୀନ୍ଦ୍ରନାଥ ଠାକୁର ଏହି ହାଇକୁର ବଙ୍ଗଳା ଅନୁବାଦ କରିଥିଲେ।

ସେହିପରି କ୍ଲରିହିଉ ହେଉଚି ଏଡମଣ୍ଡ କ୍ଲରିହିଉ ବେଣ୍ଟଲି(୧୮୭୪-୧୯୫୬) ଆରମ୍ଭ କରିଥିବା ଚାରିଧାଡ଼ିର ମଜା କବିତା ଯାହାର ବିଷୟବସ୍ତୁ କୌଣସି ପ୍ରସିଦ୍ଧ ବ୍ୟକ୍ତି ବିଶେଷ। ଓଡ଼ିଆରେ ଏହାର ଉଦାହରଣ ହେବ : ନନ୍ଦ କିଶୋର ବଳ, ନପାଇଲେ ଥଳକୂଳ, ଭୁଲିଗଲେ କାଉ କଥା, ଲେଖିଲେ କନକଲତା।

ଛୋଟ କବିତାର ଏକ ପ୍ରସିଦ୍ଧ ଉଦାହରଣ ହେଉଛି ଏଜରା ପାଉଣ୍ଡଙ୍କର 'ଇନ୍ ଏ ଷ୍ଟେଶନ ଅଫ୍ ଦ ମେଟ୍ରୋ'। ଦୁଇଧାଡ଼ିର ସଂପୂର୍ଣ୍ଣ କବିତାଟି ହେଲା : ଦି ଆପାରିଶନ୍ ଅଫ୍ ଦିଜ ଫେସେସ୍ ଇନ୍ ଦ କ୍ରାଉଡ୍ / ପେଟାଲ୍ସ୍ ଅନ୍ ଏ ଓ୍ୱେଟ ବ୍ଲାକ୍ ବାଓ। ଏହାର ଓଡ଼ିଆ ହେବ : ଭିଡ଼ରେ ଏଇ ମୁହଁମାନଙ୍କର ଅପଛାୟା/ ଓଦା କଳା ଡାଳ ଉପରେ ପାଖୁଡ଼ା। କବିତାଟିକୁ ପାଉଣ୍ଡ ସେତେବେଳେ ପ୍ରବର୍ତ୍ତନ କରିଥିବା ଇମେଜିଷ୍ଟ ଶୈଳୀରେ ଲେଖିଥିଲେ ୧୯୧୩ରେ। ତାଙ୍କ ନିଜ କହିବା ଅନୁସାରେ କବିତାଟିର ପ୍ରଥମ ଖସଡ଼ାଥିଲା ୩୧ ଧାଡ଼ିର । ଏହାକୁ ସେ ପ୍ରତ୍ୟାଖ୍ୟାତ କରିଦେଲେ, କାରଣ ଏଇଟି ଥିଲା ତାଙ୍କ ମତରେ ଦ୍ୱିତୀୟ ସ୍ତରର। ଛ ମାସ ପରେ ସେ ତାକୁ ପନ୍ଦର ଧାଡ଼ିର କରିଦେଲେ ଏବଂ ଆଉ ବର୍ଷେ ପରେ ଦୁଇ ଧାଡ଼ିର।

ଏଜରା ପାଉଣ୍ଡଙ୍କର ନାଁ ଆଉ ଗୋଟିଏ ଛୋଟ କବିତା ସହିତ ଜଡ଼ିତ। ଏହାର ଲେଖିକା ପ୍ରାଚୀନ କାଳର ସବୁଠାରୁ ପ୍ରସିଦ୍ଧ ଗ୍ରୀକ କବୟିତ୍ରୀ ସାଫୋ(ଅନୁମାନିକ ୬୧୦-୫୮୦ ଖ୍ରୀଷ୍ଟପୂର୍ବ)। ତାଙ୍କର ମାତ୍ର ଦୁଇଟି କବିତା ସଂପୂର୍ଣ୍ଣ ଭାବରେ ମିଳିଛି, ବାକି ସବୁ ଛିଣ୍ଡା ପାପିରସ୍ ପତ୍ରରେ ଖଣ୍ଡ ଖଣ୍ଡ ହୋଇ। ୧୯୧୬ରେ ପ୍ରକାଶିତ ତାଙ୍କର 'ପାପିରସ' ବହିରେ ଏଜରା ପାଉଣ୍ଡ ଛିଣ୍ଡା ଅଂଶକୁ ଯୋଡ଼ି ତିଆରି କରିଥିବା ଚାରି ଶବ୍ଦ ବିଶିଷ୍ଟ ତିନିଧାଡ଼ିର କବିତାଟି ଏପରି : ବସନ୍ତ.../ ଅତି ଦୀର୍ଘ.../ ଗଙ୍ଗୁଲା...। ପାଉଣ୍ଡ ଏ କବିତାର ବ୍ୟାଖ୍ୟା କରିଛନ୍ତି : ଯେଉଁ ଋତୁରେ ପ୍ରିୟଜନର ବିରହ ସବୁଠାରୁ ଗଭୀର

ଭାବରେ ଅନୁଭୂତ ହୁଏ ସେହି ବସନ୍ତ ସମୟରେ ଗଙ୍ଗୁଲା ଅନୁପସ୍ଥିତ। ସବୁ କିନ୍ତୁ ଫେରିଆସେ। ତମେ କେଉଁଠାରେ ଅଛ ଗଙ୍ଗୁଲା ?

ଇଂରେଜୀ କବିତାରେ କେତୋଟି ବିଭାଗ ଅଛି ଯାହାର ଧାଡ଼ି ସଂଖ୍ୟାକୁ ସ୍ଥିର କରାଯାଇଛି, ଯଥା ଲିମେରିକ(ପାଞ୍ଚ ଧାଡ଼ି) ଓ ସନେଟ୍ (ଚଉଦ ଧାଡ଼ି)। ଏତଦ୍ବ୍ୟତୀତ କବିତାର ଆକାର ଓ ଦୈର୍ଘ୍ୟ ବିଷୟରେ କୌଣସି ନିୟମ ନାହିଁ। ତେବେ କିଛି କବି ଯଥା ଉଇଲିଅମ୍ କାର୍ଲସ ଉଇଲିଆମ୍ସ(୧୮୮୩-୧୯୬୩), ଏମିଲି ଡିକିନଶନ(୧୮୩୦-୧୮୮୬) ଅନେକ ଛୋଟ କବିତା ଲେଖିଛନ୍ତି। ବଙ୍ଗଳାରେ ରବୀନ୍ଦ୍ରନାଥ ଠାକୁରଙ୍କର ଅନେକ ଛୋଟ ଛୋଟ କବିତା ଅଛି। ଏଥିରୁ ଅନେକ ସେ ତାଙ୍କୁ ଭେଟିବାକୁ ଆସୁଥିବା ଦର୍ଶନାର୍ଥୀଙ୍କ ଅଟୋଗ୍ରାଫ ବହିରେ ଲେଖୁଥିଲେ ଯାହା ପରବର୍ତ୍ତୀ ସମୟରେ ତାଙ୍କ 'କ୍ଷଣିକା' ବହିରେ ସଂକଳିତ ହୋଇଥିଲା। ଆମ ଓଡ଼ିଆରେ ଏ ଭଳି କ୍ଷୁଦ୍ର କବିତାର ବିଶେଷ ଉଦାହରଣ ନାହିଁ।

କବିତା ଭଳି ଗଦ୍ୟ ରଚନାର ଦୈର୍ଘ୍ୟ ବିଷୟରେ ମଧ୍ୟ କୌଣସି ନୀତି ନିୟମ ନାହିଁ। କ୍ଷୁଦ୍ରଗଳ୍ପ ବିଷୟରେ କୁହାଯାଏ ଯେ ଏହା ଏପରି ହେବା ଉଚିତ ଯାହାକୁ ଏକା ଥରକେ ବସି ପଢ଼ା ଯାଇପାରିବ। ଅନ୍ୟ ଏକ ବିଚାର ଅନୁସାରେ କ୍ଷୁଦ୍ରଗଳ୍ପର ଦୈର୍ଘ୍ୟ ୧୦୦୦ରୁ ୨୦୦୦୦ ଶବ୍ଦ ମଧ୍ୟରେ ରହିବା ଉଚିତ। ତା ଠାରୁ ଛୋଟ ଆକାରର ହେଲେ ତାକୁ କ୍ଷୁଦ୍ର କ୍ଷୁଦ୍ର ଗଳ୍ପ କୁହାଯିବ। ଆମ ଓଡ଼ିଆରେ ଏ ଭଳି କ୍ଷୁଦ୍ର କ୍ଷୁଦ୍ର ଗଳ୍ପକୁ ମିନି ଗଳ୍ପ ଆଖ୍ୟା ଦିଆଯାଇଛି।

ଲେଖାର ଦୈର୍ଘ୍ୟ କମ କରିବାର ଗୋଟିଏ ମୁଖ୍ୟ କାରଣ ହେଉଛି ଆମର ମନୋଯୋଗିତାର ଅବଧି ବା ଆଟେନଶନ ସ୍ପାନ। ଗବେଷଣାରୁ ଜଣାଯାଇଛି ଯେ ଏହି ଅବଧିଟି କ୍ରମାଗତ କମିବାରେ ଲାଗିଛି। ଆଗରୁ ଟେଲିଭିଜନ ବିଜ୍ଞାପନରେ ଦେଢ଼ ମିନିଟ୍‌ର ସ୍ପଟ ଦିଆ ଯାଉଥିଲା। ଦଶ ବର୍ଷ ତଳେ ତାହା ତିରିଶ ସେକେଣ୍ଡ ହେଲା ଓ ବର୍ତ୍ତମାନ ମାତ୍ର ପନ୍ଦର ସେକେଣ୍ଡ। ମନୋବୈଜ୍ଞାନିକଙ୍କ ମତରେ ମଣିଷର ହାରାହାରି ମନୋଯୋଗିତାର ଅବଧି କୋଡ଼ିଏ ମିନିଟ୍ ଏବଂ ଭିଡ଼ିଓ ପାଇଁ ମାତ୍ର ଗୋଟିଏ ମିନିଟ। ତେଣୁ ପାଞ୍ଚ ମିନିଟର ଭିଡିଓ ଅପେକ୍ଷା ନବେ ସେକେଣ୍ଡର ଭିଡିଓ ବେଶି ପ୍ରଭାବଶାଳୀ, କାରଣ ଷାଠିଏ ସେକେଣ୍ଡ ପରେ ଦର୍ଶକ ବୋର ହେବାକୁ ଆରମ୍ଭ କରେ। ବୋଧହୁଏ ଏହି କାରଣରୁ ଏକ ନୂଆ ପ୍ରକାରର ଲେଖାର ଉଦ୍‌ଭବ ହୋଇଛି, ସେଲ୍ ଫୋନ୍ ଉପନ୍ୟାସ, ଯାହାକୁ ଫୋନ୍‌ର ଛୋଟ ପର୍ଦାରେ ପଢ଼ି ହେବ। ଏହି ପର୍ଦାରେ ମାତ୍ର ୧୪୦ଟି ଅକ୍ଷର ରହିପାରେ ଯାହା ପଢ଼ିବାକୁ ଅତି ଅଳ୍ପ ସମୟ ଲାଗିବ। ଜାପାନର ଝିଅମାନଙ୍କ ମଧ୍ୟରେ ଏହା ଅତ୍ୟନ୍ତ ଲୋକପ୍ରିୟ ଏବଂ ସେଠାରେ ଏ ଭଳି ହଜାର ହଜାର ସେଲ୍ ଫୋନ ଉପନ୍ୟାସ ଉପଲବ୍ଧ।

କ୍ଷୁଦ୍ରଗଳ୍ପକୁ ଅଳ୍ପ ସମୟରେ ପଢ଼ା ଯାଇପାରୁଥିବାରୁ ଧାରଣା ହୋଇପାରେ ଯେ ଏଇଟି ସାହିତ୍ୟର ଲୋକପ୍ରିୟ ବିଭାଗ ହେବ, କିନ୍ତୁ ଏପରି ହୋଇନାହିଁ। ସାହିତ୍ୟରେ ମୋଟା ଉପନ୍ୟାସର ଆଦର ହିଁ ବେଶି। ଏହାର ଉତ୍କୃଷ୍ଟ ଉଦାହରଣ ବିକ୍ରମ ସେଠଙ୍କର ୧୯୯୩ରେ

ପ୍ରକାଶିତ 'ଏ ସୁଟେବଲ ବୟ' ଯାହାର ୧୩୪୯ ପୃଷ୍ଠାରେ ଅଛି ଛ ଲକ୍ଷ ଶବ୍ଦ ଓ ଯାହାର ଓଜନ ଦେଢ଼ କିଲୋ। କେବଳ କ୍ଷୁଦ୍ରଗଳ୍ପର ଲେଖକଙ୍କୁ କେହି ବିଶେଷ ପଚାରନ୍ତି ନାହିଁ। ତେବେ ୨୦୧୩ରେ ପ୍ରଥମ ଥର ପାଇଁ ଜଣେ କ୍ଷୁଦ୍ରଗଳ୍ପ ଲେଖିକା ଆଲିସ ମନରୋ ନୋବେଲ ପ୍ରାଇଜ ପାଇଲେ। ଏହା ଗଳ୍ପ ଲେଖକଙ୍କ ପାଇଁ ନିଶ୍ଚୟ ଏକ ସୁଖର ବିଷୟ।

ଗୋପୀନାଥ ମହାନ୍ତିଙ୍କୁ ତାଙ୍କର ଏକ ଉପନ୍ୟାସ ବିଷୟରେ ପଚାରିବାରେ ତାଙ୍କର ଉତ୍ତର ଥିଲା, ଅଳ୍ପ ଶବ୍ଦରେ ବେଶି କଥା କହିବା ଏହାର ଉଦ୍ଦେଶ୍ୟ। ଏହା ହିଁ ସବୁ ଲେଖକଙ୍କ ଆଦର୍ଶ ଓ ଲକ୍ଷ୍ୟ ହେବା ଉଚିତ।

*ଫେବ୍ରୁୟାରୀ, ୨୦୧୪*

# ସାହିତ୍ୟରେ ସୁଭାଷିତ

ସୁଭାଷିତ – ସଂ. ବି। ସୁନ୍ଦର କଥା, ସୂକ୍ତି(ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ)

ମିଲଟନ୍‌ଙ୍କର 'ପାରାଡାଇଜ ଲଷ୍ଟ' ପଢ଼ିବା ପରେ ବୈଜ୍ଞାନିକ ନିଉଟନ ପଚାରିଥିଲେ, ଏ ବହି କି ସତ୍ୟ ଉପସ୍ଥାପନା କରୁଛି ? ଏଥିରୁ କଣ ପ୍ରମାଣିତ ହେଲା ? ଏକଥା ଅର୍ଥ ହେଲା ଯେ ଆମେମାନେ ସବୁବେଳେ ସାହିତ୍ୟରୁ କୌଣସି ସତ୍ୟ, ସୁଭାଷିତ, ସଦୁକ୍ତି ବା ନୀତିକଥା ଆଶା କରିଥାଉ। ଗୋଟିଏ ଗଳ୍ପ ପଢ଼ିବା ପରେ ଆଶା କରାଯାଏ ଯେ ଆମକୁ ଏଥିରୁ କିଛି ଉପଦେଶ ମିଳିବ, ଯଥା, ଅତି ଲେମ୍ବୁ ଚିପୁଡ଼ିଲେ ପିତା, କିମ୍ବା ଅରକ୍ଷିତକୁ ଦଇବ ସାହା, ଅଥବା, କୁସୁମ ପରଶେ ପଟ ନିସ୍ତରେ। ପିଲାମାନଙ୍କ ପାଠ ଶେଷରେ ପ୍ରଶ୍ନ ଥାଏ, ଏ ଗଳ୍ପର 'ମୋରାଲ' ବା ନୀତି ଶିକ୍ଷା କଣ ?

ଆମର ପ୍ରାଚୀନ ସାହିତ୍ୟରେ ସୁଭାଷିତର ଉଦାହାରଣ ପ୍ରଚୁର। ହିତୋପଦେଶ, ପଞ୍ଚତନ୍ତ୍ର ବା ଏସପ୍‌ଙ୍କ ନୀତି କଥାର ପ୍ରତ୍ୟେକ ଗଳ୍ପରୁ ଆମକୁ କିଛି ଶିକ୍ଷା ମିଳିଥାଏ। ଏପରି ବୋଧ ହୁଏ ଯେ ପିଲାମାନଙ୍କୁ ନୀତିଶିକ୍ଷା ଦେବା ପାଇଁ ହିଁ ଗଳ୍ପଟି ତିଆରି ହୋଇଥିଲା। ଏହା ବ୍ୟତୀତ ବିଭିନ୍ନ କାବ୍ୟ କବିତା ନାଟକରେ ମଧ୍ୟ ଠାଏ ଠାଏ ସଦୁକ୍ତିମାନ ରହିଥାଏ। ଦ୍ୱାଦଶ ଶତାବ୍ଦୀରେ ବିଦ୍ୟାଧର ଏ ଭଳି ପଦମାନଙ୍କର ଏକ ସଂକଳନ କରିଥିଲେ ଯାହାର ନାଁ ଥିଲା 'ସୁଭାଷିତ ରତ୍ନକୋଷ'। ଏଥିରେ ପଞ୍ଚମ ଶତାବ୍ଦୀରୁ ଆରମ୍ଭ କରି ତାଙ୍କ ସମୟ ପର୍ଯ୍ୟନ୍ତ ଲେଖାଯାଇଥିବା ବିଭିନ୍ନ ପଂକ୍ତି ନିଆ ଯାଇଥିଲା ଏବଂ ଲେଖକମାନଙ୍କ ମଧ୍ୟରେ ଥିଲେ ଭର୍ତ୍ତୃହରି, ଭବଭୂତି, ରାଜଶେଖର ଇତ୍ୟାଦି। ସୁଭାଷିତ ବିଷୟରେ କୁହାଯାଇଥିଲା, ପୃଥିବ୍ୟାଂ ତ୍ରିଣି ରତ୍ନାନି ଜଳମନ୍ନମ ସୁଭାଷିତମ : ପୃଥିବୀରେ ତିନୋଟି ରତ୍ନ, ଜଳ ଅନ୍ନ ଓ ସୁଭାଷିତ।

ଆମ ଓଡ଼ିଆ ଭାଗବତରେ ଏଭଳି ଉପଦେଶମାନ ବିଞ୍ଚି ହୋଇ ରହିଛନ୍ତି, ଯଥା, ଅମୃତ ବିନୟ ବଚନ, କହି ତୋଷିବ ପ୍ରାଣୀ ମନ। ସତ୍ୟ କହିବ ନିତ୍ୟ ତୁଣ୍ଡେ, କେବେ ହେଁ ନଥିବ ପାଷଣ୍ଡେ। ନାରୀ ସଙ୍ଗମ ରତୁମତେ, କେବଳ ପୁତ୍ର ଜନ୍ମ ଅର୍ଥେ। ଇତ୍ୟାଦି। ପରବର୍ତ୍ତୀ ସମୟରେ ଆମର ମଧୁସୂଦନ ରାଓ ମଧ୍ୟ ଠିକ ସେହିଭଳି ଭାଷାରେ ଲେଖିଛନ୍ତି : ତେଜିଣ ହିଂସା ଅହଂକାର, ଅହିଂସା ଧର୍ମ କର ସାର। ପର ଦୁଃଖରେ ହୁଅ ଦୁଃଖୀ, ପର ସୁଖରେ ହୁଅ ସୁଖୀ। ଇତ୍ୟାଦି।(ଦୟା କବିତା, ବାଳବୋଧ)

ହିତୋପଦେଶ ଓ ପଞ୍ଚତନ୍ତ୍ରର ପଶୁପକ୍ଷୀଙ୍କ ଗଳ୍ପରୁ ତାର ନୀତିଶିକ୍ଷା ବାହାର କରିବା ସହଜ, କିନ୍ତୁ ସମସ୍ୟା ହୁଏ ଯେତେବେଳେ ଆମେ କୌଣସି ସାହିତ୍ୟିକ ଲେଖାରୁ ତାର ହିତ ଉପଦେଶ ବାହାର କରିବାକୁ ଚେଷ୍ଟା କରୁ। ଉଦାହରଣ ସ୍ୱରୂପ ଓଡ଼ିଆର ପ୍ରଥମ ଗଳ୍ପ ଫକୀରମୋହନ ସେନାପତିଙ୍କର 'ରେବତୀ'କୁ ନିଆଯାଉ। ଏ ଗଳ୍ପରୁ ଝିଅଙ୍କର ପାଠ ପଢ଼ା ବିଷୟରେ ଲେଖକ କଣ କହିବାକୁ ଚାହାନ୍ତି ବା କି ନୀତିଶିକ୍ଷା ମିଳୁଛି? ଗଳ୍ପର ବୁଢ଼ୀ ଜେଜୀମା ରେବତୀକୁ କହୁଛି, "ପାଠପଢ଼ା କଣ ଲୋ? ମାଇକିନିଆ ଝିଅଟା, ପାଠ କଣ?" ପୁଅ ଶ୍ୟାମବନ୍ଧୁ ମରିବା ପରେ ବୁଢ଼ୀ ମନରେ ସିଦ୍ଧାନ୍ତ କଲା, ରେବତୀ ପାଠ ପଢ଼ିବାରୁ ପୁଅ ଗଲା, ବୋହୂ ମଲା, ହଳିଆ ଛାଡ଼ିଗଲା, ବଳଦ ବିକାଗଲା, ଜମିଦାର ଘର ଗାଈ ବାନ୍ଧି ଘେନି ଗଲା।

ଏଥିରୁ ଏପରି ଗୋଟିଏ ନୀତି ଶିକ୍ଷା ବାହାର କରାଯାଇଛି : 'ରେବତୀ'ରେ ଫକୀରମୋହନ ଜୋର ଦେଇ ଦର୍ଶାଇଛନ୍ତି କିପରି ନାରୀଶିକ୍ଷା ଆବଶ୍ୟକ, ଏବଂ ଏହାର ଅଭାବରେ କି ପ୍ରକାର ଦୁର୍ବିପାକ ଘଟିପାରେ। (ଜନ ବୋଲ୍‌ଟନ୍, ଫକୀରମୋହନ ସେନାପତି, ଓଡ଼ିଶା ସାହିତ୍ୟ ଏକାଡେମି, ୧୯୯୩, ପୃଷ୍ଠା ୩୫୨)

ସେହି ଗଳ୍ପରୁ ଏକ ଓଲଟା ନୀତିଶିକ୍ଷା ମଧ୍ୟ ବାହାର କରାଯାଇଛି : ସ୍ୱୟଂ ସେନାପତି ମଧ୍ୟ ପ୍ରଚଳିତ ସଂସ୍କାରର ବାହାରକୁ ଯାଇ ନ ପାରି ସତେ ଯେମିତି ରେବତୀର ପାଠପଢ଼ାର ଶାସ୍ତି ହିସାବରେ ତାର ପରିବାରକୁ ନଷ୍ଟଭ୍ରଷ୍ଟ କରି ଦେଇଛନ୍ତି ଏବଂ ରେବତୀ ନିଜର ଜୀବନ ଦେଇ ତା ପାପର ପ୍ରାୟଶ୍ଚିତ କରିଛି। (ହେମନ୍ତ କୁମାର ଦାସ, ଓଡ଼ିଆ ବଙ୍ଗଳା ହିନ୍ଦୀ ନାଟକରେ ଊନବିଂଶ ଶତକର ସାମାଜିକ ଆନ୍ଦୋଳନର ଚିତ୍ର, ୨୦୦୭, ପୃ.୨୭୩)

'ରେବତୀ' ଯେତେବେଳେ ଉତ୍କଳ ସାହିତ୍ୟର ୧୮୯୮ ସଂଖ୍ୟାରେ ପ୍ରକାଶ ପାଇଥିଲା, ଗଳ୍ପ ଉପରେ ନିମ୍ନଲିଖିତ ଏପିଗ୍ରାଫ ବା ପ୍ରାରମ୍ଭିକ ଉଦ୍ଧୃତି ଥିଲା :

But oft some shining April morn
Is darkened in an hour,
And blackest griefs o'er joyous home
Alas ! unseen may lower.

G. H. Gurney

ଯେହେତୁ ଉପର ଲିଖିତ ଚାରିଧାଡ଼ି ଗଳ୍ପ ସହିତ ଦିଆଯାଇଛି, ଏହାକୁ ଗଳ୍ପର ଅଂଶ ବୋଲି ଧରିବାକୁ ହେବ ଏବଂ ତା ହେଲେ ନିଷ୍କର୍ଷ ବାହାରିବ ଯେ ଏଥିରେ କୌଣସି ନୀତିଶିକ୍ଷା ନାହିଁ। ଗଳ୍ପଟି ଗୋଟିଏ ଦୈବ୍ୟ ଦୁର୍ବିପାକର କାହାଣୀ, ତା ବାହାରେ ଆଉ କିଛି ନୁହେଁ।

୧୯୧୫ରେ 'ସବୁଜ ପତ୍ର' ପତ୍ରିକାରେ 'ଘରେ ବାଇରେ' ଉପନ୍ୟାସ ପ୍ରକାଶିତ ହେଉଥିବା ସମୟରେ ଏହା ବିରୁଦ୍ଧରେ ତୀବ୍ର ସମାଲୋଚନା ହେଲା କାରଣ ଏହା ଥିଲା

ଉଗ୍ର ଜାତୀୟତାର ବିରୋଧୀ। ଏହାର ଉତ୍ତରରେ ରବୀନ୍ଦ୍ରନାଥ ଏକ ଦୀର୍ଘ ଲେଖାରେ ଲେଖିଥିଲେ, ସାହିତ୍ୟକୁ ଏକ କଳାର ବିଭାଗ ଭଳି ଦେଖିବା ଉଚିତ, ନୀତିଶିକ୍ଷାର ପୁସ୍ତକ ଭାବେ ନୁହେଁ, କାହାଣୀକୁ କାହାଣୀ ଭାବରେ ନେବା ଉଚିତ, ଲେଖକର ମତବାଦ ଭଳି ନୁହେଁ। ଠିକ୍ ସେହିପରି ତାଙ୍କ 'ଚାର ଅଧ୍ୟାୟ' ଉପନ୍ୟାସର ସମାଲୋଚନା ହେବା ବେଳେ ସେ କହିଥିଲେ, ଏଇଟି ଏକ ପ୍ରେମ କାହାଣୀ ମାତ୍ର। 'ରେବତୀ' ଗଳ୍ପର ବିଚାର ମଧ୍ୟ ସେହି ଭଳି ହେବା ଉଚିତ।

ସ୍ତ୍ରୀ ଶିକ୍ଷା ବିଷୟରେ ଫକୀରମୋହନଙ୍କର ମତ କଣ ଥିଲା ସେ କଥା ଜାଣିବା ପାଇଁ ଆମକୁ ତାଙ୍କର କଥା ସାହିତ୍ୟ ବାହାରକୁ ଯିବାକୁ ହେବ। ତାଙ୍କର ଆତ୍ମଚରିତରେ 'ବାଲେଶ୍ୱରରେ ବାଳିକା ବିଦ୍ୟାଳୟ ସ୍ଥାପନ' ଅଧ୍ୟାୟ ପଢ଼ିଲେ କୌଣସି ସନ୍ଦେହ ରହିବ ନାହିଁ ଯେ ସେ ସ୍ତ୍ରୀ ଶିକ୍ଷାର ଘୋର ସମର୍ଥକ ଥିଲେ, 'ରେବତୀ' ଗଳ୍ପରୁ ଯାହା ଅର୍ଥ ବାହାର କରା ଯାଉ ନା କାହିଁକି।

ଗଳ୍ପରୁ ଲେଖକର ଅଭିପ୍ରାୟ ଖୋଜି ବାହାର କରିବା ସବୁବେଳେ ସମସ୍ୟାମୂଳକ। ଗଳ୍ପ ଉପନ୍ୟାସରେ ଲେଖକମାନେ ବିଭିନ୍ନ ପ୍ରକାରର ଚରିତ୍ରମାନଙ୍କର ଅବତାରଣା କରିଥାନ୍ତି ଏବଂ ସେ ଚରିତ୍ରମାନେ ଭିନ୍ନ ଭିନ୍ନ ମତ ପୋଷଣ କରିପାରନ୍ତି। ସେଥିରୁ କୌଣସି ଗୋଟିଏ ଚରିତ୍ର ବା ମତ ବା ପରିସ୍ଥିତିକୁ ଲେଖକ ଉପରେ ଆରୋପ କରିବା ଅସମୀଚୀନ।

ଲେଖକ ନିଜେ ଯଦି କିଛି ଗମ୍ଭୀର ବାର୍ତ୍ତା ଦେବାକୁ ଚାହେଁ ତାକୁ ସେ ସିଧାସଳଖ ସ୍ପଷ୍ଟ ଭାବେ ଗଦ୍ୟ ପ୍ରବନ୍ଧରେ କହିବା ଉଚିତ। ନ ହେଲେ ତାର କଥାର ମର୍ମ ପାଠକ ପାଖରେ ପହଞ୍ଚି ନପରେ। ବ୍ରେଖ୍ଟ୍ ତାଙ୍କର 'ମଦର କରେଜ୍' ନାଟକରେ ଜଣାଇବାକୁ ଚାହୁଁଥିଲେ ଯେ ଯୁଦ୍ଧରୁ ଲାଭ ନେଇ ଚଳୁଥିବା ମା'କୁ ଦର୍ଶକମାନେ ଘୃଣା କରିବେ, କିନ୍ତୁ ଜୀବନ ସହିତ କଠୋର ସଂଗ୍ରାମ କରୁଥିବା ମା ଦର୍ଶକଙ୍କର ପ୍ରିୟ ହୋଇଗଲା।

ଆମ ସ୍କୁଲ ବେଳେ ସତ କହିବା ଶିଖାଇବା ପାଇଁ ଗୋଟିଏ ଗପ ଥିଲା ଏପରି : ଗୋଟିଏ ଛୋଟ ପିଲା ସବୁବେଳେ ମିଛି କହୁଥିବାରୁ ଜଣେ ସାଧୁ ଆସି ତାକୁ ଗୋଟିଏ ସୁନା ହାର ଦେଲେ ଏବଂ କହିଲେ ଯେ ସେ ମିଛ କହିଲେ ହାରଟି ତା ବେକରୁ ଉଭେଇଯିବ ଓ ସତ କହିଲେ ହାର ପୁଣି ଫେରି ଆସିବ। ହାରଟି ବାରମ୍ବାର ଉଭେଇ ଯିବା କ୍ରମରେ ପିଲାଟି ଆସ୍ତେ ଆସ୍ତେ ସତ କହିବାରେ ଅଭ୍ୟସ୍ତ ହେଲା। ମୋର ବର୍ତ୍ତମାନ ସଂଶୟ ହେଉଛି ଏ ଗପରେ କଣ ନୀତିଶିକ୍ଷା ଅଛି। ଲାଭ ପାଇଁ ସତ କହିବା ଉଚିତ ନା ମିଛ କହିଲେ କ୍ଷତି ହେବ? ମୋ ମତରେ ଉଭୟ ଦୃଷ୍ଟିରୁ ଏଇଟି ଗୋଟିଏ ଭୁଲ ସୁଭାଷିତ।

ତେବେ କଣ ସାହିତ୍ୟରୁ ନୀତି ଶିକ୍ଷା ଆଶା କରାଯିବ ନାହିଁ? ଅବଶ୍ୟ ଆମ ସମାଜରେ ଧାରଣା ଥିଲା (ଏବଂ ଏବେ ମଧ୍ୟ ଅଛି ବୋଧହୁଏ) ଯେ ଉପନ୍ୟାସ ଉତ୍ତମ ଶିକ୍ଷା

ଦେବା ତ ଦୂରର କଥା, ଖରାପ କଥା ଶିଖାଏ। ଓଡ଼ିଶାରେ ଉପନ୍ୟାସ ପଢ଼ିବାକୁ ଏକ ଗର୍ହିତ କାମ ବୋଲି ଧରାଯାଏ, ଏବଂ ପିଲାମାନଙ୍କୁ, ବିଶେଷରେ ଝିଅ ପିଲାଙ୍କୁ, ଏଥି ପାଇଁ ଗାଳି ଶୁଣିବାକୁ ପଡ଼େ। ଘରେ ପଢ଼ିବାର ଅନୁମତି ନ ଥିବାରୁ ସ୍କୁଲରେ ଡେସ୍କ ତଳେ ଲୁଚାଇ ପଢ଼ିବାକୁ ହୁଏ। ହେଡ୍ ସାର୍ ଏଥି ପାଇଁ ବହୁତ ମାଡ଼ ବି ଦିଅନ୍ତି। ସମସ୍ତେ କହିନ୍ତି, ଏତେ ପିଲାଦିନରୁ ଯେଉଁ ଝିଅ ଉପନ୍ୟାସ ପଢୁଛି, ବଡ଼ ହୋଇ ସେ ଆଉ କଣ ହେବ? ଗୋଟେ ଖରାପ ଝିଅ ହୋଇ ବାହାରିବ।(ଇତି ସାମନ୍ତ, ନୀରବ ଆଳାପ, ୨୦୧୩)

ନିଜେ ସାହିତ୍ୟ ପଢ଼ନ୍ତୁ ବା ନ ପଢ଼ନ୍ତୁ, ଲୋକେ କିନ୍ତୁ ସାହିତ୍ୟିକ ପାଖରୁ ଅନେକ କିଛି ଆଶା ଓ ଦାବୀ କରନ୍ତି। ଏ ବିଷୟରେ ସବୁଠାରୁ ବେଶି ମୁଖର ରାଜନୀତିକ ନେତାମାନେ। ଆମ ଦେଶରେ ଏହି ନେତାମାନଙ୍କୁ ଧାର୍ମିକ, ଶିକ୍ଷା ସମ୍ବନ୍ଧୀୟ, ସାଂସ୍କୃତିକ ଇତ୍ୟାଦି ସବୁ ପ୍ରକାରର ସମାବେଶକୁ ପୁରୋଧା ଭାବରେ ନିମନ୍ତ୍ରଣ କରାଯାଇଥାଏ। ସାହିତ୍ୟ ସଭା ମଧ୍ୟ ସେଥିରୁ ବାଦ ପଡ଼େ ନାହିଁ। ନାଚ ଗୀତ ସଭାରେ ନେତାମାନେ ଫୁଲମାଳ ନେଇ କଳାକାରଙ୍କୁ ପ୍ରଶଂସା କରି ସେମାନଙ୍କ ସହିତ ଫଟୋ ଉଠାଇ ଚାଲିଯାନ୍ତି, କିନ୍ତୁ ସାହିତ୍ୟ ସଭା ହେଲେ ତାଙ୍କ ମୁହଁରେ ଖଇ ଫୁଟେ। ଲେଖକମାନେ କଣ ଲେଖିବା ଉଚିତ ସେ ବିଷୟରେ ସେମାନେ ଉପଦେଶ ଦେବାକୁ ଆରମ୍ଭ କରିନ୍ତି। ଉପଦେଶର ଗୋଟିଏ ମୂଳସୂତ୍ର ହେଲା ଯେ ଲେଖକମାନେ ସେମାନଙ୍କର ଲେଖା ଦ୍ୱାରା ସଂସ୍କାର ଆଣି ସମାଜକୁ ବଦଳାଇ ଦିଅନ୍ତୁ। ସେମାନେ ଅବଶ୍ୟ ଜାଣନ୍ତି ଯେ ସାହିତ୍ୟର ଏ ଭଳି କୌଣସି ସାମର୍ଥ୍ୟ ନାହିଁ ଏବଂ ସମାଜକୁ ବଦଳାଇବାର ଦାୟିତ୍ୱ ଲେଖକଙ୍କ ଅପେକ୍ଷା ବେଶି ସେଇମାନଙ୍କର ହିଁ। ତଥାପି ସେମାନେ ଅତି ସହଜରେ ଲେଖକକୁ ସୁଭାଷିତ ଭରା ଲେଖା ଲେଖି ସମାଜ ସୁଧାର କରିବାର ପରାମର୍ଶ ଦିଅନ୍ତି।

ସାହିତ୍ୟର ସମାଜ ସୁଧାର ସାମର୍ଥ୍ୟ ବିଷୟରେ ପାଶ୍ଚାତ୍ୟ ସାହିତ୍ୟର ଉଦାହରଣ ଦିଆଯାଇଥାଏ ଯଥା, 'ଅଙ୍କଲ ଟମ୍‌ସ୍ କେବିନ', ଅପ୍‌ଟନ୍ ସିନ୍‌କ୍ଲେୟାରଙ୍କର 'ଦ ଜଙ୍ଗଲ' ବା ଡିକେନ୍ସଙ୍କର ଉପନ୍ୟାସମାନ। ଆବ୍ରାହାମ ଲିଙ୍କନ କୁଆଡ଼େ ହ୍ୟାରିଏଟ ବୀଚାର ଷ୍ଟୋଙ୍କୁ ପଚାରି ଥିଲେ, ତମେ କଣ ସେଇ ଛୋଟିଆ ମହିଳା ଜଣକ ଯେ ଏତେ ବଡ଼ ଯୁଦ୍ଧ ଘଟାଇଥିଲା? ଜଙ୍ଗଲ ଉପନ୍ୟାସ ଦ୍ୱାରା ପ୍ରେରିତ ହୋଇ ଆମେରିକାର ରାଷ୍ଟ୍ରପତି ଥିଓଡର ରୁଜଭେଲ୍‌ଟ୍ ପ୍ୟୁର ଫୁଡ ଏଣ୍ଡ ଡ୍ରଗ ଓ ମିଟ୍ ଇନ୍ସପେକ୍‌ଶନ ଆଇନ ପ୍ରଣୟନ କରିଥିଲେ। ଡିକେନ୍ସଙ୍କ ଉପନ୍ୟାସ ଯୋଗୁ ଇଂଲାଣ୍ଡରେ ବିଭିନ୍ନ ପ୍ରକାରର ସମାଜ ସୁଧାରକ ବିଧି ବିଧାନ ପ୍ରବର୍ତ୍ତିତ ହୋଇଥିଲା। ଏ ସବୁ ସମ୍ଭବ ହୋଇଥିଲା ଏହି ବହିଗୁଡ଼ିକର ବହୁଳ ପ୍ରଚାର, ପଠନ ଓ ପ୍ରଭାବ ହେତୁ।

ଆମ ଦେଶରେ, ବିଶେଷରେ ଓଡ଼ିଶାରେ, ଏପରି କୌଣସି ଉଦାହରଣ ନାହିଁ। ସମାଜ ଉପରେ ସାହିତ୍ୟର ପ୍ରଭାବ ବିଷୟରେ ଗୋଟିଏ ଉଦାହରଣ ହୋଇପାରେ

ଓଡ଼ିଶା ଓ ବଙ୍ଗଳାରେ ବୈଷ୍ଣବ ଓ ଭକ୍ତି ସାହିତ୍ୟ। ଏ ବିଷୟରେ ସ୍ୱାମୀ ବିବେକାନନ୍ଦଙ୍କର ମତ ଥିଲା ଯେ ବୈଷ୍ଣବଙ୍କ ଯୋଗୁ ଓଡ଼ିଶା ଓ ବଙ୍ଗ ନାରୀସୁଲଭ ହୋଇ ଯାଇଛନ୍ତି। " ପ୍ରେମର ପ୍ରଚାର ଦ୍ୱାରା ଜାତି ହୋଇଯାଇଛି ମାଇଚିଆ – ଏକ ନାରୀଙ୍କର ଜାତି ! ସମଗ୍ର ଓଡ଼ିଶା କାପୁରୁଷଙ୍କର ଦେଶ ହୋଇଯାଇଛି, ଓ ବଙ୍ଗଦେଶ ନିଜର ସମସ୍ତ ପୁରୁଷ ଭାବ ହରାଇଛି।"(ଏନ୍. ଶୀଲ, ବିବେକାନନ୍ଦ : ଏ ରିଆସେସମେଣ୍ଟ, ୧୯୯୭, ପୃଷ୍ଠା ୧୧୭)

ତେଣୁ ଆମକୁ ଶେଷରେ ଏହି ଉପସଂହାରରେ ପହଞ୍ଚିବାକୁ ହେବ ଯେ ପାଠକକୁ ନୀତି ଶିକ୍ଷା ଦେବା ସାହିତ୍ୟର କାମ ନୁହେଁ, ତାର ମନକୁ ଖୋଲିଦେବା ସାହିତ୍ୟର କାମ। ସାହିତ୍ୟ ଯଦି ନୀତି କଥା ପ୍ରଚାର ବା ପ୍ରସାର କରେ ତାର ସୃଜନଶୀଳ ଦିଗ ସେତିକି ଦୁର୍ବଳ ହୋଇଯିବ। କେବଳ ଶିକ୍ଷାତ୍ମକ, ଉପଦେଶାତ୍ମକ ବା ନୀତି ଗର୍ଭକ ସାହିତ୍ୟ ଆଉ ସାହିତ୍ୟ ନ ହୋଇ ହୋଇଯିବ ପ୍ରବଚନ। ଏହାର ଏକ ଜ୍ୱଳନ୍ତ ଉଦାହରଣ ଆମର ସ୍ୱାଧୀନତା ସଂଗ୍ରାମ ବେଳେ ଲେଖା ଯାଇଥିବା ଜ୍ୱାଳାମୟୀ ଗୀତମାନ। ସେଥିରେ ଦେଶାତ୍ମବୋଧ, ଧର୍ମନିରପେକ୍ଷତା, ମାତୃଭକ୍ତି, ଅରଟର ଉପଯୋଗିତା ଇତ୍ୟାଦି ବିଷୟରେ ସୁଭାଷିତମାନ ଭରପୂର, କିନ୍ତୁ ସେଥିରୁ ଅଧିକାଂଶ କବିତା ପଦବାଚ୍ୟ ନୁହନ୍ତି। ଚେୟାରମ୍ୟାନ ମାଓ ବି କୁଆଡ଼େ କହିଥିଲେ, ଇସ୍ତାହାର କବିତା ନୁହେଁ।

*ମାର୍ଚ୍ଚ, ୨୦୦୫*

# କ୍ଷମତାର ଭାଷା, ଭାଷାର କ୍ଷମତା

ଇଂରେଜମାନେ ବେପାରୀ ଜାତି ଏବଂ ଆମ ଦେଶକୁ ଆସିଥିଲେ ବେପାର କରିବା ପାଇଁ। ତାଙ୍କ ବାଣିଜ୍ୟର ସୁବର୍ଣ୍ଣ ସମୟରେ ଇଂରେଜ ବେପାରୀ ଜାହାଜରେ ଚକମକିଆ ଶସ୍ତାଜିନିଷ ନେଇ ଆଫ୍ରିକା ଉପକୂଳକୁ ଯାଉଥିଲେ ଏବଂ ତାକୁ ବଦଳ କରି ସେଠାରୁ କ୍ରୀତଦାସ କିଣୁଥିଲେ। ତା'ପରେ ଆଟଲାଣ୍ଟିକ ପାରି ହୋଇ ଜାହାଜ ଆମେରିକା ଯାଉଥିଲା ଏବଂ ସେଠାରେ କ୍ରୀତଦାସଙ୍କ ବଦଳରେ ସେ ଦେଶରୁ କପା ଓ ଚିନି ଆଣି ବେପାରୀ ନିଜ ଦେଶକୁ ଫେରି ଆସୁଥିଲେ। ଉତ୍ତର ଇଂଲାଣ୍ଡର ଲୁଗାକଳରେ ସେହି କପାରୁ କନା ତିଆରି କରା ହେଉଥିଲା। ଏହି ତନ୍ତୁଜାତ ଲୁଗାକୁ ନେଇ ବେପାରୀ ପୂର୍ବମୁହାଁ ଯାଇ ଭାରତରେ ପହଞ୍ଚୁଥିଲେ ଓ ସେଠାରେ କନା ବଦଳରେ ଅଫିମ କିଣୁଥିଲେ। ଏହି ଅଫିମକୁ ନେଇ ସେମାନେ ଭାରତ ମହାସାଗର ପାରି ହୋଇ ଚୀନର ଉପକୂଳ ବନ୍ଦମାନଙ୍କରେ ଅଫିମ ବଦଳରେ ଚା ଓ ରେଶମ କିଣୁଥିଲେ ଯାହାର ଭଲ କାଟତି ଥିଲା ଇଉରୋପରେ। ଏହି ଭାବରେ ବ୍ରିଟିଶ ବାଣିଜ୍ୟ ପୃଥିବୀର ଚାରିଟି ମହାଦେଶକୁ ବ୍ୟବସାୟରେ ଯୋଡ଼ି ଦେଇଥିଲା। ଏହା ହିଁ ବୋଧହୁଏ ଗ୍ଲୋବାଲାଇଜେଶନର ଏକ ଆଦ୍ୟ ଉଦାହରଣ।

ବ୍ରିଟିଶ ବାଣିଜ୍ୟ କିପରି ଆମର ଅର୍ଥନୈତିକ ବ୍ୟବସ୍ଥାକୁ ଧ୍ୱସ୍ତବିଧ୍ୱସ୍ତ କରିଦେଲା, ତାର ଗୋଟିଏ ଉଦାହରଣ ଦେଲେ ଯଥେଷ୍ଟ ହେବ। ଅଷ୍ଟାଦଶ ଶତାବ୍ଦୀ ଶେଷ ବେଳକୁ ଢାକା ଥିଲା ବସ୍ତ୍ର ଶିଳ୍ପର ଏକ ସମୃଦ୍ଧ ସହର ଏବଂ ସେଠାର ଜନସଂଖ୍ୟା ଥିଲା ପ୍ରାୟ ଦୁଇ ଲକ୍ଷ। ସେହି ସମୟରେ ଇଂଲାଣ୍ଡର ମାଞ୍ଚେଷ୍ଟରରେ କୌଣସି କଳକାରଖାନା ନଥିଲା ଓ ତାର ଜନସଂଖ୍ୟା ଥିଲା ୨୭୦୦୦। ୧୮୦୨ ବେଳକୁ ମାଞ୍ଚେଷ୍ଟରରେ ୫୨ଟି ଲୁଗା କାରଖାନା ଥିଲା ଓ ଏହାର ଜନସଂଖ୍ୟା ହୋଇଯାଇଥିଲା ଏକ ଲକ୍ଷ। କେତେ ବର୍ଷ ଭିତରେ ଢାକାର ଜନସଂଖ୍ୟା କମି କମି ହୋଇଗଲା ୩୦,୦୦୦!

ଆମ ଦେଶକୁ ବେପାର ବଣିଜ କରିବାକୁ ଆସିଥିବା ଗୋରା ଲୋକ ଶେଷରେ ହୋଇଗଲେ ଆମର ଶାସକ ଏବଂ ଏଠାରେ ରହୁ ରହୁ ରହିଗଲେ ଦୁଇ ଶହ ବର୍ଷ। ଏହି ସମୟ କାଳରେ ନିଜର ଶାସନର ସୁବିଧା ପାଇଁ ସେମାନେ ଆମ ଉପରେ ତାଙ୍କର ଭାଷାକୁ ଲଦି ଦେଲେ। ତାଙ୍କର ଯୁକ୍ତି ଥିଲା ଯେ ଭାରତର ଲୋକଙ୍କୁ ଶିକ୍ଷିତ କରିବା ପାଇଁ ଭାରତୀୟଙ୍କର ମାତୃଭାଷା ଉପଯୁକ୍ତ ଭାଷା ନୁହେଁ, ଏଥିପାଇଁ ଦରକାର ଇଂରେଜୀ ଭାଷା ଯାହା ସେତେବେଳେ ଥିଲା ଇଉରୋପର ପ୍ରମୁଖ ଭାଷା। ମ୍ୟାକଲେଙ୍କ ଭାଷାରେ କହିଲେ ସେମାନେ ଶାସକ ଓ

ଶାସିତଙ୍କ ଭିତରେ ଯୋଗସୂତ୍ର ରଖିବା ପାଇଁ ଗୋଟିଏ ଗୋଷ୍ଠୀ ଚାହୁଁଥିଲେ ଯେଉଁମାନେ ରକ୍ତ ଓ ବର୍ଣ୍ଣରେ ଭାରତୀୟ କିନ୍ତୁ ରୁଚି, ନୀତି ଓ ବୁଦ୍ଧି ବିଚାରରେ ଇଂରେଜ।

ମ୍ୟାକଲେଙ୍କର ଏ ସ୍ୱପ୍ନ ସଫଳ ହୋଇଥିଲା ଏବଂ ଭାରତରେ ସେମାନେ ଚାହୁଁଥିବା ଭଳି ଗୋଟିଏ ଶ୍ରେଣୀର ଭାରତୀୟ ତିଆରି ହୋଇଥିଲେ। ଦୀନବନ୍ଧୁ ମିତ୍ରଙ୍କର ବଙ୍ଗଳା ନାଟକ 'ସଧବାର ଏକାଦଶୀ'(୧୮୬୬)ରେ ଇଂରେଜୀ ପଢୁଆ ବାବୁ ନିମଚାନ୍ଦ ଦତ୍ତ କହୁଛନ୍ତି (ଅବଶ୍ୟ ଇଂରେଜୀରେ) : " ମୁଁ ଇଂରେଜୀ ପଢ଼େ, ଇଂରେଜୀ ଲେଖେ, ଇଂରେଜୀରେ ବକ୍ତୃତା ଦିଏ ଓ ଇଂରେଜୀରେ ସ୍ୱପ୍ନ ଦେଖେ।" ଆଶା କରିବାର କଥା ଗୋରା ଲୋକ ଭାରତ ଛାଡ଼ି ପଳାଇବା ପରେ ଏଭଳି ଲୋକ ଆଉ ଦେଖାଯିବେ ନାହିଁ। କିନ୍ତୁ ଅମିତାଭ ବଚ୍ଚନ ଅଭିନୀତ ୧୯୮୨ର ବଲିଉଡ୍ ଫିଲ୍ମ 'ନମକହଲାଲ'ରେ ତାଙ୍କ ଚରିତ୍ର ଅର୍ଜୁନ ସିଂହ ଇଣ୍ଟରଭିଉରେ କହୁଛି (ଅବଶ୍ୟ ଇଂରେଜୀରେ) : " ମତେ ଏମିତି ଇଂରେଜୀ ଜଣା ଯେ ମୁଁ ଇଂରେଜ ଲୋକଙ୍କୁ ପଛରେ ପକାଇ ଦେବି। ମୁଁ ଇଂରେଜୀ କହିପାରେ, ଇଂରେଜୀ ଚାଲିପାରେ, ଇଂରେଜୀ ହସିପାରେ।" ଅବଶ୍ୟ ଏହା ପରେ ଅମିତାଭ ବଚ୍ଚନ ଯୋଗ କରୁଛନ୍ତି, "କାରଣ ଇଂରେଜୀ ଗୋଟିଏ କୌତୁକିଆ ଭାଷା।"

ଇଂରେଜ ବଣିକମାନେ ବାଣିଜ୍ୟ ସାମଗ୍ରୀ ସହିତ ଆଣିଥିଲେ ବାଇବେଲ ଓ ବନ୍ଧୁକ, ଏବଂ ଶେକ୍ସପିଅର ମଧ୍ୟ। ଶେକ୍ସପିଅର( ଅର୍ଥାତ ଇଂରେଜୀ ଭାଷା) ସାମ୍ରାଜ୍ୟବାଦୀଙ୍କ ହାତରେ ଅନ୍ୟତମ ଅସ୍ତ୍ର ଥିଲେ। ଏ କଥା ଅତି ସୁନ୍ଦର ପ୍ରତୀକାତ୍ମକ ଭାବରେ ବର୍ଣ୍ଣନା କରାଯାଇଛି ଜେ.ଜି. ଫାରେଲଙ୍କ 'ସୀଜ୍ ଅଫ୍ କ୍ରିଷ୍ଣାପୁର' ଉପନ୍ୟାସରେ। ସିପାହୀ ବିଦ୍ରୋହ ସମୟର ଏହି କାହାଣୀରେ ବିଦ୍ରୋହୀଙ୍କ ଘେରରେ ରହିଥିବା ଗୋରାଙ୍କ କମାଣ ପାଇଁ ଗୋଳା ସରିଗଲା, ତେଣୁ ସେମାନେ ଦାଗିବା ପାଇଁ କମାଣରେ ଧାତୁର ବାସନ କୁସନ ପକାଉଛନ୍ତି। ଏ ଜିନିଷ ମଧ୍ୟ କମ ପଡ଼ିବାରୁ ଶେଷକୁ କଲେକ୍ଟର ହପ୍‌କିନ୍ସ ସଉକରେ ରଖିଥିବା ବିଶିଷ୍ଟ ଇଂରେଜମାନଙ୍କର ଧାତୁ ନିର୍ମିତ ଆବକ୍ଷ ମୂର୍ତ୍ତି ବ୍ୟବହାର କରାଯାଉଛି। ଏଥିରୁ ସବୁଠାରୁ ବେଶି ଫଳପ୍ରଦ ହୋଇଥିଲା ଶେକ୍ସପିଅରଙ୍କର ଧାତବ ମସ୍ତକ ଯାହା ଯାଇ ଧାଡ଼ି ହୋଇ ଆସୁଥିବା ସିପାହୀ ପଲଟନଙ୍କ ଆଶ୍ଚର୍ଯ୍ୟ ହୋଇ ଅନାଇଥିବା ମୁଣ୍ଡ ସବୁ ଉଡ଼ାଇ ଦେଲା।

ଇଂରେଜୀ ପଢ଼ିବା ଜାଣିବା ଲୋକେ ଆସ୍ତେ ଆସ୍ତେ କ୍ଷମତାକୁ ଆସିଲେ ଏବଂ ଇଂରେଜୀର ସ୍ଥାନ ସେଇଭଳି ହୋଇଗଲା ଯାହା ପୂର୍ବେ ଥିଲା ସଂସ୍କୃତ ଓ ପାର୍ସିର। ବର୍ତ୍ତମାନ ଅବଶ୍ୟ ପାର୍ସିର ଆଦୌ ପ୍ରଭାବ ନାହିଁ, କିନ୍ତୁ ସଂସ୍କୃତ ତାର ଉଚ୍ଚାସନ ହରାଇ ନାହିଁ। ଏହା ପୂଜା ପାଠରେ ବ୍ରାହ୍ମଣଙ୍କର ଏକଚାଟିଆ ଭାଷା ହୋଇରହିଛି। ଏଠାରେ ଉଲ୍ଲେଖଯୋଗ୍ୟ ଯେ ଓଡ଼ିଶାର ରାଜ୍ୟ ସଂଗୀତ ମଧ୍ୟ ଗୋଟିଏ ସଂସ୍କୃତ ଗୀତ। ଜନଗଣମନ ଓ ବନ୍ଦେମାତରଂ ଗୀତମାନଙ୍କରେ କିଛି ଅଂଶ ବଙ୍ଗଳାରେ, କିନ୍ତୁ ବନ୍ଦେ ଉତ୍କଳ ଜନନୀ ଶତ ପ୍ରତିଶତ ସଂସ୍କୃତ।

ସେ ସମୟରେ ଯେଉଁମାନେ ଇଂରେଜୀ ପଢ଼ିଲେ ତାଙ୍କୁ ଚାକିରିର ସୁବିଧା ମିଳିଲା। ଏ ବିଷୟରେ ଫକୀରମୋହନଙ୍କ ଡାକମୁନ୍‌ସୀ ଗପରେ ବର୍ଣ୍ଣନା ଏପରି : "ଗୋପାଳ ଜନ୍ମ

ଦିନଠାରୁ ସିଂହେ ମନ ମଧ୍ୟରେ ଗୋଟାଏ ଉଚ୍ଚ ଆଶା ପୋଷିଛନ୍ତି, ଗୋପାଳ ମଫସଲ ପୋଷ୍ଟ ଅଫିସରେ ସବ୍‌ପୋଷ୍ଟମାଷ୍ଟର ହେବ। ମାତ୍ର ଟିକିଏ ଇଂରାଜୀ ନ ଜାଣିଲେ ତେତେ ବଡ଼ ଚାକିରିଟା ମିଳିବା ମୁସ୍କିଲ। ମଫସଲରେ ସୁବିଧା ନାହିଁ, କଟକ ଆଣି ଇଂରାଜୀ ପଢ଼ାଇବାକୁ ହେବ।'' ଆମଠାରୁ ଆଗରୁ ଓ ବେଶି ଇଂରେଜୀ ଜାଣିଥିବାରୁ ବଙ୍ଗାଳୀମାନେ ସାହେବଙ୍କ ସହିତ ମିଶି ଆମ ଉପରେ ପ୍ରଭୁତ୍ୱ କରି ଚାଲିଗଲେ।

ଇଂରେଜୀ ଭାଷା ସହିତ ଆମେ ତାଙ୍କର ଆଚାର ବ୍ୟବହାର, ଚାଲିଚଳଣ ମଧ୍ୟ ଅନୁକରଣ କରିବାରେ ଲାଗିଲୁ। ଆମର ଲକ୍ଷ୍ୟ ହେଲା, ''ଏଥର ମଲେ ସାହେବ ହେବି, ଲାଲ ମୁଣ୍ଡରେ କ୍ୟାପ ଦେବି।''(ଗୋବିନ୍ଦ ରଥ, ଲାଟ ଦର୍ଶନ, ୧୮୮୬)। ଏଭଳି କଳା ସାହେବଙ୍କୁ ଉପହାସ କରି ରାଧାନାଥ ରାୟ 'ଦରବାର'ରେ ଲେଖିଲେ, '' ଥରେ ଥରେ କାଶି ସାହେବୀ ଠାଣିରେ, ପୋଛଇ ବଦନ ରୋମାଲ କାନିରେ। ପ୍ରକଟାଇ ପୂରା ସାହେବି-ପଣିଆ, ଫରକଟା ଗୋଡ଼େ ହୁଏ ପୁଣି ଠିଆ।''

ଇଂରେଜ ଭାଷା ଯେ ଆମର କ୍ଷତି କରୁଛି ସେ ବିଷୟରେ ଆମ ଦେଶର କିଛି ବିଦ୍ୱାନ ସେତେବେଳେ ମଧ୍ୟ ସଚେତନ ଥିଲେ। ଲୋକମାନ୍ୟ ତିଳକଙ୍କର ଗୁରୁ ବିଷ୍ଣୁ ଚିପଲୁଙ୍କର ସେତେବେଳେ ଲେଖିଥିଲେ, '' ଇଂରେଜୀ କବିତା ଦ୍ୱାରା ଦଳିତ ହୋଇ ଆମର ସ୍ୱାଧୀନତା ଧ୍ୱସ୍ତବିଧ୍ୱସ୍ତ ହୋଇ ଯାଇଛି।'' (ନିବନ୍ଧମାଳା, ୧୮୮୧) ଗାନ୍ଧୀ ଲେଖିଲେ, ''ଲକ୍ଷ ଲକ୍ଷ ଲୋକଙ୍କୁ ଇଂରେଜୀରେ ଶିକ୍ଷା ଦେବା ସେମାନଙ୍କୁ ଦାସତ୍ୱରେ ବାନ୍ଧି ଦେବା ସଙ୍ଗେ ସମାନ। ଯେଉଁ ଭାରତୀୟ ପିତାମାତା ପିଲାମାନଙ୍କୁ ପିଲାଟି ଦିନରୁ ଇଂରେଜୀରେ ଚିନ୍ତା କରିବା ଓ କଥାବାର୍ତ୍ତା କରିବା ପାଇଁ ଶିଖାଉଛନ୍ତି, ସେମାନେ ତାଙ୍କର ପିଲା ପ୍ରତି ଓ ତାଙ୍କ ଦେଶ ପ୍ରତି ବିଶ୍ୱାସଘାତକତା କରୁଛନ୍ତି।''(ହିନ୍ଦ ସ୍ୱରାଜ, ୧୯୦୯) । ଫକୀରମୋହନ ଲେଖିଲେ, '' ସେ ପିଅନଟା ମୂର୍ଖ, ଇଂରାଜୀ ପଢ଼ିନାହିଁ। ତାର ଗୋଟାଏ ଦେଶୀ ହୃଦୟ ଅଛି।''(ଡାକମୁନ୍‌ସୀ) ମାନ୍ଦ୍ରାଜରେ ହେଉଥିବା ଦକ୍ଷିଣ ଭାରତ ହିନ୍ଦୀ ପ୍ରଚାର ସଭାରେ ଭାଷଣ ଦେଇ ପ୍ରେମଚାନ୍ଦ କହିଲେ, ''ଆମର ପରାଧୀନତାର ସବୁଠାରୁ ଅପମାନଜନକ, ସବୁଠାରୁ ବ୍ୟାପକ ଓ ସବୁଠାରୁ କଠୋର ଅଙ୍ଗ ହେଉଚି ଇଂରେଜୀ ଭାଷାର ପ୍ରଭୁତ୍ୱ।'' ସ୍ୱାଧୀନତା ଆନ୍ଦୋଳନ ସମୟରେ ଇଂରେଜ ବିରୋଧ ଓ ଇଂରେଜୀ ବିରୋଧ ଏକାଠି ହୋଇଗଲା।

ଓଡ଼ିଶାରେ କିନ୍ତୁ ଏ ସମୟରେ ଜନ ଆନ୍ଦୋଳନର ଆଭିମୁଖ୍ୟ ଥିଲା ଭାରତର ସ୍ୱାଧୀନତା ନୁହେଁ, ଓଡ଼ିଶାକୁ ସ୍ୱତନ୍ତ୍ର କରିବା। 'ତିନି ଥେଣ୍ଟିଆ କାକୁଡ଼ି ବାଡ଼ି' ଓଡ଼ିଶାର ତିନି ପ୍ରତିଦ୍ୱନ୍ଦ୍ୱୀ ଥିଲେ ବଙ୍ଗଳା ହିନ୍ଦୀ ଓ ତେଲୁଗୁ, ଇଂରେଜୀ ନୁହେଁ। ଗଙ୍ଗାଧର ମେହେର ମାତୃଭୂମି ମାତୃଭାଷା ମମତା କଥା ଲେଖିବା ବେଳେ 'ଭାରତୀ ରୋଦନ'ରେ ଲେଖିଥିଲେ, ''ହିନ୍ଦୀ ସରସ୍ୱତୀ ମୋ ଛାତିରେ ବସି କରିବ ପରା ରାଜତ୍ୱ''। ସେ କିନ୍ତୁ ଇଂରେଜୀ ବିରୋଧୀ ନଥିଲେ କାରଣ ସେ ଉତ୍କଳ ଭାରତୀଙ୍କ ମୁହଁରେ କୁହାଇଥିଲେ, ''ପାଇଥିଲେ ଦିଅ ବିଲାତୀ ପ୍ରସୂନ ଥାଏ ଯଦି ତହିଁ କିଛି ସୌରଭ।''

ଯେତେବେଳେ ଗୋପବନ୍ଧୁଙ୍କ ଉଦ୍ୟମରେ ଓଡ଼ିଶା ଜାତୀୟ ଆନ୍ଦୋଳନରେ ଅଂଶ ନେଲା, ଓଡ଼ିଆରେ ଇଂରେଜ ବିରୋଧୀ ଲେଖା ଦେଖା ଦେଲା। ଓଡ଼ିଆ ମୁକ୍ତିଗୀତିକାରେ ବିଦେଶୀ ବସନ, ବିଲାତୀ ଫେଶନ, ଲିଭରପୁଲର ଲୁଣ, ଗୋରା ଫଉଜ ଓ ହୁଣ୍ଡା ସର୍କାର ବିରୁଦ୍ଧରେ ଗୀତମାନ ଲେଖାଗଲା, କିନ୍ତୁ ଏଥିରେ ଇଂରେଜୀ ଭାଷା ବିରୁଦ୍ଧରେ କୌଣସି ଆକ୍ରୋଶ ନଥିଲା।

ମାତୃଭାଷା ବିଷୟରେ ସ୍ପଷ୍ଟ ମତ ରଖିଥିଲେ ଆଉ କେହି ନୁହେଁ, ଗାନ୍ଧୀ ହିଁ। ୧୯୧୫ରେ ଦକ୍ଷିଣ ଆଫ୍ରିକା ଛାଡ଼ି ଭାରତ ଫେରିବା ପରେ ସେ କହିଲେ, "ଯେହେତୁ ମୁଁ ଗୁଜରାଟୀ, ଗୁଜରାଟୀ ଭାଷା ବ୍ୟବହାର କରି ମୁଁ ଦେଶର ନିରୋଳା ସେବା କରିବି"। ଏଥିପାଇଁ ସେ ଗୁଜରାଟରେ ହିଁ ତାଙ୍କର ସତ୍ୟାଗ୍ରହ ଆଶ୍ରମ ସ୍ଥାପନ କଲେ। ୧୯୧୯ରେ ସେ ତାଙ୍କର ଗୁଜରାଟୀ ସାପ୍ତାହିକ ପତ୍ରିକା 'ନବଜୀବନ' ବାହାର କଲେ।

ଏପରି ହେଉ ହେଉ ଭାଷା ଭିତ୍ତିରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇଗଲା ଏବଂ ଦିନେ ରାତି ଅଧରେ ଆମ ଦେଶକୁ ଦି ଖଣ୍ଡ କରିଦେଇ ଗୋରାଲୋକ ବି ନିଜ ଦେଶକୁ ପଳାଇଗଲେ। ବିଲାତୀ ଲୋକେ ଗଲାବେଳେ କୁଆଡ଼େ ଆମ ପାଇଁ ଅନେକ ଭଲ ଜିନିଷ ଛାଡ଼ି ଯାଇଛନ୍ତି ବୋଲି କୁହାଯାଇଥାଏ, ଯଥା, ହିଲ୍ ଷ୍ଟେସନ, ରେଳବାଇ, କ୍ରିକେଟ ଖେଳ, କ୍ୟାଣ୍ଟନମେଣ୍ଟ, ଶାସନ ପ୍ରଣାଳୀ ଏବଂ ସର୍ବୋପରି ତାଙ୍କର ଭାଷା। ତା ସହିତ ଯୋଡ଼ି ଦିଆଯାଇପାରେ ଦୁର୍ଭିକ୍ଷ, ଲାଠି ଚାର୍ଜ, ଖ୍ରୀଷ୍ଟିଆନ ମିଶନାରୀ, ହିନ୍ଦୁ-ମୁସଲିମ ବିଭେଦ, ଦୁରୂହ ଅମଲାତନ୍ତ୍ର, ଧାରା ୩୭୭ ଓ କୁଟିଳ ନ୍ୟାୟ ବ୍ୟବସ୍ଥା। ଏହି ଉଚ୍ଛିଷ୍ଟରୁ କିଛି ଆମେ ଆମର ସୁବିଧା ପାଇଁ ବ୍ୟବହାର କରିବା ପାଇଁ ଏକ ପ୍ରକାର ବାଧ୍ୟ(ଯଥା ରେଳ) ଏବଂ ଆଉ କିଛିରେ ଆମେ ଆଗ୍ରହୀ ମଧ୍ୟ(ଯଥା କ୍ରିକେଟ)। ଇଂରେଜୀ ଭାଷା ଆଲୋଚନା ବେଳେ କୁହାଯାଇଥାଏ ଯେ ଏହା ଆମ ଦେଶକୁ ଯୋଡ଼ିବାରେ ସାହାଯ୍ୟ କରିଥିଲା ଏବଂ ସ୍ୱାଧୀନତା ପରେ ମଧ୍ୟ କରୁଛି। ପ୍ରକୃତ ପକ୍ଷରେ କିନ୍ତୁ ଇଂରେଜୀ ଆମ ଲୋକଙ୍କୁ ଯୋଡ଼ିବା ପରିବର୍ତ୍ତେ ଭାଙ୍ଗିଛି ବେଶି। ଆମ ଦେଶର ସହର ମଫସଲ ଭିତରେ, ଧନୀ ଓ ଗରିବଙ୍କ ଭିତରେ, ପାଠୁଆ ଅଳ୍ପ ପାଠୁଆଙ୍କ ଭିତରେ, କ୍ଷମତାଶାଳୀ ଓ ଦୁର୍ବଳ ଲୋକଙ୍କ ଭିତରେ, ତଥାକଥିତ ଉଚ୍ଚ ଓ ନୀଚ ଜାତି ଭିତରେ ଏବଂ ଶାସକ ଓ ଶାସିତଙ୍କ ଭିତରେ ଯେଉଁ ଭେଦ ସୃଷ୍ଟି ହୋଇଛି, ଇଂରେଜୀ ଭାଷା ତାର ମୂଳ କାରଣ।

ଆମ ସଂବିଧାନ ରଚୟିତାମାନେ ଏ ବିଷୟରେ ସଚେତନ ଥିଲେ ଏବଂ ସେଥିପାଇଁ ବ୍ୟବସ୍ଥା କଲେ ଯେ ହିନ୍ଦୀ ହେବ ଭାରତର ଅଫିସ ଭାଷା, ତେବେ ପନ୍ଦରବର୍ଷ ଯାଏ ଇଂରେଜୀର ବ୍ୟବହାର ଚାଲୁ ରହିବ। ଦୁଃଖର ବିଷୟ ଏହି ପନ୍ଦରବର୍ଷ କିନ୍ତୁ ଆଉ ସରୁନାହିଁ ଏବଂ ତାର ଶେଷ ହେବାର କୌଣସି ଲକ୍ଷଣ ଦେଖାଯାଉନାହିଁ।

ଏହାପରେ ଇଂରେଜୀ ଭାଷାକୁ ନେଇ ଅନେକ କିଛି ଘଟିଗଲା। ଉତ୍ତର ଭାରତର କାଓ ବେଲ୍ଟ୍ ବା ଗୋମେଖଳା କୁହାଯାଉଥିବା ଅଞ୍ଚଳରେ ଇଂରେଜୀ ହଟାଅ ଦାବୀ ହେଉଥିବା

ବେଳେ ଦକ୍ଷିଣ ଭାରତରେ ଇଂରେଜୀ ବଞ୍ଚାଅ ଆନ୍ଦୋଳନ ଆରମ୍ଭ ହେଲା । ଅନେକ ପ୍ରଦେଶରେ ସ୍କୁଲର ତଳ ଶ୍ରେଣୀମାନଙ୍କରୁ ଇଂରେଜୀ ପାଠକୁ ଉଠାଇ ଦିଆଗଲା । ଦେଶରେ(ବା ଉତ୍ତର ଭାରତ, ବଙ୍ଗଳା, ବିହାରରେ) ଏକ ଇଂରେଜୀ ବିରୋଧୀ ବାତାବରଣ ତିଆରି ହେଲା । ଆମ ଓଡ଼ିଶା କିନ୍ତୁ ଏ ସବୁରୁ ଦୂରରେ ରହିଲା ଏବଂ ଆମ ଉପରେ ହିନ୍ଦୀ-ଇଂରେଜୀ କନ୍ଦଳର କୌଣସି ପ୍ରଭାବ ପଡ଼ିଲା ନାହିଁ ।

ଅବସୋସର ବିଷୟ ଯେ ଏ ସବୁ ଭିତରେ ଇଂରେଜୀ ଆମ ଦେଶର କ୍ଷମତାର ଭାଷା ହୋଇ ରହିଗଲା ।

ସାମ୍ରାଜ୍ୟବାଦୀମାନେ ତାଙ୍କର ଉପନିବେଶ ଛାଡ଼ି ଚାଲିଯିବା ପରେ ସେଠାରେ ତାଙ୍କ ଭାଷାର କି ପ୍ରକାର ବ୍ୟବହାର ହେବ ସେ କଥା ସବୁବେଳେ ସମସ୍ୟାଜଡ଼ିତ । ନାଇଜେରିଆରୁ ଇଂରେଜମାନେ ଚାଲିଯିବା ପରେ ଚିନୁଆ ଆଚିବି କହିଲେ ଯେ ସେ ଇଂରେଜୀରେ ହିଁ ଲେଖିବେ କାରଣ ତାର ବହୁଳ ବ୍ୟବହାର ଦୃଷ୍ଟିରୁ  ଇଂରେଜୀ ଏକ ଆଫ୍ରିକୀୟ ଭାଷା ହୋଇଯାଇଛି । ଆମର ଯେଉଁମାନେ ଇଂରେଜୀରେ ଲେଖୁଥିଲେ - ଆର.କେ ନାରାୟଣ, କମଳା ଦାସ, ଖୁଶୱନ୍ତ ସିଂହ ଇତ୍ୟାଦି - ସେମାନେ ମଧ୍ୟ ଯୁକ୍ତି ଦିଅନ୍ତି ଯେ ଇଂରେଜୀ ବର୍ତ୍ତମାନ  ଏକ ଭାରତୀୟ ଭାଷା । ଖୁଶୱନ୍ତଙ୍କ ଭାଷାରେ, "ମୋ ମତରେ ଇଂରେଜୀକୁ ଆମ ମନ ମୁତାବକ ଭାରତୀୟ ଭାଷା କରିବାକୁ ହେବ । ତାକୁ ଭାଙ୍ଗ, ଟଣାଓଟରା କର, ବଙ୍କାଟଙ୍କା କର, କିନ୍ତୁ ତାକୁ ଆମର ଭାଷା କରିଦିଅ । ଇଂରେଜ ଲୋକ ଯଦି ଏହାକୁ ତାଙ୍କ ଭାଷା ବୋଲି ଚିହ୍ନି ନପାରନ୍ତି, ସେମାନେ ତାଙ୍କ ନିଆଁରେ ଜଳନ୍ତୁ । ଇଂରେଜୀ ତାଙ୍କ ବାପ୍ କୀ ଜାୟଦାଦ୍ ନୁହେଁ ।"

ଅନ୍ୟମାନେ କିନ୍ତୁ ଏହାଠାରୁ ସଂପୂର୍ଣ୍ଣ ଭିନ୍ନ ମତ ପୋଷଣର କରନ୍ତି । କେନିଆର ଲେଖକ ଏନଗୁଗି ଆଗରୁ ଇଂରେଜୀରେ ଲେଖୁଥିବା ବେଳେ ପରବର୍ତ୍ତୀ ସମୟରେ ନିଜ ମାତୃଭାଷା ଗିକୁୟୁରେ ଲେଖିଲେ, କାରଣ ତାଙ୍କ ମତରେ ସାମ୍ରାଜ୍ୟବାଦୀଙ୍କ ଭାଷାରେ ଆଫ୍ରିକାର ବାସ୍ତବତା ବିଷୟରେ ଲେଖି ହେବ ନାହିଁ । ଆମର ଜୟନ୍ତ ମହାପାତ୍ର ମଧ୍ୟ ଲେଖିଛନ୍ତି, "ପ୍ରକୃତରେ ମତେ ବୁଝିବାକୁ ତିରିଶ ବର୍ଷ ଖଣ୍ଡେ ଲାଗିଗଲା ଯେ ନିଜ ମାତୃଭାଷାରେ ଯେପରି ଭାବରେ କବିତା ଲେଖି ହେବ, ଅନ୍ୟ ଭାଷାରେ ଲେଖି ହେବ ନାହିଁ ।" ରବୀନ୍ଦ୍ର ନାଥ ଠାକୁର ମଧ୍ୟ ଅନେକ ବର୍ଷ ତଳେ କହିଥିଲେ, "ମାଗି ଆଣିଥିବା ଇଂରେଜୀ ତାର ସମସ୍ତ ତେଜ ସତ୍ତ୍ୱେ ଏକ ଭିନ୍ନ ବାତାବରଣକୁ ଆସି ଏକ ବିଘ୍ନ ପାଲଟି ଯାଇଛି ।  ଛତା ଓ ଓଭର କୋଟ ଭଳି ଭାଷାକୁ ଧାର କରି ଆଣି ହେବ ନାହିଁ । ଭାଷା ହେଉଛି ଦେହର ଜୀବନ୍ତ ଚର୍ମ ଭଳି ।"

ଇଂରେଜୀର ବ୍ୟବହାର ବିଷୟରେ ଆମ ଦେଶରେ ଏପରି ବାଦାନୁବାଦ ଚାଲିଥିବା ବେଳେ ଏକ ନୂଆ ଜିନିଷର ଆବିର୍ଭାବ ହେଲା - ଗ୍ଲୋବାଲାଇଜେଶନ ବା ଜଗତୀକରଣ ।

ଏହା ଆମର ଦୃଷ୍ଟିଭଙ୍ଗୀକୁ ପୂରାପୂରି ବଦଳାଇ ଦେଲା। ସମଗ୍ର ପୃଥିବୀ ବର୍ତ୍ତମାନ ହୋଇଗଲା ଗୋଟିଏ ଏକକ ଯେଉଁଠାରେ ସବୁ କିଛି ଆଧୁନିକ, ସୁନ୍ଦର ଓ ସର୍ବଗ୍ରାହୀ ବା ଭିନ୍ନ ମତରେ ଯେଉଁଠାରେ ସବୁକିଛି ନିକୃଷ୍ଟ, ଅଶାଳୀନ, କୁତ୍ସିତ, ଅମାର୍ଜିତ। ଏହି ମହାମଣ୍ଡଳର ଚଳନ୍ତି ଭାଷା ହେଉଛି ଇଂରେଜୀ।

ଏଠାରେ ଆନ୍ତର୍ଜାତିକ ଜାହାଜ ଓ ଉଡାଜାହାଜ ପରସ୍ପର ସହିତ ଯୋଗାଯୋଗ ପାଇଁ ଇଂରେଜୀ ବ୍ୟବହାର କରନ୍ତି। ପୃଥିବୀର ସବୁ ବୈଜ୍ଞାନିକଙ୍କର କାମର ଭାଷା ଇଂରେଜୀ। ଇଂରେଜୀ ମଧ୍ୟ ହେଉଛି ଇଣ୍ଟରନେଟ୍‌ର ଭାଷା ଯାହା କଂପ୍ୟୁଟରରେ ବ୍ୟବହାର କରାଯାଇଥାଏ। ଇନଫରମେଶନ ଟେକ୍ନୋଲଜିର ବିସ୍ଫୋରଣ ପରେ ଇଂରେଜୀ ହୋଇଯାଇଛି ବାଣିଜ୍ୟ ଓ ବିଜ୍ଞାନର ଭାଷା ଏବଂ ଏହି ଭାଷାରେ ଚଳୁଛି ବାଣିଜ୍ୟ ବ୍ୟବସାୟ ଓ ବୈଜ୍ଞାନିକ ସମ୍ମିଳନୀର କାମ । କିଛି ବର୍ଷ ତଳେ ପୋପ୍ ପଲ୍ ଯେତେବେଳେ ମଧ୍ୟ ପ୍ରାଚ୍ୟରେ ଖ୍ରୀଷ୍ଟିଆନ, ଇହୁଦୀ ଓ ମୁସଲମାନଙ୍କୁ ସମ୍ବୋଧନ କରିଥିଲେ, ତାଙ୍କର ଭାଷଣ ଆରବିକ୍, ହିବ୍ରୁ ବା ତାଙ୍କ ନିଜ ଭାଷା ପୋଲିଶ୍‌ରେ ନ ଥିଲା, ତା ଥିଲା ଇଂରେଜୀରେ। ଏପରି ଭାବରେ ଇଂରେଜୀ ବର୍ତ୍ତମାନ ହୋଇଯାଇଛି କେବଳ ଏକ ଦରକାରୀ ଉପକରଣ ନୁହେଁ, ସାମାଜିକ ଆରୋହଣର ସିଡ଼ି ମଧ୍ୟ।

ଏଥି ଯୋଗୁ ଆମ ଦେଶରେ ଇଂରେଜୀ ପ୍ରତି ଆମ ମନୋଭାବର ମଧ୍ୟ ପରିବର୍ତ୍ତନ ଘଟିଲା। ଯେଉଁ ପ୍ରଦେଶମାନଙ୍କର ସ୍କୁଲରୁ ଇଂରେଜୀ ଉଠାଇ ଦିଆଯାଇଥିଲା ସେମାନେ ପୁଣି ଇଂରେଜୀକୁ ଆପଣାଇ ନେଲେ। ଅଭିଭାବକମାନେ ପିଲାମାନଙ୍କୁ ଇଂରେଜୀ ମାଧ୍ୟମ ସ୍କୁଲରେ ପଢ଼ାଇବାକୁ ଚାହିଁଲେ। ସହରରେ ଏବଂ ଗାଁ ଗହଳରେ ମଧ୍ୟ ପିଲାଙ୍କୁ ଇଂରେଜୀ ପଢ଼ାଇବା ପାଇଁ ସ୍କୁଲମାନ ଛତୁ ଫୁଟିବା ଭଳି ଖୋଲିବାରେ ଲାଗିଲେ।

ଏହି ପରିସ୍ଥିତିରେ ଦଳିତମାନେ ମଧ୍ୟ ଦାବୀ କଲେ ଯେ ପିଲାଙ୍କର ପାଠପଢ଼ା ଇଂରେଜୀ ମାଧ୍ୟମରେ ହିଁ ହେଉ। ସେମାନଙ୍କର ଯୁକ୍ତି ହେଲା, ଧନୀ ଲୋକେ ତାଙ୍କ ପିଲାଙ୍କୁ ଇଂରେଜୀ ସ୍କୁଲକୁ ପଠାଇ ପାରୁଛନ୍ତି, କିନ୍ତୁ ଗରିବ ଦଳିତମାନେ ସରକାରୀ ସ୍କୁଲ ଉପରେ ନିର୍ଭର କରୁଛନ୍ତି, ଯେଉଁଠାରେ ଇଂରେଜୀ ଶିକ୍ଷା ନାହିଁ। ସେଥିପାଇଁ ସେମାନେ ଅନେକ ପଛରେ ପଡ଼ି ଯାଉଛନ୍ତି। ତାଙ୍କର ଆଉ ଗୋଟିଏ ଯୁକ୍ତି ହେଲା ଯେ ଇଂରେଜୀ ଏକ ନିରପେକ୍ଷ ଭାଷା। ଭାରତୀୟ ଆର୍ଯ୍ୟ ଭାଷାମାନେ ସଂସ୍କୃତ ଭାଷା ପ୍ରଭାବିତ ହୋଇଥିବାରୁ ବ୍ରାହ୍ମଣବାଦରୁ ମୁକ୍ତ ନୁହନ୍ତି। କିଛି ଦଳିତ ନେତା ସେଥିପାଇଁ ସ୍ଥିର କରିଛନ୍ତି ଯେ ସେମାନେ 'ଇଂରେଜୀ ଦେବୀ'ଙ୍କର ପୂଜା କରିବେ। ଏଥିପାଇଁ ଏହି ଦେବୀଙ୍କର ମୁଣ୍ଡରେ ଟୋପି ଓ ହାତରେ କଲମ ଥିବା ଗୋଟିଏ ଅଢ଼େଇ ଫୁଟ ଉଚ୍ଚ ମୂର୍ତ୍ତି ତିଆରି କରାଯାଇଛି। ଶେଷ ଖବର ଅନୁଯାୟୀ ମନ୍ଦିର ସ୍ଥାପନା ପାଇଁ ଉତ୍ତର ପ୍ରଦେଶରେ ଜାଗା ଖୋଜା ଚାଲିଥିଲା ଓ ଲର୍ଡ ମ୍ୟାକଲେଙ୍କ ଜନ୍ମଦିନରେ ଇଂରେଜୀ ଭାଷା ଦିବସ ପାଳନ କରିବା ପାଇଁ ଆୟୋଜନ ହେଉଥିଲା।

ଏହି ଭଳି ଭାବରେ ଆମେ ସମସ୍ତେ ବର୍ତ୍ତମାନ ଇଂରେଜୀ ଭାଷା ସାମ୍ରାଜ୍ୟର ଉପନିବେଶ ହୋଇ ରହିଥିବା ବେଳେ ଆମ ଓଡ଼ିଆ ଭାଷାର ସ୍ଥିତି କଣ? ସାହିତ୍ୟ ଓ ସାମ୍ବାଦିକତା ବାହାରେ ଭାଷାର ବ୍ୟବହାର ଶାସନ, ଶିକ୍ଷା ଓ ସମାଜରେ। ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇବା ପରେ ଆମେ ଅନ୍ତତଃ ଆମ ଭାଷା ବିଷୟରେ ସଚେତନ ହୋଇ ଯାଇଛୁ। ତେବେ ତ୍ରିବିଧ କ୍ଷେତ୍ରରେ ଆମ ଭାଷା ସଙ୍କୁଚିତ ହେବା ଭଳି ବୋଧ ହେଉଛି।

ପ୍ରଥମେ ଶାସନ କଥା ଦେଖାଯାଉ। ଓଡ଼ିଶାର ଅଫିସମାନଙ୍କରେ ଓଡ଼ିଆ ବ୍ୟବହାର ହେଉ ନଥିବାରୁ ସାଧାରଣ ଲୋକ ସିଧାସଳଖ ନ୍ୟାୟରୁ ବଞ୍ଚିତ ହେଉଛନ୍ତି, ହଇରାଣ ହେଉଚନ୍ତି ଏବଂ ଖର୍ଚ୍ଚାନ୍ତ ହେଉଚନ୍ତି କାରଣ ନିଜର କାମ ପାଇଁ ସେମାନଙ୍କୁ ଇଂରେଜୀ ଜାଣିଥିବା ଦଲାଲ ବା ପରୋପକାରୀ ବ୍ୟକ୍ତିଙ୍କ ଉପରେ ନିର୍ଭର କରିବାକୁ ପଡୁଛି। ଅଫିସମାନଙ୍କରେ ଓଡ଼ିଆ ବ୍ୟବହାର କରିବା ପାଇଁ ୧୯୫୪ ମସିହାରେ 'ଓଡ଼ିଶା କାର୍ଯ୍ୟାଳୟ ଭାଷା ଆଇନ' ପ୍ରବର୍ତ୍ତିତ ହୋଇଥିଲା। ତା ପରେ କ୍ରମାଗତ ନିର୍ଦ୍ଦେଶନାମା ଜାରି କରାଯାଉଛି ଏଇ କଥାକୁ ଦୋହରାଇ, ଏବଂ ଏ ଭଳି ଏକ ଶେଷ ନିର୍ଦ୍ଦେଶନାମା ଯାଇଛି ଡିସେମ୍ବର ୨୦୧୪ରେ। କିନ୍ତୁ ସରକାରୀ କାମରେ ଓଡ଼ିଆର ବ୍ୟବହାର ନିର୍ଦ୍ଦେଶନାମା ପଠାଇବାରେ ସୀମିତ ରହିଛି ଏବଂ ଷାଠିଏ ବର୍ଷ ପରେ ମଧ ଶାସନ କାର୍ଯ୍ୟ ମୋଟାମୋଟି ଇଂରେଜୀରେ ହିଁ ଚାଲୁଛି।

ଶିକ୍ଷାରେ ଭାଷାକୁ କେତେ ପ୍ରାଧାନ୍ୟ ଦିଆଯାଏ ଏବଂ ନିଜ ନିଜ ଭାଷା ବିଷୟରେ ପୃଥିବୀର ଜନନାୟକମାନେ କିପରି ସଚେତନ ଓ ସକ୍ରିୟ ତାହା ଗୋଟିଏ ଉଦାହରଣରୁ ଜଣାପଡ଼ିବ। ଭାରତ ସରକାର ନିଷ୍ପତ୍ତି ନେଇଥିଲେ ଯେ କେନ୍ଦ୍ରୀୟ ବିଦ୍ୟାଳୟମାନଙ୍କରେ ସଂସ୍କୃତ ବଦଳରେ ଜର୍ମାନ ଭାଷା ନେବାର ଯେଉଁ ବ୍ୟବସ୍ଥା ଥିଲା, ତାହା ଉଠାଇ ଦିଆଯିବ। ଜର୍ମାନୀରୁ ଏହାର ପ୍ରତିବାଦ ହୋଇଥିଲା। ନଭେମ୍ବର ୨୦୧୫ରେ ପ୍ରଧାନମନ୍ତ୍ରୀ ଏକ ଶିଖର ସମ୍ମିଳନୀ ପାଇଁ କାନ୍‌ବେରା ଯାଇଥିବାବେଳେ ଜର୍ମାନ ଚାନ୍‌ସେଲର୍ ଆଂଜେଲା ମେର୍କେଲ ସେଠାରେ ତାଙ୍କୁ ଭେଟି ଏ ବିଷୟରେ ଆଲୋଚନା କରିଥିଲେ।

ଓଡ଼ିଶାରେ କିନ୍ତୁ ସ୍କୁଲ କଲେଜ ପାଠରେ ଓଡ଼ିଆ ଭାଷା ରହିବା ବିଷୟରେ ଓଡ଼ିଶା ସରକାର ସଂପୂର୍ଣ୍ଣ ଉଦାସୀନ। ଆମ ଶିକ୍ଷା ବ୍ୟବସ୍ଥାରେ ଓଡ଼ିଆ ଭାଷାକୁ କି ଭଳି ଅବମାନନା କରାଯାଉଛି ସେ ବିଷୟରେ ଏକ ଦୀର୍ଘ ପ୍ରବନ୍ଧରେ ଦେବୀ ପ୍ରସନ୍ନ ପଟ୍ଟନାୟକ ନିମ୍ନଲିଖିତ ତଥ୍ୟମାନ ଦେଇଛନ୍ତି : (ସମ୍ବାଦ , ୧୭.୧୦.୨୦୧୪)

- ଉତ୍କଳ ବିଶ୍ୱବିଦ୍ୟାଳୟ ହେବାର ୨୪ ବର୍ଷ ପରେ ଓଡ଼ିଆ ବିଭାଗ ଖୋଲିଲା।
- ଫକୀରମୋହନ ବିଶ୍ୱବିଦ୍ୟାଳୟ ହେବାର ୧୨ ବର୍ଷ ପରେ ଓଡ଼ିଆ ବିଭାଗ ଖୋଲିଲା, ତା ପୁଣି ପଇସା ଦେଇ ପଢ଼ିବା ବିଭାଗ।
- ସଂସ୍କୃତି ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗକୁ ଉଠାଇ ଦିଆଗଲା। ।
- ସ୍କୁଲ ଶିକ୍ଷା ବିଭାଗର ପ୍ରାଥମିକ ଶ୍ରେଣୀରେ ଇଂରେଜୀ ହିନ୍ଦୀ ସଂସ୍କୃତ ଶିକ୍ଷକ ଅଛନ୍ତି,

ଓଡ଼ିଆ ଶିକ୍ଷକ ନାହାନ୍ତି, ମାଧ୍ୟମିକ ଶ୍ରେଣୀରେ ସଂସ୍କୃତ ଓଡ଼ିଆର ବିକଳ୍ପ, ଏବଂ ଇଂରେଜୀ ମାଧ୍ୟମ ସ୍କୁଲରେ ଓଡ଼ିଆ ବାଧ୍ୟତାମୂଳକ ନୁହେଁ।

ସେହିପରି ୧୭.୧୦. ୨୦୧୪ ତାରିଖ 'ସମ୍ବାଦ'ରେ ସଂପାଦକଙ୍କୁ ପତ୍ର ସ୍ତମ୍ଭରେ ଜଣେ ପତ୍ର ଲେଖକ ଜଣାଇଥିଲେ ଯେ ଠିକା ଶିକ୍ଷକ ନିଯୁକ୍ତି ପାଇଁ ଦିଆଯାଇଥିବା ସରକାରୀ ବିଜ୍ଞାପନରେ ସଂସ୍କୃତ, ଉର୍ଦ୍ଦୁ, ତେଲୁଗୁ ଓ ହିନ୍ଦୀ ଶିକ୍ଷକଙ୍କ ପାଇଁ ଚାକିରି ଅଛି, ଓଡ଼ିଆ ଶିକ୍ଷକଙ୍କ ପାଇଁ ନାହିଁ।

ଆମ ଶିକ୍ଷା ବ୍ୟବସ୍ଥାରେ ବାଧ୍ୟତାମୂଳକ ଓଡ଼ିଆ ପଢ଼ାଇବାର ନିୟମ ନାହିଁ ଏବଂ ଓଡ଼ିଶାର ଅଧିକାଂଶ ସ୍କୁଲରେ ଓଡ଼ିଆ ଭାଷା ଶିକ୍ଷକ ନାହାନ୍ତି। ଏ ବିଷୟରେ ଆମକୁ କର୍ଣ୍ଣାଟକର ଆଦର୍ଶ ନେବାକୁ ପଡ଼ିବ। ସେଠାରେ ଅଦାଲତ ଆଦେଶ ଦେଇଥିଲେ ଯେ ପିଲାମାନେ କେଉଁ ଭାଷାରେ ପାଠ ପଢ଼ିବେ ତାହା ତାଙ୍କର ବାପା ମା'ଙ୍କ ଉପରେ ଛାଡ଼ି ଦିଆଯିବ। ଏହି ଆଦେଶକୁ ଅକାମୀ କରିବା ପାଇଁ କର୍ଣ୍ଣାଟକ ସରକାର ସ୍ଥିର କରିଛନ୍ତି ଯେ ସେମାନେ ବର୍ତ୍ତମାନ ଆଇନ ତିଆରି କରିବେ ଯାହା ଦ୍ୱାରା ସବୁ ସ୍କୁଲରେ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପାଠ କେବଳ କନ୍ନଡ଼ ଭାଷାରେ ପଢ଼ା ହେବ ଏବଂ ଦ୍ୱାଦଶ ଶ୍ରେଣୀ ପର୍ଯ୍ୟନ୍ତ ସ୍କୁଲରେ ବାଧ୍ୟତାମୂଳକ ଭାବେ କନ୍ନଡ଼ ପଢ଼ା ହେବ।(ଟାଇମ୍‌ସ୍ ଅଫ୍ ଇଣ୍ଡିଆ, ୬ ମାର୍ଚ୍ଚ ୨୦୧୫)

ଆଉ ରହିଲା ଓଡ଼ିଶାର ଘରେ ବାହାରେ, ହାଟ ବଜାରରେ ଓ ସାମାଜିକ ଚଳଣିରେ ଓଡ଼ିଆ ବ୍ୟବହାର କଥା। ଭାରତର ସବୁ ଅଞ୍ଚଳରେ ଲୋକଙ୍କର ଅଭିଯୋଗ ଯେ ପିଲାମାନେ ଆଉ ମାତୃଭାଷାରେ ଆଗ୍ରହୀ ନୁହନ୍ତି। ମୁ ଭାବୁଛି ଏହା ଏକ ସହରୀ ସମସ୍ୟା ଏବଂ ଏଥିପାଇଁ ପିଲାମାନେ ନୁହଁ ବାପା ମା ଦାୟୀ । ପାଠପଢ଼ା ଓଡ଼ିଆରେ ଆରମ୍ଭ ହେଲେ ଏବଂ ସ୍କୁଲ ଶେଷ ହେବା ପର୍ଯ୍ୟନ୍ତ ଓଡ଼ିଆ ବାଧ୍ୟତାମୂଳକ ହେଲେ ଏ ସମସ୍ୟା ରହିବ ନାହିଁ। ପିଲାମାନଙ୍କର ଓଡ଼ିଆ କହିବାରେ କୌଣସି ସଂକୋଚ ନ ଥିବ ଓ ସେମାନେ ସ୍ୱତଃ ପ୍ରବୃତ୍ତ ହୋଇ ଓଡ଼ିଆ କହିବେ। କିଛି ଲୋକ ଯଦି ଇଂରେଜୀରେ ବାହାଘର ନିମନ୍ତ୍ରଣ ପତ୍ର ଛପାନ୍ତି ଓ ପିଲାଏ ତାଙ୍କୁ ଡାଡି ମମି ଡାକିବାକୁ ଶିଖାନ୍ତି, ସେତିକିରେ ଆମ ଦେଶ ଓ ଭାଷା କୁଆଡ଼େ ଭାସିଯିବ ନାହିଁ। କାଳକ୍ରମେ ଏ ଭଳି ପରିସ୍ଥିତି ହେବ ଯେ ଏ ଲୋକମାନେ ସମାଜରେ ଉପହାସର ପାତ୍ର ହେବେ।

ଆମ ପିଲାମାନେ ଅବଶ୍ୟ ଇଂରେଜୀ ପଢ଼ିବେ କାରଣ ଇଂରେଜୀରେ ହିଁ ତାଙ୍କର ଭବିଷ୍ୟତ। ଭାଲଚନ୍ଦ୍ର ନେମାଡେଙ୍କ ଭାଷାରେ ଇଂରେଜୀ ଜୋତା ଭଳି ଦରକାରୀ, ତାକୁ ମୁଣ୍ଡରେ ନ ରଖି ପାଦରେ ବ୍ୟବହାର କରିବାକୁ ହେବ। ଆମ ପିଲାମାନେ ଓଡ଼ିଆ ପଢ଼ାରୁ ଆରମ୍ଭ କରି ଉପର କ୍ଲାସରେ ନିଶ୍ଚିତ ଭାବରେ ଇଂରେଜୀ ପଢ଼ିବେ। ଯେ ଓଡ଼ିଆରେ ଭଲ କରିବ ସେ ଇଂରେଜୀରେ ମଧ୍ୟ ସେତିକି ଭଲ କରିବ। ଆମକୁ ସବୁବେଳେ ମନେ ରଖିବାକୁ ହେବ ଯେ ଇଂରେଜୀ ପଢ଼ିଲେ ଓଡ଼ିଆ ପଢ଼ିବା ମନା, ଏଭଳି କୌଣସି ଆଇନ ତିଆରି ହୋଇନାହିଁ।

ଆମ ପୂର୍ବ ପୀଢ଼ୀମାନଙ୍କର ପିଲାଦିନେ ତାଙ୍କର ଯେଉଁ ହୀନମନ୍ୟତା ଥିଲା ତା ଆଉ ନାହିଁ। ଆଜିର ଓଡ଼ିଆ ପିଲାମାନେ ନିଜକୁ କୌଣସି ଗୁଣରେ ଅନ୍ୟ ପ୍ରଦେଶର ପିଲାଙ୍କଠାରୁ ନ୍ୟୂନ ବୋଲି ଭାବୁନାହାନ୍ତି। ତେଣୁ ସେମାନଙ୍କୁ ଓଡ଼ିଆ ସ୍ୱାଭିମାନ ବା ଓଡ଼ିଆ ଅସ୍ମିତା ବିଷୟରେ ବକ୍ତୃତା ଦେବାର କୌଣସି ଆବଶ୍ୟକତା ନାହିଁ। ଆମର ଶିକ୍ଷା ବ୍ୟବସ୍ଥା ଠିକ ହେଲେ ଆମ ପିଲାମାନେ ମୂଳରୁ ଭଲ ଓଡ଼ିଆ ଶିଖିବେ, ପରେ ଭଲ ଇଂରେଜୀ ବି ଆୟତ୍ତ କରିବେ ଓ ଅନ୍ୟ ପ୍ରଦେଶର ପିଲାମାନଙ୍କ ସହିତ ପ୍ରତିଯୋଗିତା କରିପାରିବେ।

ତା ପରେ ସେମାନେ ସରସ୍ୱତୀ ଦେବୀଙ୍କର ପୂଜା କରିବେ କି ଇଂରେଜୀ ଦେବୀଙ୍କର, ସେ କଥା ତାଙ୍କ ଉପରେ ଛାଡ଼ି ଦିଆଯାଉ।

*ମାର୍ଚ୍ଚ, ୨୦୧୪*

# କବି ନାମକ ଜନ୍ତୁ : ପୋଷା ନା ଅରଣା

ସବୁ ସମୟରେ କିଛି ଶ୍ରେଣୀର ଲୋକ ସମାଜର ମୂଳ ସ୍ରୋତରେ ନ ରହି ତାର ସୀମାନ୍ତରେ ରହିଥାନ୍ତି, ଯଥା : କେଳା, ଗୁଣିଆ, ବାବାଜୀ, ଚୋର, ପାଗଳ, ମଡ଼ା ଚଣ୍ଡିଆ, ଭିଖାରୀ, ତାନ୍ତ୍ରିକ, ମଦ୍ୟପ, ଗୁଣ୍ଡା, ଠକ, ନାଟୁଆ, ପେଶାଗତ ପ୍ରେମିକ ଇତ୍ୟାଦି। ଏମାନେ ଜୀବିକା ଓ ଜୀବନ ଚର୍ଯ୍ୟା ପାଇଁ ସାଧାରଣ ଲୋକଙ୍କ ଉପରେ ନିର୍ଭର କରି ଚଳନ୍ତି, କିନ୍ତୁ ସେମାନଙ୍କ ସହିତ ଯେତେ ସମ୍ଭବ କ'ଣ ଯୋଗାଯୋଗ ରଖନ୍ତି। ପୋଷାକ ପତ୍ର, ଆଚାର ବ୍ୟବହାର ଓ ଚାଲିଚଳଣରେ ସେମାନେ ସାଧାରଣ ଲୋକଙ୍କଠାରୁ ଭିନ୍ନ ରହନ୍ତି। ଗୃହପାଳିତମାନଙ୍କଠାରୁ ଏହି ଗୋଠଖଣ୍ଡିଆମାନେ ସହଜରେ ବାରି ହୋଇଯାନ୍ତି। ସାଧାରଣ ସଂସାରୀଲୋକ କସ୍ମିନ କାଳେ ସେମାନଙ୍କୁ ପସନ୍ଦ କରନ୍ତି ନାହିଁ।

କେହି କେହି କବିକୁ ମଧ୍ୟ ଏହି ସମାଜ ବହିର୍ଗତ ଗୋଷ୍ଠୀରେ ରଖିବାକୁ ଚାହିଁବେ, କାରଣ କବିମାନଙ୍କଠାରେ ମଧ୍ୟ ଏହି ଗୋଷ୍ଠୀର ଅନେକ ଗୁଣ ବା ଦୋଷ ଦେଖିବାକୁ ମିଳେ। କବିମାନଙ୍କର ବେଢଙ୍ଗ ବ୍ୟବହାରକୁ ଲକ୍ଷ୍ୟ କରି, ଏବଂ ବିଶେଷରେ ଏଜରା ପାଉଣ୍ଡଙ୍କୁ ଆଖିରେ ରଖି, ଜର୍ଜ ଅରୱେଲ କହିଥିଲେ, ''କବିମାନଙ୍କ ପାଖରୁ ମଧ୍ୟ ନ୍ୟୁନତମ ସାଧାରଣ ସୌଜନ୍ୟ ଆଶା କରାଯାଏ।'' କବିକୁ ପାଗଳ ଭଳି ମନେ କରିବା ଅତି ଜଣାଶୁଣା କଥା। ଶେକ୍ସପିଅର କବିକୁ ପାଗଳ ଓ ପ୍ରେମିକ ସହିତ ଏକାଠି କରି କହିଛନ୍ତି ଯେ ଏ ସମସ୍ତଙ୍କର କଳ୍ପନା ଶକ୍ତି ଅତି ପ୍ରଖର। ଆମର କବି ବଳରାମ ଦାସଙ୍କୁ ମତ୍ତ ବଳରାମ କୁହାଯାଇଛି। 'ମତ୍ତ'ର ଗୋଟିଏ ଅର୍ଥ ପାଗଳ, କିନ୍ତୁ ଏହାର ଅନ୍ୟାନ୍ୟ ଅର୍ଥମାନ – ମାତାଲ, ଗର୍ବିତ, ଆତ୍ମହରା, ବିହ୍ୱଳ ଇତ୍ୟାଦି – ମଧ୍ୟ କବିମାନଙ୍କ ପ୍ରତି ପ୍ରଯୁଜ୍ୟ।

କବିମାନେ ଯେ ବୋହେମିଆନ ବା ରୂଢ଼ିମୁକ୍ତ, ଉଚ୍ଛୃଙ୍ଖଳ ଓ ନିରଂକୁଶ ପ୍ରକୃତିର, ଏପରି ଏକ ପ୍ରଚଳିତ ଧାରଣା ଅଛି। କବିମାନଙ୍କର ଏହି ଭାବମୂର୍ତ୍ତି ସହିତ ଦୁଇଟି ସାହିତ୍ୟିକ ଆନ୍ଦୋଳନ ଜଡ଼ିତ – ଆମ ଦେଶର ଅତି ପୁରୁଣା ଭକ୍ତି ଓ ଆମେରିକାର ନିକଟ ଅତୀତର ବୀଟ୍ । ଆମ ଭକ୍ତି କବିମାନେ ଅନେକ ଦୃଷ୍ଟିରେ ବିଦ୍ରୋହୀ ଥିଲେ, ସେମାନେ ଧର୍ମ, ଜାତି, ଲିଙ୍ଗ ଭେଦରେ ବିଶ୍ୱାସ କରୁ ନଥିଲେ ଓ ଅନେକ ସାଂସାରିକ ଚାଲିଚଳଣକୁ ମାନୁ ନଥିଲେ। ମୀରା, କବୀର, କନ୍ନଡ଼ ବୀରଶୈବ କବି ଓ ଆମର ବୈଷ୍ଣବ କବିମାନେ ଏହାର ଉଦାହରଣ। ସେହିଭଳି ନ୍ୟୁୟର୍କ ଓ ସାନଫ୍ରାନ୍ସିସକୋରେ

ଆରମ୍ଭ ହୋଇଥିବା ବୀଟ୍ ଆନ୍ଦୋଳନର କବିମାନେ ସମାଜ ବନ୍ଧନରେ ବିଶ୍ୱାସ କରୁନଥିଲେ, ସ୍ୱଚ୍ଛନ୍ଦ ଜୀବନ କଟାଉଥିଲେ, ଯାଯାବର ଭଳି ରହୁଥିଲେ ଓ ଉଚ୍ଛୃଙ୍ଖଳ ପ୍ରେମ ଓ ମାଦକ ଦ୍ରବ୍ୟ ସେବନ କରୁଥିଲେ। ଆଲେନ ଗିନ୍ସ୍‌ବର୍ଗ ଓ ଜାକ କେରୁଆକ୍ ଏ ଆନ୍ଦୋଳନର ଦୁଇଜଣ ପ୍ରମୁଖ ଲେଖକ। ଆଲେନ୍ ଓ ତାଙ୍କର ପୁରୁଷ ବନ୍ଧୁ ପିଟର ଅର୍ଲଭସ୍କି ଓଡ଼ିଶା ଆସିଥିବା ବେଳେ ଗେରୁଆ ପୋଷାକ ପିନ୍ଧି ସାଧୁ ବେଶରେ ଜଗନ୍ନାଥ ମନ୍ଦିର ଭିତରେ ପଶିଥିଲେ ବୋଲି କୁହାଯାଏ।

ଅବଶ୍ୟ ଏ କଥା ମଧ୍ୟ ସତ ଯେ ସବୁ କବି ଏକା ଭଳି ନୁହନ୍ତି। ପ୍ରତିଟି ପାଗଳ କବି ପାଇଁ ସମାନ ଭାବରେ ଜଣେ ଜଣେ ଶାନ୍ତ ସୁଧାର, ବିଚରା ଓ ସଦାଚାରୀ କବି ମଧ୍ୟ ଅଛନ୍ତି। ଯଦି ଗୋଟିଏ ପାଖରେ ଅଛନ୍ତି ଦାଢ଼ି ରଖିଥିବା କୁତ୍ସିତ ଭାବରେ ରହୁଥିବା ୱାଲ୍‌ଟ୍ ହ୍ୱିଟ୍‌ମ୍ୟାନ, ଅନ୍ୟ ପାଖରେ ଅଛନ୍ତି ଇନସ୍ୟୁରାନ୍ସ ଚାକିରି କରୁଥିବା ଭଦ୍ର ଓ ରକ୍ଷଣଶୀଳ ୱାଲେସ ଷ୍ଟିଭେନ୍ସ। ଓଡ଼ିଶାରେ ଭକ୍ତକବିମାନଙ୍କୁ ଛାଡ଼ି ଦେଲେ ଆମର ଅନ୍ୟ କବିମାନେ ରାଜାଙ୍କର ପୃଷ୍ଠପୋଷକତା ଉପରେ ନିର୍ଭର କରୁଥିଲେ ଏବଂ ପରବର୍ତ୍ତୀ ସମୟରେ ସରକାରୀ ଚାକିରିଆ ଥିଲେ, ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟଙ୍କଠାରୁ ଆରମ୍ଭ କରି ରାଧାନାଥ ରାୟ, ଗୋପୀନାଥ ମହାନ୍ତିଙ୍କୁ ନେଇ ଏ ପର୍ଯ୍ୟନ୍ତ। ଏମାନଙ୍କର ବୋହେମିଆନ ହେବାର କୌଣସି ସମ୍ଭାବନା ନଥିଲା ବା ନାହିଁ।

କବିଙ୍କୁ ଚାକରି କରିବାକୁ ପଡ଼େ କାରଣ କବିତାରେ ଟଙ୍କା ନାହିଁ, ଯେପରିକି ଟଙ୍କାରେ କବିତା ନାହିଁ। ତା ପାଇଁ କି ପ୍ରକାରର ଚାକିରି ଦରକାର ସେ ବିଷୟରେ ମତ ଦ୍ୱୈଧ ଅଛି। ଗୋଟିଏ ମତରେ ଏପରି ଚାକିରି ନେବ ଯାହାର ସାହିତ୍ୟ ସହିତ ସଂପର୍କ ଅଛି, ଯଥା ଖବର କାଗଜ, ପ୍ରକାଶନ ସଂସ୍ଥା। ଅନ୍ୟ ମତରେ ଚାକିରିଟି ସାହିତ୍ୟରୁ ଯେତେ ଦୂରରେ ରହିବ ସେତିକି ଭଲ, କାରଣ ତା ହେଲେ ସାହିତ୍ୟ ଓ ଜୀବିକା ପରସ୍ପର ପାଖରୁ ଅଲଗା ରହିବେ, ଯାହା ସୃଜନ କାମ ପାଇଁ ଭଲ। ତେବେ ସତ କଥା ହେଲା ଯେ ଲେଖକ ପାଇଁ ଆଦର୍ଶ ବୃତ୍ତି ଭଳି କିଛି ନାହିଁ। ଯଦି ସେ ଭଲ ଲେଖକ, ସେ ଯେ କୌଣସି ବୃତ୍ତି କଲେ ବି ତାର କ୍ଷତି ହେବ ନାହିଁ, ସେ ଯଦି ଖରାପ ଲେଖକ କୌଣସି ବି ବୃତ୍ତି ତାକୁ ତାର ଲେଖାରେ ସାହାଯ୍ୟ କରିବ ନାହିଁ। ଏ ବିଷୟରେ ଉଇଲିଆମ ଫକନର କହିଥିଲେ ଯେ ଲେଖକ ପାଇଁ ସବୁଠାରୁ ଭଲ ଜୀବିକା ହେଉଛି ଗଣିକାଳୟରେ ପିଆନୋ ବଜାଇବା, କାରଣ ସେଥିରେ କାମ କମ, ସେଠାରେ ଭଲ ଲୋକଙ୍କ ସହିତ ଯୋଗାଯୋଗ ହୁଏ ଏବଂ ମଜା ମଜା କଥାବାର୍ତ୍ତା ପାଇଁ ଅବସର ମିଳେ। ସରକାରୀ ଚାକରିରେ ମଧ୍ୟ ଊଣା ଅଧିକେ ଏ ସବୁ ସୁଯୋଗ ଉପଲବ୍ଧ।

ଯେଉଁ ଗୁଣ ଦୁଇଟି ଯୋଗୁ କବିମାନେ ବିଶେଷ ଭାବେ ଅପଖ୍ୟାତ ଓ ସମାଲୋଚିତ, ସେଇଟି ହେଲା ପାନ ଦୋଷ ଓ ପରଦାରଗମନ, କିମ୍ବା ଆମ ଇତର ଗ୍ରାମ୍ୟ ଭାଷାରେ କହିଲେ ମଦ ମାଇକିନା। ଏହି ଗୁଣ ପାଇଁ ପାଶ୍ଚାତ୍ୟ କବିମାନେ ବେଶି ଜଣାଶୁଣା। ଏଥିପାଇଁ କବି ଡିଲାନ ଟମାସଙ୍କର ଉଦାହରଣଟି ନିଆଯାଉ।

ଡିଲାନ ନ୍ୟୁୟର୍କରେ ଥିବା ବେଳେ ପ୍ରେମିକା ଲିଜ୍‌କୁ ହୋଟେଲରେ ଛାଡ଼ି ଦେଇ ରାତି ଦୁଇଟାରେ ପାଖ ବାର୍‌କୁ ଯାଇ ଅଠର ପେଗ୍ ହ୍ୱିସ୍କି ପିଇଲେ। ପରଦିନ ଲିଜ୍‌କୁ ସାଙ୍ଗରେ ନେଇ ପୁଣି ସେଇ ବାର୍‌କୁ ଗଲେ ଏବଂ ଅଚେତନ ଅବସ୍ଥାରେ ରହିଲେ ଓ ଦି ଦିନ ପରେ ତାଙ୍କର ସ୍ତ୍ରୀ ଆସି ପ୍ରଥମ ପ୍ରଶ୍ନ କଲେ, ସେ ବ୍ଲଡି ଲୋକଟା କଣ ଏ ଯାଏ ମରିନି ? ଆଉ ଦି ଦିନ ପରେ ଡିଲାନ ପ୍ରାଣତ୍ୟାଗ କଲେ। ସେତେବେଳକୁ ତାଙ୍କର ବୟସ ୩୯ ମାତ୍ର। ତାଙ୍କର ଶେଷ କଥା ଥିଲା, ମୁଁ ଅଠର ପେଗ୍ ପିଇଛି, ଏଇଟି ନିଶ୍ଚିତ ଗୋଟିଏ ରେକର୍ଡ।

କବିମାନେ ସବୁବେଳେ ମଦ୍ୟପାନର ମହିମାଗାନ କରିଛନ୍ତି। ଏଥିରେ ପ୍ରଥମେ ମନକୁ ଆସନ୍ତି ଓମର ଖୈୟାମ। ଆମର ଉର୍ଦ୍ଦୁ କବିମାନେ ଏ ବିଷୟରେ ସିଦ୍ଧହସ୍ତ ଏବଂ ସେମାନଙ୍କ କବିତାରେ ସୁରା, ସାକୀ, ଜାମ୍, ପ୍ୟାଲା ଓ ଶରାବଖାନା ବହୁଳ ଭାବେ ବ୍ୟବହୃତ। ହିନ୍ଦୀ କବି ହରିବଂଶ ରାୟ ବଚ୍ଚନ ତାଙ୍କର ପ୍ରସିଦ୍ଧ ବହି 'ମଧୁଶାଲା'ରେ ମଦିରାପାନକୁ ଗୌରବାନ୍ୱିତ କରିଛନ୍ତି। ୟେଟ୍‌ସ୍‌ଙ୍କ ଭାଷାରେ, ମୁହଁରେ ମଦ ପଡ଼ିଲେ ଆଖିରୁ ପ୍ରେମ ଉଛୁଳେ ଏବଂ ଆମେ କେବଳ ଏହି ସତ୍ୟକୁ ହିଁ ଜାଣୁ। ଓଡ଼ିଆ ସାହିତ୍ୟରେ କିନ୍ତୁ ମଦିରାକୁ ପ୍ରଶଂସା କରି ପାନଶାଳା ଓ ପାନପାତ୍ର ବିଷୟରେ କବିତା ପାଇବା ଦୁର୍ଲଭ। ଆମ କବି ଅଳ୍ପରେ ସନ୍ତୁଷ୍ଟ ଓ ତାଙ୍କ ପାଇଁ ହାଲୁକା ପାନୀୟ ଯଥେଷ୍ଟ। ସେଥିପାଇଁ ସେ ସଖୀକୁ, ସାକୀକୁ ନୁହେଁ, ଡାକି ପାନପାତ୍ରରେ ଗରମ ଗରମ ଟିକେ ଚା ଢାଳିଦେବା ପାଇଁ କହନ୍ତି।

ଏ ଭଳି ଏକ ଭ୍ରମାତ୍ମକ ଧାରଣା ଅଛି ଯେ ମଦ୍ୟପାନ କଲେ ଲେଖକର କଳ୍ପନା ଖୋଲିଯାଏ ଏବଂ କବି ଅଧିକ ସୃଜନଶୀଳ ହୋଇଯାଏ। ବଙ୍ଗଳା କବି ବିନୟ ସରକାର ପ୍ରଶ୍ନ କରିଥିଲେ, କ' ବୋତଲ ଟାନିଲେ ମଦ ରଘୁବଂଶମ୍ ଯାୟ ଗୋ ଲେଖା। ସ୍ୱିନ୍‌ବର୍ନଙ୍କ ବିଷୟରେ କୁହାଯାଇଛି ଯେ ସେ ଅତି ମଦ୍ୟପ ଥିଲାବେଳେ ତାଙ୍କର ଶ୍ରେଷ୍ଠ କବିତାମାନ ଲେଖିଥିଲେ, ପିଇବା ଛାଡ଼ିଦେବା ପରେ ସେ ଯାହା ସବୁ ଲେଖିଲେ ତା ଅପେକ୍ଷାକୃତ ନିମ୍ନମାନର। ଅତ୍ୟଧିକ ମଦ୍ୟପାନ ହେତୁ ହେମିଙ୍ଗୱେ ଶେଷ ଜୀବନରେ ଆଉ ଭଲ କିଛି ଲେଖି ପାରିଲେ ନାହିଁ, ଏବଂ ସ୍କଟ୍ ଫିଜରାଲ୍ଡ ମାତ୍ର ୪୪ ବର୍ଷ ବୟସରେ ମରିଗଲେ। ଅପର ପକ୍ଷରେ ଏମାନଙ୍କର ସମସାମୟିକ ଏଡମଣ୍ଡ ଉଇଲସନ ଏମାନଙ୍କଠାରୁ ବେଶି ପିଉଥିବା ସତ୍ତ୍ୱେ ପ୍ରଚୁର ଓ ଭଲ ଲେଖା ଲେଖି ପାରିଲେ ଏବଂ ବେଶିଦିନ ବଞ୍ଚିଲେ।

ଏ ସବୁର ନିଷ୍କର୍ଷ ହେଲା ଯେ ପିଇବା ସହିତ ଲେଖକର ଲେଖନ ଶକ୍ତିର କୌଣସି ସଂପର୍କ ନାହିଁ। ମଦର ଏକମାତ୍ର ପ୍ରଭାବ ଲେଖକର ଯକୃତ ଉପରେ, ତାର ସୃଜନଶୀଳତା ଉପରେ ନୁହେଁ। ମଦ ପିଇବାରେ ଭଲ ଲେଖା ବାହାରେ ନାହିଁ, ବାହାରେ ସିରୋସିସ୍ ରୋଗ।

ଆମ ଦେଶରେ ଲୋକମାନେ(କେବଳ କବି ନୁହନ୍ତି) ଲୁଚାଇ ଲୁଚାଇ ପିଉଥିବାର ଉଦାହରଣ ପ୍ରଚୁର। ସମସ୍ତେ ଜାଣନ୍ତି ଯେ ରବୀନ୍ଦ୍ରନାଥ ପିଇବାର ବିରୋଧୀ ଥିଲେ, କିନ୍ତୁ ସେତେବେଳେ ଶାନ୍ତିନିକେତନରେ ରହୁଥିବା ହଙ୍ଗେରୀୟ ଲେଖିକାଙ୍କର ବହିରୁ ଜଣାଯାଏ

ଯେ ରବୀନ୍ଦ୍ରନାଥ ଗୋପନରେ ଇଉରୋପୀୟ ଅତିଥିମାନଙ୍କୁ ପାନୀୟରେ ଆପ୍ୟାୟିତ କରୁଥିଲେ। ବଙ୍ଗାଳୀମାନଙ୍କ ବିରୋଧ ଯୋଗୁ ଏ ବହିଟି ଏ ପର୍ଯ୍ୟନ୍ତ ଭାରତବର୍ଷରେ ଛପା ଯାଇନାହିଁ। ଗୋପନରେ ପିଉଥିବା ଲୋକଙ୍କର ଗୋଟିଏ ଭୁଲ ଧାରଣା ଯେ ସେମାନଙ୍କ ପିଇବା ବିଷୟରେ ଅନ୍ୟମାନେ ଏବଂ ବିଶେଷରେ ନିଜର ପରିବାର ଆଦୌ ଅବଗତ ନୁହନ୍ତି।

ଆମ ଫକୀରମୋହନ କିନ୍ତୁ ମଦ୍ୟପାନ ବିଷୟରେ ଓ ନିଜର ସ୍ୱାସ୍ଥ୍ୟ ଉପରେ ତାର କୁପ୍ରଭାବ ବିଷୟରେ ବିସ୍ତାରରେ ଲେଖିଛନ୍ତି। ଆତ୍ମଚରିତରେ ସେ ମଦ୍ୟପାନ କଥା ସମୟାନୁକ୍ରମେ ଏପରି ବର୍ଣ୍ଣନା କରିଛନ୍ତି : ପ୍ରଥମରେ ମୁଁ ମଦ୍ୟକୁ ବିଷତୁଲ୍ୟ ଘୃଣା କରୁଥିଲି। ... ମଦିରା ପ୍ରତି ମୋର ଯେ ଏତେ ବିଦ୍ୱେଷ ଥିଲା ତାହା ଏକାବେଳକେ ବିନିଷ୍ଟ ହୋଇଗଲା।... ଉପାସନା ଉତ୍ତାରେ ଉପାସକମାନେ ବସି ମଦ ଖାଉଁ।... ନିଶା ହେବା ଭୟରେ ଅତିମାତ୍ରାରେ ମଦ୍ୟପାନ କରେ ନାହିଁ। ...ଆମ୍ଭ ତିନିଜଣ ମିଶି ସେହି ତୀକ୍ଷ୍ଣବୀର୍ଯ୍ୟ ମଦ ବୋତଲଟା ଶୂନ୍ୟ କରି ପକାଇଲୁ।...କ୍ଷଣିକ ସ୍ୱାସ୍ଥ୍ୟ ଲାଭ ନିମନ୍ତେ ପ୍ରତିଦିନ ସନ୍ଧ୍ୟା ସମୟରେ ଦୁଇ ତୋଳା ଓଜନର ଦେଶୀ ମଦ୍ୟ ପାନ କରିବାକୁ ଲାଗିଲି। ଇତ୍ୟାଦି।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ଫକୀରମୋହନଙ୍କ ମୃତ୍ୟୁ ପରେ ତାଙ୍କ ଆତ୍ମଚରିତ ଛପାଇବା ବେଳେ ତାଙ୍କ ପୁଅ ମୋହିନୀ ମୋହନ ମଦ୍ୟପାନ ବର୍ଣ୍ଣନାମାନ କାଟି ଦେଇଥିଲେ। ବଞ୍ଚିଥିଲେ ସ୍ୱୟଂ ଫକୀରମୋହନ କହିଥାନ୍ତେ : 'ମୃତ କବିଙ୍କ ରଚନା ଉପରେ କୌଣସି ପ୍ରକାର ଲେଖନୀ ଚାଳନା ବରଞ୍ଚ ମୁଁ ଏକ ପ୍ରକାର ପ୍ରତ୍ୟବାୟ ବିଷୟ ବୋଲି ଜ୍ଞାନ କରେଁ।'' (ରାଧାନାଥଙ୍କ ଲେଖା ପରିବର୍ତ୍ତନ ବିଷୟରେ ବିଶ୍ୱନାଥ କରଙ୍କୁ ପତ୍ର)। ମୋହିନୀ ମୋହନଙ୍କ ଏହି କତୁରୀ ଚାଳନାରୁ କେବଳ ଏତିକି ଜଣାପଡ଼ିବ କିପରି ସେ ସମୟରେ ମଦ୍ୟପାନକୁ ଘୃଣାର ସହିତ ଦେଖା ଯାଉଥିଲା। ବର୍ତ୍ତମାନ ମଧ୍ୟ ଆମ ସମାଜରେ ମଦ୍ୟପାନ ଉପରେ ସରକାରୀ ଚେତାବନୀ ବାହାରେ ଏକ କଠୋର ସାମାଜିକ ପ୍ରତିବନ୍ଧ ଅଛି। ସେଥିପାଇଁ ମଦ୍ୟପାନ ଖୋଲାଖୋଲିଠାରୁ ବେଶି ଲୁଚାଛପାରେ ହୋଇଥାଏ।

ଆମ ସମାଜରେ ପିଇବା ସହିତ ପରନାରୀକୁ ଯୋଡ଼ି ଦିଆଯାଇଛି ଯେପରିକି ମଦ ସହିତ ମଦନର କୌଣସି ସଂପର୍କ ଅଛି। 'ଶୋଲେ' ଫିଲ୍ମରେ ଜୟ ଅମିତାଭ ବଚ୍ଚନ ବସନ୍ତୀର ମାଉସୀ ପାଖକୁ ବିବାହ ପ୍ରସ୍ତାବ ନେଇ ତାକୁ ବୁଝାଉଛନ୍ତି ଯେ ତାଙ୍କର ଚରିତ୍ରବାନ ବନ୍ଧୁ କେବଳ ଶରାବ ପିଇଲେ ହିଁ ଗାନେୱାଲୀ ଘରକୁ ଯାଏ। ବଙ୍ଗଳା ଓ ଓଡ଼ିଶାରେ ବିଂଶ ଶତାବ୍ଦୀର ଆରମ୍ଭ ପର୍ଯ୍ୟନ୍ତ ଜମିଦାର ଓ ଧନୀ ଲୋକମାନେ ଗୋଟିଏ ବାଗାନ ବାଡ଼ି ବା ପ୍ରମୋଦ ଉଦ୍ୟାନ ରଖୁଥିଲେ ଯେଉଁଠାରେ ରାତିରେ ମଦ୍ୟପାନ ସହିତ ବାଇନାଚର ବ୍ୟବସ୍ଥା ମଧ୍ୟ ରହୁଥିଲା। ଏଇଟି ବିବାହିତ ଗୃହସ୍ଥଙ୍କ ପାଇଁ ଏକ ଦ୍ୱିତୀୟ ଗୃହସ୍ଥାଳୀ ଥିଲା।

ଏପରି ଏକ ଧାରଣା ଅଛି ଯେ ବୁଦ୍ଧିଜୀବୀମାନେ ସବୁବେଳେ ପରନାରୀ ଗ୍ରସ୍ତ। କବି

ଅଡେ଼ନ ନିଜର ଗୋଟିଏ କବିତାରେ କହିଛନ୍ତି, ସାଧାରଣ ଲୋକ ବୁଦ୍ଧିଜୀବୀ କହିଲେ ବୁଝନ୍ତି ନିଜ ସ୍ତ୍ରୀ ପ୍ରତି ବିଶ୍ୱାସଘାତ କରିଥିବା ଲୋକ। କବିମାନେ ମଧ୍ୟ ଭାବନ୍ତି ଯେ ତାଙ୍କର ପ୍ରତିଭା ତାଙ୍କୁ ସ୍ୱାଧୀନତା ଦେଇଛି ସାଧାରଣ ଲୋକଙ୍କ ଠାରୁ ଭିନ୍ନ ଭାବେ ଚଳିବା ପାଇଁ ଏବଂ ପରନାରୀ ପ୍ରୀତି ଏହି ସ୍ୱାଧୀନତାମାନଙ୍କରୁ ଅନ୍ୟତମ।

ସମାଜର ଅଗ୍ରନାୟକମାନଙ୍କ ପାଇଁ ସ୍ତ୍ରୀ ଓ ପରିବାର ସବୁବେଳେ ସମସ୍ୟାପୂର୍ଣ୍ଣ। କୁହାଯାଇଥାଏ ଯେ ପ୍ରତ୍ୟେକ ସଫଳ ଲୋକ ପଛରେ ଥାଏ ଜଣେ ନାରୀ। ଏବଂ ସେହି ନାରୀଟି ପଛରେ ରୋଷକଷାୟିତ ନେତ୍ରରେ ଠିଆ ହୋଇଥାଏ ସେହି ସଫଳ ଲୋକର ସ୍ତ୍ରୀ ! ସେଥିପାଇଁ ବୋଧହୁଏ ଆମର ବିଶିଷ୍ଟ ଲୋକମାନେ ଆତ୍ମଜୀବନୀ ଲେଖିବା ବେଳେ ନିଜର ସ୍ତ୍ରୀ ବିଷୟରେ ଲେଖିବାରେ ଅତି କୃପଣ। ରବୀନ୍ଦ୍ରନାଥ ନିଜର ବିବାହ ଓ ସ୍ତ୍ରୀ ବିଷୟରେ ମାତ୍ର ଗୋଟିଏ ଧାଡ଼ି ଲେଖିଛନ୍ତି : 'କାରୱାଡ଼ରୁ ଫେରିବାର ଅଳ୍ପଦିନ ପରେ ମୋର ବିବାହ ହେଲା, ସେତେବେଳେ ମୋର ବୟସ ବାଇଶି ବର୍ଷ।' ଫକୀରମୋହନ କିନ୍ତୁ ତାଙ୍କର ଦ୍ୱିତୀୟ ସ୍ତ୍ରୀ କୃଷ୍ଣକୁମାରୀଙ୍କ ବିଷୟରେ ବିଶଦ ଭାବେ ଲେଖିଛନ୍ତି ଏବଂ ଏକଥା ମଧ୍ୟ କହିଛନ୍ତି ଯେ, 'ମୁଁ ଯେ କବିତା ଲେଖିବାକୁ ଶିଖିଛି ସେଥିର ଅନ୍ୟତମ କାରଣ ମୋ ସ୍ତ୍ରୀ। ସେ ମୋ କବିତା ଶୁଣିବାକୁ ଭଲ ପାଉଥିଲେ। ପ୍ରଥମେ ତାଙ୍କର ମନୋରଂଜନ ସକାଶେ ମୁଁ କବିତା ଲେଖିଥିଲି।' ସେ କିନ୍ତୁ ନିଜେ ତେର ବର୍ଷ ବୟସରେ ବିବାହ କରିଥିବା ପ୍ରଥମା ସ୍ତ୍ରୀ ଲୀଳାବତୀଙ୍କ ବିଷୟରେ ମାତ୍ର ଦି ଧାଡ଼ି ଲେଖିଛନ୍ତି, ତା ପୁଣି ତାଙ୍କର ଦ୍ୱିତୀୟ ବିବାହ ପ୍ରସଙ୍ଗରେ।

କବିମାନେ ନିଜର ବିବାହିତ ସ୍ତ୍ରୀ ସହିତ ଭଲ ସଂପର୍କ ଥିବା କଥା ସର୍ବସାଧାରଣଙ୍କୁ ଜଣାଇବାକୁ ଚାହାନ୍ତି। ସେମାନେ ନିଜର ବହିକୁ ପତ୍ନୀଙ୍କ ନାଁରେ ଉତ୍ସର୍ଗ କରନ୍ତି। (ଅବଶ୍ୟ ଜଣେ କେହି ଉତ୍ସର୍ଗ ପତ୍ରରେ ଲେଖିଥିଲେ : ମୋ ସ୍ତ୍ରୀଙ୍କୁ, ଯେ ବାପଘରକୁ ଯାଇ ନଥିଲେ ଏ ବହି ଲେଖା ସମ୍ଭବ ହୋଇ ନ ଥାନ୍ତା)। ସାକ୍ଷାତ୍କାରରେ କହନ୍ତି ଯେ ମୋ ସ୍ତ୍ରୀ ମୋ ଲେଖାର ପ୍ରଥମ ପାଠିକା। ପୁରସ୍କାର ନେବା ବେଳେ ସ୍ତ୍ରୀଙ୍କୁ ପାଖରେ ବସାନ୍ତି। ଯଦି ସମ୍ଭବ ହୁଏ ସ୍ତ୍ରୀର ନାଁକୁ ବହିର ଶିରୋନାମାରେ ବ୍ୟବହାର କରନ୍ତି। (ସମସ୍ୟା ହୁଏ ସ୍ତ୍ରୀର ନାଁ ଜଗଦ୍ଧାତ୍ରୀ ଭଳି କିଛି ହୋଇଥିଲେ।) ଏପରିକି କବିତାରେ ସ୍ତ୍ରୀ ମୁହଁରେ କୁହାନ୍ତି, 'ଚାହେଁ ନି ଧନ ଚାହେଁ ନି ବଇଭବ, ତୁମେ ଯେ କବି ସେଇ ମୋ ଗଉରବ।' (ରାଧାମୋହନ ଗଡ଼ନାୟକ, କାବ୍ୟନାୟିକା)। ବାସ୍ତବ ଜୀବନରେ ଯଦି ଏଭଳି ମହୀୟସୀ କୌଣସି କବିବଧୂ ଥାନ୍ତି, ତା ହେଲେ କହିବାକୁ ହେବ ଯେ ସେ କବି ନିଶ୍ଚୟ ଅସମ୍ଭବ ଭାଗ୍ୟବାନ ଅଥବା ଏ ଭଳି ସ୍ତ୍ରୀ କଥା ଭାବି ପାରୁଥିବାରୁ ତାଙ୍କର କଳ୍ପନା ଶକ୍ତି ଅସୀମ। ବାସ୍ତବ କ୍ଷେତ୍ରରେ କବିର ସ୍ତ୍ରୀ ମୁହଁରେ ଯାହା ସଚରାଚର ଶୁଣିବାକୁ ମିଳେ ତା ହେଲା, 'ଯେତେ ମନା କଲି ଲେଖ ନାହିଁ ବୋଲି ମୋ କଥା ଶୁଣିବ କିଆଁ, ଏ ସବୁ ନ ଶୁଣି ଲେଖି ବସ ପୁଣି କବିତା ପାଉଁଶ ନିଆଁ' (ଫକୀରମୋହନ ସେନାପତି, 'କବିର କଳିହୁଡ଼ୀ ସ୍ତ୍ରୀ')।

କବି ଓ କବିତା ସହିତ ସବୁବେଳେ ନାରୀକୁ ଜଡ଼ିତ କରାଯାଇଥାଏ। ଦୀନକୃଷ୍ଣଙ୍କ ବର୍ଣ୍ଣନାରେ କବିତା ହେଉଛି ବନିତା, କବି ହେଉଛି ତାର ପିତା ଏବଂ କହିବା ଲୋକ(ସମାଲୋଚକ?) ତାର ଉପମାତା। ସେ କହି ନାହାନ୍ତି କବିତାର ମାତା କିଏ। ଆମେ ଏହି ଶୂନ୍ୟସ୍ଥାନରେ ଜଣେ ପ୍ରେରଣାଦାତ୍ରୀଙ୍କୁ ଯୋଡ଼ି ଦେଉ। ଗ୍ରୀକ୍ ଓ ରୋମାନ ପୁରାଣରେ ସୃଜନଶୀଳ କଳାକାରଙ୍କୁ ପ୍ରେରଣା ଦେଉଥିବା ମ୍ୟୁଜମାନଙ୍କର ବର୍ଣ୍ଣନା ଅଛି ଏବଂ କବିମାନଙ୍କର ପ୍ରେରଣାଦାତ୍ରୀ ହେଉଛନ୍ତି ଏରାଟୋ। ଆମ ଲେଖକମାନେ ମଧ୍ୟ ଏହି ଭଳି ଅଶରୀରୀ ପ୍ରେରଣା କଥା କହିଛନ୍ତି, : 'ପ୍ରସନ୍ନ ହୋଇ ମୋତେ କହନ୍ତି ସେ ବାଣୀ, ମୁଁ ତାକୁ ଲେଖି ପକାଏ ପତ୍ରରେ ତକ୍ଷଣି'(ସାରଳା ଦାସ)। 'କିଏ ଜଣେ କେତୋଟି ଧାଡ଼ି ଡାକି ଦେଉଥିବା ମୁଁ ଶୁଣିଥିଲି, ସେଗୁଡ଼ିକୁ ଉତାରି ଦେଉଥିଲି'(ରମାକାନ୍ତ ରଥ)। ପାଠକମାନେ କିନ୍ତୁ ଅଶରୀରୀ ବାହାରକୁ ଯାଇ କବିର ସଶରୀରୀ ପ୍ରେରଣାଦାତ୍ରୀଙ୍କୁ ଖୋଜନ୍ତି। ପାଶ୍ଚାତ୍ୟ ଦେଶରେ ଏଠା ଭଳି ରକ୍ଷଣଶୀଳ ବନ୍ଧନମାନ ନଥିବାରୁ ସେଠାରେ କେଉଁ କବିର ପ୍ରେରଣାଦାତ୍ରୀ କିଏ ତା ଅନେକ କ୍ଷେତ୍ରରେ ସର୍ବ ସାଧାରଣରେ ଜଣା। ସେଥିପାଇଁ ୟେଟ୍‌ସଙ୍କ କବିତା ପଢ଼ିଲା ବେଳେ ଆମେ ମଡ୍ ଗନ୍‌ଙ୍କୁ ମନେ ପକାଉ।

ଅନେକ ସମୟରେ କବିର ମୃତ୍ୟୁ ପରେ ହିଁ ତାର ବିଭିନ୍ନ ସଂପର୍କର କଥା ଗବେଷଣାରୁ ଜଣା ପଡ଼େ । ଇଲିଅଟଙ୍କର ନିଜ ସେକ୍ରେଟେରୀଙ୍କ ସହିତ ପ୍ରେମ ସଂପର୍କ ଅନେକ ଦିନ ଧରି ଗୋପନୀୟ ଥିଲା। ରବୀନ୍ଦ୍ରନାଥଙ୍କର ବିଭିନ୍ନ ନାରୀଙ୍କ ସହିତ ସଂପର୍କ ବିଷୟରେ ବର୍ତ୍ତମାନ ଲେଖାମାନ ପ୍ରକାଶ ପାଉଛି।

ଆମ ପୁରୁଣା କବିମାନଙ୍କ ବିଷୟରେ କୌଣସି ତଥ୍ୟ ଉପଲବ୍ଧ ନଥିଲେ ମଧ୍ୟ କଳ୍ପନାରୁ ଏ ଭଳି ଏକ ପ୍ରେରଣାଦାତ୍ରୀ ତିଆରି କରାଯାଏ। ଏ ବିଷୟରେ ଆଦର୍ଶ ହେଉଛନ୍ତି ଜୟଦେବ। ସେ କୁଆଡ଼େ ପଦ୍ମାବତୀ ନାଚିଲା ବେଳେ ଗୀତଗୋବିନ୍ଦ ଲେଖୁଥିଲେ। ସେଥିପାଇଁ ଆମର କଳ୍ପନାରେ କାଳିଦାସ କାଶ୍ମୀର ରାଜକନ୍ୟାକୁ ବିବାହ କରିଥିଲେ ଓ ତାଙ୍କର ମଲ୍ଲିକା ନାମରେ ପ୍ରେମିକା ଥିଲେ। (ମୋହନ ରାକେଶ, ଆଷାଢ଼ କା ଏକ ଦିନ)। ସେହିଭଳି କୁହାଯାଇଥାଏ ଯେ ଆମର କବିସୂର୍ଯ୍ୟ ଜଳନ୍ତରର ରାଜକନ୍ୟାଙ୍କ ଦ୍ୱାରା ଅନୁପ୍ରେରିତ ହୋଇ ତାଙ୍କର 'ଚନ୍ଦ୍ରକଳା' କାବ୍ୟ ଲେଖିଥିଲେ ଏବଂ କାବ୍ୟ ନାୟିକାଙ୍କର ଅକାଳ ମୃତ୍ୟୁ ହେବାରୁ ତାଙ୍କର କାବ୍ୟ ଅସଂପୂର୍ଣ୍ଣ ରହିଗଲା।

ପ୍ରକୃତ କଥା ହେଲା ଯେ କବିତାରୁ କବିର ଜୀବନ ବୃତ୍ତାନ୍ତକୁ ଯାଇ ସେଥିରୁ ରୋମାଞ୍ଚକର ସତ୍ୟ ଖୋଜିବା ଅର୍ଥହୀନ। ହରପ୍ରସାଦ ଦାସ ମାନସିଂହଙ୍କର କବିତା ପ୍ରସଙ୍ଗରେ ଏ ବିଷୟରେ ଶେଷ କଥା କହିଛନ୍ତି, 'ପ୍ରକୃତରେ 'ଧୂପ'ର ନାୟିକା କିଏ, ଏ ପ୍ରଶ୍ନ ଯେତିକି ଅବାନ୍ତର ସେତିକି ଅଶ୍ଲୀଳ।'

କବିଙ୍କର ପ୍ରେରଣାଦାତ୍ରୀଙ୍କ ବିଷୟରେ ଲେଖା ନ ଯାଇ ତା କେବଳ ଗୁଲିଖଟି ଓ ଗୁଜବରେ ସୀମିତ ରହୁଥିବାରୁ ଏହି ରୋମାଞ୍ଚକର ତଥ୍ୟଟି ସୀମିତ ସମୟ ପର୍ଯ୍ୟନ୍ତ ଚାପା

କଥାରେ ରହିଥାଏ। ପରବର୍ତ୍ତୀ ପୀଢ଼ୀ ଏହି ମୁଖରୋଚକ ରୋମାଞ୍ଚକାରୀ ଅସତ୍ୟ ସଂପର୍କ ବିଷୟରେ ସଂପୂର୍ଣ୍ଣ ଅଜ୍ଞ ରହିଯାନ୍ତି। ଏ ବିଷୟକୁ ଲିପିବଦ୍ଧ କରିବାର ଏକ ପ୍ରମୁଖ ଉଦାହରଣ ହେଉଛନ୍ତି ଆମର ରାଧାନାଥ ରାୟ ଯେ କି ନିଜର ପରକୀୟା ପ୍ରେମ କଥା ବିଭିନ୍ନ ଭାବରେ ଲେଖିଛନ୍ତି, ଯଥା, ନିବେଦନ, ସତୀ ପ୍ରତି ସତୀଦ୍ରୋହୀ ପତିର ଉକ୍ତି, ଆତ୍ମ ନିବେଦନ ଓ ଆତ୍ମକଥାର କିୟଦଂଶ। ଏପରିକି ସେ ନିଜର ସ୍ୱୀକାରୋକ୍ତିକୁ ନିବେଦନ ଭାବେ ଲେଖି ପୁଅ ଶଶିଭୂଷଣଙ୍କ ହାତରେ ବଣ୍ଟାଇ ଦେଇଥିଲେ।

ଏଥିରୁ ମୋର ମନେ ପଡ଼ିଲା ଯେ ଆମର କଲେଜ ବେଳେ ୧୯୫୦ ବେଳକୁ କଟକର ଡଗରପଡ଼ା ଅନାଥାଶ୍ରମ ବାରଣ୍ଡାରେ ଗୋଟିଏ ପାଗଳୀ ସ୍ତ୍ରୀ ଆସି ବସୁଥିଲା, ତାକୁ ସମସ୍ତେ ଶଶିଭୂଷଣ ରାୟଙ୍କ ପ୍ରେରଣା ଦାତ୍ରୀ ବା ଅନ୍ୟ ଭାବରେ ରକ୍ଷିତା ବୋଲି କହୁଥିଲେ। ଏ ବିଷୟରେ ନିକଟରେ ପ୍ରକାଶିତ ଗଣେଶ୍ୱର ଦାସଙ୍କର 'କିଛି ପତ୍ର, କିଛି ଫୁଲ' ବହିରେ ମଧ୍ୟ ଉଲ୍ଲେଖ ଅଛି। ଏଠାରେ ସ୍ପଷ୍ଟ କରିଦେବା ଉଚିତ ଯେ ଏହି ସବୁ ଅନାବଶ୍ୟକ ତଥ୍ୟ ଲେଖକ ରାଧାନାଥ ବା ଶଶିଭୂଷଣଙ୍କ ଲେଖକୀୟ ସମ୍ମାନରେ କୌଣସି ଆଞ୍ଚ ଆଣିନାହିଁ। ଫକୀରମୋହନଙ୍କ ପାନାଭ୍ୟାସ ତାଙ୍କ ପୁଅକୁ ଠିକ ଲାଗି ନଥାଇ ପାରେ, କିନ୍ତୁ ଆମ ମାନଙ୍କ ପାଇଁ କୌଣସି ସମସ୍ୟା ଉପୁଜାଉ ନାହିଁ।

ଆତ୍ମଚରିତରେ ପରନାରୀର ଉଲ୍ଲେଖର ଆଉ ଏକ ଉଦାହରଣ ହେଉଛି 'ପାଣି କବିଙ୍କର ଆତ୍ମକାହାଣୀ'(୧୯୫୫)। ଆମର କବି ଓ ନାଟ୍ୟକାର ବୈଷ୍ଣବ ପାଣି ନିଜର ସ୍ତ୍ରୀ ଓ ପୁତ୍ରକୁ ଛାଡ଼ି ରଜକିନୀ ହାରାମଣି ସହିତ ବିରୂପା କୂଳରେ ଆଶ୍ରମ କରି ରହିଥିଲେ। ତାଙ୍କ ନିଜ ଭାଷାରେ, 'ସେଠାରେ ଆଶ୍ରମଟି ଅନେକ ବର୍ଷ ପର୍ଯ୍ୟନ୍ତ ବିଳାସ ଭବନର କାର୍ଯ୍ୟ କଲା। ଏହି ସମୟରେ ମୋତେ ମାରିବା ପାଇଁ ମୋର ବିବାହିତ ସ୍ତ୍ରୀ ବାଟରେ ଘାଟରେ ଲୋକ ଜଗାଇଲା, ଉତ୍ତମ ମଧ୍ୟମ ମଧ୍ୟ ସାମୟିକ ମୋର ଶରୀରରେ ବୃଷ୍ଟିପାତ ହେଲା।' ଏ କଥା ଲେଖିବା ପରେ ସେ ନିଷ୍କର୍ଷରେ ପହଞ୍ଚିଛନ୍ତି, 'ସ୍ୱକୀୟା ପ୍ରୀତି ଅପେକ୍ଷା ପରକୀୟା ପ୍ରୀତି ଉତ୍କୃଷ୍ଟ'। ଏଠାରେ ଲକ୍ଷଣୀୟ ଯେ ଏ ଭଳି ସଂପର୍କ ପାଇଁ ସଂସ୍କୃତ ପରକୀୟା ଶବ୍ଦ ବ୍ୟବହାର ଦ୍ୱାରା ଏହାକୁ ରାଧାକୃଷ୍ଣଙ୍କର ଜୀବାତ୍ମା ପରମାତ୍ମାର ମିଳନ ଭଳି ଆଧ୍ୟାତ୍ମିକ ପର୍ଯ୍ୟାୟକୁ ନେଇଯିବାର ଚେଷ୍ଟା କରାଯାଇଥାଏ।

ମଦ୍ୟପାନ ଭଳି ପରକୀୟାର ମଧ୍ୟ ସୃଜନଶୀଳତା ଉପରେ ସକାରାତ୍ମକ ପ୍ରଭାବ ବିଷୟରେ କୌଣସି ପ୍ରମାଣ ନାହିଁ। ମଦ୍ୟପାନର ଶାସ୍ତି ଲେଖକର ଯକୃତ ଉପରେ, ପରକୀୟାର ଶାସ୍ତି ଲେଖକର ପିଠି ଉପରେ।

ଫକୀରମୋହନ ତାଙ୍କ 'ନନାଙ୍କ ପାଂଜି' ପ୍ରବନ୍ଧରେ ଲେଖିଛନ୍ତି,'' ଓଡ଼ିଆ କବିଙ୍କ ସଙ୍ଗେ ତୁଳିବାକୁ ହିନମନ ଜନ୍ତୁ ଆଉ ଅଛନ୍ତି କି ନାହିଁ, କଲିକତା ଜୁଅଲଜିକେଲ ତୋଟାରେ ଥରେ ଖୋଜିବାକୁ ମୋର ଇଚ୍ଛା ଅଛି।'' କବିମାନଙ୍କୁ ଫକୀରମୋହନ ଜନ୍ତୁ ତାଲିକାରେ

ରଖିଥିବାରୁ ଏହି ଲେଖାର ଏପରି ଶିରୋନାମା। ସକାଳେ କିନ୍ତୁ ଏହି ଶିରୋନାମାଟି ପଢ଼ି ମୋର କବି ବନ୍ଧୁ ନିରାଶ ହେବେ। କାଲି ରାତିରେ ସାହିତ୍ୟ ସଭା ନାଁରେ ଯାଇ ସାଙ୍ଗ (ପୁରୁଷ,ଅବିବାହିତ) ଘରେ ମାତ୍ରାଧିକ ପାନୀୟ ହୋଇ ଯାଇଥିଲା। ଘରକୁ ଫେରି ଖାଇବାକୁ ମାଗିବା ପାଇଁ ସାହସ ହେଲା ନାହିଁ, ତେବେ ଶୋଇବା ଆଗରୁ ଗୋଟିଏ ଚୋରା ଚିଠି ଓ ଦୁଇଟି ଚୋରା ଟେଲିଫୋନ୍ କରିପାରିଥିବାରୁ ମନ ବର୍ତ୍ତମାନ ପ୍ରସନ୍ନ। ଏବେ ଆଉ ଖବରକାଗଜ ପଢ଼ିବାକୁ ଇଚ୍ଛା ନାହିଁ। ଦେହ କେମିତି ଅଳସ ଲାଗୁଛି। ତେବେ ବି ଯାଇ ଚା ତିଆରି କରି ପତ୍ନୀଙ୍କୁ ଉଠାଇବାକୁ ପଡ଼ିବ। ମୁଁ ଆଶା କରୁଛି ସେ ଚା'ରେ ଠିକ ପରିମାଣରେ ଚିନି ପକାଇବେ। ନ ହେଲେ।

*ଏପ୍ରିଲ୍, ୨୦୧୫*

# ମିଷ୍ଟର ଦାସ ଓ ଦାସ ଆପଣେ

ଓଡ଼ିଶାର ବରପୁତ୍ରମାନଙ୍କ କଥା ଭାବିବା ବେଳେ ଯେଉଁ ଦୁଇ ଜଣଙ୍କ ନାଁ ସହଜରେ ମନକୁ ଆସେ, ସେମାନେ ହେଲେ ମଧୁସୂଦନ ଦାସ ଓ ଗୋପବନ୍ଧୁ ଦାସ। ପିଲାମାନଙ୍କ ପାଠ ବହିରେ ଏ ଦୁହିଁଙ୍କ ବିଷୟରେପଢ଼ା ଯାଇଥାଏ। ଆଗରୁ ଓଡ଼ିଶା ସରକାରଙ୍କର ଛୁଟି ତାଲିକାରେ କେବଳ ମଧୁସୂଦନଙ୍କର ଜୟନ୍ତୀ ଥିଲା, ଗୋପବନ୍ଧୁଙ୍କର ନଥିଲା। ପରେ ସେଥିରୁ ମଧୁସୂଦନଙ୍କୁ ମଧ୍ୟ କାଟି ଦିଆଗଲା। ୨୦୧୫ର କ୍ୟାଲେଣ୍ଡରରେ ଏକମାତ୍ର ଓଡ଼ିଆ ସୁରେନ୍ଦ୍ର ସାଏଙ୍କର ନାଁ ଅଛି, ସୁଭାଷ ବୋଷଙ୍କ ସହିତ ଯୋଡ଼ି ହୋଇ। ଦିଲ୍ଲୀରେ କୌଣସି ରାସ୍ତାକୁ ସେମାନଙ୍କ ନାଁ ଦେବା ପାଇଁ ସବୁବେଳେ ଦାବୀ ହୋଇଥାଏ, କିନ୍ତୁ ତା ଏ ପର୍ଯ୍ୟନ୍ତ ସମ୍ଭବ ହୋଇନାହିଁ। ଓଡ଼ିଶାର ଜନ ମାନସରେ ମଧୁସୂଦନ ଓ ଗୋପବଂଧୁ ଅନ୍ତରଙ୍ଗ ଭାବରେ ଜଡ଼ିତ।

ଓଡ଼ିଶାରେ ମଧୁବାବୁ କହିଲେ ମଧୁସୂଦନ ଦାସଙ୍କୁ ହିଁ ବୁଝାଏ। ତାଙ୍କ ଜୀବିତାବସ୍ଥାରେ ଶିକ୍ଷିତ ଲୋକେ ତାଙ୍କୁ ମିଷ୍ଟର ଦାସ କହୁଥିଲେ ଏବଂ ସାଧାରଣ ଲୋକେ କହୁଥିଲେ ମଧୁବାବୁ। ପୁରୀର ପ୍ରଚଳିତ ରୀତି ଅନୁସାରେ ଗୋପବଂଧୁ ଜଣାଶୁଣା ଥିଲେ ଦାସ ଆପଣେ ନାଁରେ।

ଓଡ଼ିଆ ଲୋକଙ୍କ ପାଇଁ ଦୁହିଁଙ୍କର ଦୁଇଟି ଉପାଧି ମଧ୍ୟ ଥିଲା : ଉତ୍କଳ ଗୌରବ ଓ ଉତ୍କଳମଣି। ମଧୁସୂଦନଙ୍କୁ କେହି ଉତ୍କଳ ଗୌରବ ଉପାଧି ଦେଇ ନଥିଲା। ୧୮୯୭ରେ ଆପେଣ୍ଡିସାଇଟିସ ଅସ୍ତ୍ରୋପଚାର କରି ବିଲାତରୁ ଫେରି ଆସିବା ପରେ 'ସେ ଦୀର୍ଘ ଆଠମାସ ବିଲାତରେ ରହି ଉତ୍କଳର ଗୌରବ ବୃଦ୍ଧି କରିଥିବାରୁ' ଉତ୍କଳ ଦୀପିକା ତାଙ୍କୁ 'ଉତ୍କଳ ଗୌରବ' କହିଥିଲା। ଗୋପବଂଧୁ ଉତ୍କଳମଣି ଉପାଧି ପାଇଥିଲେ ୧୯୨୪ ଉତ୍କଳ ପ୍ରାଦେଶିକ କଂଗ୍ରେସ ସମ୍ମିଳନୀର ଅଧିବେଶନରେ ସଭାପତି ପ୍ରଫୁଲ୍ଲ ଚନ୍ଦ୍ର ରାୟଙ୍କ ହାତରୁ। ଆମେ ଏହି ଉପାଧିରେ ଏହି ମହାପୁରୁଷ ଦ୍ୱୟଙ୍କୁ ସ୍ମରଣ କରୁ। ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ କିନ୍ତୁ ତାଙ୍କର ଦୁଇଟି ଜୀବନୀ ବହିର ନାଁ ଦେଇଛନ୍ତି ଦେଶପ୍ରାଣ ମଧୁସୂଦନ ଓ ଉତ୍କଳମଣି ଗୋପବଂଧୁ।

ମଧୁସୂଦନ ଓ ଗୋପବଂଧୁଙ୍କ ବିଷୟରେ ଏକା ସାଙ୍ଗରେ କହିଲା ବେଳେ ମନେ ରଖିବାକୁ ହେବ ଯେ ମଧୁସୂଦନ ଗୋପବନ୍ଧୁଙ୍କଠାରୁ ବୟସରେ ପ୍ରାୟ ୩୦ ବର୍ଷ ବଡ଼ ଥିଲେ। ଗୋପବନ୍ଧୁ ସାଧାରଣ ଜୀବନକୁ ଆସିବା ବେଳକୁ ମଧୁସୂଦନ ଓଡ଼ିଶାର ଅପ୍ରତିଦ୍ୱନ୍ଦ୍ୱୀ ନେତା ଥିଲେ ଏବଂ ମଧୁବାବୁ ହିଁ ଥିଲେ ଗୋପବଂଧୁଙ୍କ ଆଦର୍ଶ। ଏହା ମଧ୍ୟ ମନେ

ରଖିବାର କଥା ଯେ ଗୋପବଂଧୁ ମାତ୍ର ୫୧ ବର୍ଷ ବୟସରେ ମରିଗଲେ, ୧୯୨୮ରେ। ମଧୁସୂଦନ ବଞ୍ଚିଥିଲେ ୮୬ ବର୍ଷ ଓ ମରିଗଲେ ୧୯୩୪ ମସିହାରେ। ଗୋପବଂଧୁଙ୍କୁ ତେଣୁ ସାରା ଜୀବନ ମଧୁସୂଦନଙ୍କ ଛାୟା ତଳେ ରହିବାକୁ ହୋଇଥିଲା। ଅବଶ୍ୟ ଦୁହେଁ ସଂସାର ଛାଡ଼ିଥିଲେ ସେମାନଙ୍କ ସ୍ୱପ୍ନ ଓ ଲକ୍ଷ୍ୟ ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ ଭାବେ ଦେଖିବା ପୂର୍ବରୁ।

ଓଡ଼ିଶା ଦେଶ ମିଶ୍ରଣ ଆନ୍ଦୋଳନର ବିଧିବଦ୍ଧ ଆରମ୍ଭ ହୋଇଥିଲା ଏପ୍ରିଲ ୧୯୦୩ରେ, ଏହି ବର୍ଷ ଓଡ଼ିଶା ଆସୋସିଏଶନ ବା ଉତ୍କଳ ସଭା ଦାବୀ କରିଥିଲା ଯେ ସବୁ ଓଡ଼ିଆ ଅଞ୍ଚଳକୁ ଏକତ୍ରିତ କରି ମଧ୍ୟପ୍ରଦେଶର ଚିଫ କମିଶନରଙ୍କ ଅଧୀନରେ ରଖାଯାଉ। ମଧୁବାବୁ ଥିଲେ ଉତ୍କଳ ସଭାର ସଂପାଦକ। ଗୋପବଂଧୁ ସେତେବେଳକୁ ବି.ଏ ପଢୁଥିଲେ ଓ ଛାତ୍ରନେତା ଭାବେ ଜଣାଶୁଣା ଥିଲେ। ସେ ବର୍ଷ ପରୀକ୍ଷାରେ ଫେଲ ହୋଇ ସେ ପରବର୍ତ୍ତୀ ପରୀକ୍ଷା ଦେବା ପାଇଁ ପ୍ରସ୍ତୁତ ହେଉଥିଲେ।

୧୯୦୩ ଡିସେମ୍ବର ୩୧ ତାରିଖରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ହେଲା କଟକରେ। ମଧୁସୂଦନ ଏହାର ପ୍ରଧାନ ଉଦ୍ୟୋକ୍ତା ଥିଲେ ଏବଂ ଗୋପବଂଧୁ ଓ ତାଙ୍କର ବଂଧୁମାନେ ଏହି ସଭାରେ ସ୍ୱେଚ୍ଛାସେବକ ଭାବରେ ଯୋଗ ଦେଇଥିଲେ। ସେତେବେଳକୁ 'କୁଳବୃଦ୍ଧ' ମଧୁସୂଦନଙ୍କ ବୟସ ୫୫ ବର୍ଷ ଓ ଛାତ୍ର ଗୋପବଂଧୁଙ୍କର ବୟସ ୨୬। ଏହି ସମୟରୁ ମଧୁସୂଦନ ଓ ଗୋପବନ୍ଧୁଙ୍କର ସଂପର୍କର ଆରମ୍ଭ। ପ୍ରଥମରୁ ଉଭୟଙ୍କର ଲକ୍ଷ୍ୟ ଥିଲା ବିଚ୍ଛିନ୍ନ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଓଡ଼ିଶାରେ ମିଶାଇବା, ସେ ପର୍ଯ୍ୟନ୍ତ କେହି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ କଥା ଭାବି ନଥିଲେ। ତେବେ ମଧୁସୂଦନ ଓଡ଼ିଆ ଭାଷୀ ଅଂଚଳକୁ ବଙ୍ଗଳାର ଏକ ଉପ-ପ୍ରଦେଶ ହୋଇ ରହିବା ପାଇଁ ଚାହୁଁଥିବା ବେଳେ ଗୋପବଂଧୁ ଏହାକୁ ମଧ୍ୟପ୍ରଦେଶ ସହିତ ରହିବାକୁ ଚାହୁଁଥିଲେ। ଏ ବିଷୟରେ ଉଭୟଙ୍କର ମତଭେଦ ଏତେ ତୀବ୍ର ଥିଲା ଯେ ସମ୍ମିଳନୀ ସଭା ହେବା ବେଳେ ମଧୁସୂଦନ ଗୋପବଂଧୁଙ୍କୁ ସଭାରୁ ବାହାରି ଯିବାକୁ କହିଥିଲେ। ପରବର୍ତ୍ତୀ ସମୟରେ ନିଜର ମତର ସମର୍ଥନରେ ଗୋପବଂଧୁ 'ପ୍ରାର୍ଥନା' ନାମକ ଏକ ପ୍ରଚାର ପତ୍ର ବାଣ୍ଟିଥିଲେ।

୧୯୦୪ରେ ବି.ଏ. ଓ ୧୯୦୬ରେ ବି.ଏଲ୍. ପାସ କରି ଗୋପବଂଧୁ କଟକରେ ମଧୁସୂଦନଙ୍କ ଜୁନିଅର ଭାବରେ ଓକିଲାତି ଆରମ୍ଭ କଲେ ଏବଂ ମଧୁସୂଦନଙ୍କୁ ଉତ୍କଳ ସମ୍ମିଳନୀ କାମରେ ସାହାଯ୍ୟ କଲେ। ୧୯୦୮ରେ ଗୋପବଂଧୁ ପ୍ରସ୍ତାବ କଲେ ଯେ ସେ ବର୍ଷର ସମ୍ମିଳନୀରେ ମଧୁସୂଦନ ସଭାପତି ହୁଅନ୍ତୁ। ସେ ବର୍ଷ କିନ୍ତୁ ମଧୁସୂଦନଙ୍କ ଆଗ୍ରହରେ ସୁରଙ୍ଗୀର ରାଜା ସଭାପତି ହେଲେ।

ପରବର୍ଷ ମୟୂରଭଂଜ ଷ୍ଟେଟର ସରକାରୀ ଓକିଲ ସ୍ଥାନ ଖାଲି ହେବାରୁ ମହାରାଜା ଶ୍ରୀରାମଚନ୍ଦ୍ର ଭଂଜ ମଧୁସୂଦନଙ୍କର ପରାମର୍ଶ ମାଗିଲେ। ମଧୁସୂଦନ ଗୋପବନ୍ଧୁଙ୍କ ନାଁ ଦେଲେ ଓ ଗୋପବଂଧୁ ସେଠାରେ ଯାଇ ଯୋଗ ଦେଲେ। ଦି ବର୍ଷ ପରେ କିନ୍ତୁ କାମ ଭଲ ନ

ଲାଗିବାରୁ ଗୋପବଂଧୁ କଟକ ଫେରି ଆସି ପୁଣି ମଧୁସୂଦନଙ୍କ କ୍ଲବିଅର ରହିଲେ। ସେ ବାରିପଦାରେ ଥିବା ସମୟରେ ତାଙ୍କର ବସାଘରର ଗୋଟିଏ ଅଂଶରେ ମଧୁସୂଦନଙ୍କ ଉତ୍କଳ ଟ୍ୟାନେରିର ଜୋତା ବିକ୍ରୟ କେନ୍ଦ୍ର ଥିଲା।

୧୯୧୨ରେ ବିହାର-ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା ଏବଂ ଭାରତ ସରକାରଙ୍କ ୧୯୦୯ ଆଇନ ଅନୁସାରେ ଏକ ଲେଜିସ୍‌ଲେଟିଭ କାଉନସିଲ ଗଢ଼ା ହେଲା। ୧୯୧୭ରେ କାଉନସିଲ ନିର୍ବାଚନରେ ମଧୁସୂଦନ ଗୋପବଂଧୁଙ୍କୁ ପ୍ରାର୍ଥୀ କରାଇ ଜିତାଇଲେ। ଏତେବେଳକୁ ମଧୁସୂଦନ ଓ ଗୋପବଂଧୁ ଉଭୟେ ପ୍ରବାଦ ପୁରୁଷ ହୋଇସାରିଥିଲେ ଓ ଓଡ଼ିଶାର ପୁରପଲ୍ଲୀରେ ସମସ୍ତେ ତାଙ୍କୁ ସମ୍ମାନ ଓ ଭକ୍ତିର ସହିତ ଦେଖୁଥିଲେ।

ଓଡ଼ିଶାର ଲୋକଙ୍କ ଆଖିରେ କିନ୍ତୁ ଦୁହିଁଙ୍କର ଭାବମୂର୍ତ୍ତି ସଂପୂର୍ଣ୍ଣ ଅଲଗା ଥିଲା। ଓଡ଼ିଆଙ୍କ ପାଇଁ ମଧୁସୂଦନ ଥିଲେ ମୁକୁଟ ବିହୀନ (କିନ୍ତୁ ପଗଡ଼ି ପରିହିତ) ସମ୍ରାଟ। ଗୋଟିଏ କାହାଣୀ ଥିଲା ଯେ ସେ ଜନ୍ମ ହେଲା ବେଳେ ତାଙ୍କ ମୁଣ୍ଡ ଉପରେ ନାଗ ସାପ ଫଣା ଟେକିଥିଲା ଯାହା ଭବିଷ୍ୟତରେ ରାଜା ହେବାର ନିଶ୍ଚିତ ସଙ୍କେତ। ପିଲାଦିନୁ ସେ ସ୍ୱଚ୍ଛଳ ହେବାର ଆକାଙ୍କ୍ଷା ରଖିଥିଲେ ଏବଂ ସ୍କୁଲ ବେଳେ କଲେକ୍ଟରଙ୍କ ବଙ୍ଗଳାରେ ଗୋଟିଏ ପୋର୍ସିଲେନ ସେଟ ଦେଖିଥିବା କଥା ତାଙ୍କର ଅନେକ ଦିନ ମନେ ଥିଲା। ସେ ଗର୍ବର ସହିତ କହୁଥିଲେ ଯେ ତାଙ୍କର ପ୍ରପିତାମହୀ ସତୀ ଥିଲେ। କଲିକତାରୁ ଫେରିବା ପରେ ସେ ବଙ୍ଗଳାରେ କଥାବାର୍ତ୍ତା କରୁଥିଲେ, କେହି ଓଡ଼ିଆ ତାଙ୍କୁ ବଙ୍ଗଳାରେ ଉତ୍ତର ଦେଲେ ସେ ରାଗିଯାଉଥିଲେ। ସେ ବିଲାତୀ ଆଦବ କାଇଦାରେ ରହୁଥିଲେ ଏବଂ ଘରେ ମଧ ସାହେବୀ ପୋଷାକ ପିନ୍ଧୁ ଥିଲେ। ସଭା ସମିତିକୁ ଗଲାବେଳେ କିନ୍ତୁ ସେ ଧୋତି ଚାଦର ପିନ୍ଧୁଥିଲେ ଓ ଓଡ଼ିଆରେ ଭାଷଣ ଦେଉଥିଲେ। ତାଙ୍କ ପାଖରେ ପୋଷା କୁକୁର ଓ ରେସ୍ ଘୋଡ଼ା ଥିଲେ, ଏବଂ ତାଙ୍କର ଯିବା ଆସିବା ପାଇଁ ଏକାଧିକ ଘୋଡ଼ା ଗାଡ଼ି ଥିଲା। ସେ ହୁକା ଟାଣୁଥିଲେ ଏବଂ ହୁକାକୁ ଧରିବା ପାଇଁ ତାଙ୍କ ପାଖରେ ସ୍ୱତନ୍ତ୍ର ଚାକର ଥିଲା। ତାଙ୍କ ବିଷୟରେ କାହାଣୀମାନ ଥିଲା ସେ କିପରି ବିପକ୍ଷ ଓକିଲ ଓ ସାହେବମାନଙ୍କୁ ଅପଦସ୍ଥ କରୁଥିଲେ। ଗୋବିନ୍ଦ ରଥ ତାଙ୍କ 'ବର୍ଣ୍ଣବୋଧକ' ବହିରେ ପିଲାଙ୍କ ପାଇଁ ଲେଖିଥିଲେ,'ପାଠ ପଢ଼ିବି, ଓକିଲ ହେବି, ମଧୁବାବୁ ସାଙ୍ଗେ ଲଢ଼ିବି'।

ତାଙ୍କ ସହିତ ତୁଳନା କରି ଦେଖିଲା ବେଳକୁ ଗୋପବଂଧୁ ଥିଲେ ମଫସଲିଆ ପୁରୀ ବ୍ରାହ୍ମଣ। ତାଙ୍କର ପୋଷାକ ଥିଲା ଛୋଟ ଧୋତି ଓ ଚାଦର, ତାଙ୍କ ମୁହଁରେ ଥିଲା ଅଯତ୍ନବର୍ଦ୍ଧିତ ଦାଢ଼ି। ତାଙ୍କ ପାଖରେ ନିଜର ଜିନିଷ ବୋଲି କିଛି ନଥିଲା। ସେ ଚାଳ ଘରେ ରହୁଥିଲେ। ବାହାରକୁ ଗଲାବେଳେ ସେ ହାତରେ ଗୋଟିଏ ବଟୁଆ ଧରୁଥିଲେ, ଏଇଟି ଟଙ୍କା ରଖିବା ପାଇଁ ଥିଲା, କାରଣ ସେ ପାନ ଖାଉ ନଥିଲେ। ସେ ତଳେ ବସି କାମ କରୁଥିଲେ ଓ ଲେଖାପଢ଼ା କରୁଥିଲେ ଗୋଟିଏ ନୀଚା ଡେସ୍କ ଉପରେ। ସେ ଅଧିକାଂଶ ଜାଗାକୁ ପାଦରେ

ଚାଲି ଚାଲିଯାଉଥିଲେ ଏବଂ କେଉଁଠି ପହଞ୍ଚିଲେ ସ୍କୁଲ ବୋର୍ଡିଙ୍ଗରେ ରହୁଥିଲେ। ସେଠାରେ ସେ ପିଲାଙ୍କ ସାଙ୍ଗରେ ବଗଡ଼ା ଭାତ, ଡାଲି ପାଣି, ଖଡା ବାଇଗଣ ତରକାରୀ ଖାଉଥିଲେ। ପିଲାଙ୍କ ସାଙ୍ଗେ ଯାଇ କଣ୍ଟାମାରିଶ ଗଛରୁ ଶାଗ ସଂଗ୍ରହ କରୁଥିଲେ ରୋଷାଇ ପାଇଁ। ସକାଳୁ କେଉଁଠାକୁ ଯିବାକୁ ହେଲେ ରାତିରେ ରୁଟି କରି ରଖୁଥିଲେ ଏବଂ ସକାଳେ ତାକୁ ତାଳପତ୍ର ଭୋଗେଇରେ ନେଇ ବାହାରି ଯାଉଥିଲେ।(ଶ୍ରୀଧର ଦାସ, ସୁଅ ମୁହଁରେପତର) ତାଙ୍କ ବିଷୟରେ କାହାଣୀ ସବୁ ଥିଲା ଅନ୍ୟମାନଙ୍କର ଦୁଃଖରେ ତାଙ୍କର କାନ୍ଦିବା କଥା। ଗୋଟିଏ କାହାଣୀ ଥିଲା ଯେ ପୁଅକୁ ମୃତ୍ୟୁଶଯ୍ୟାରେ ଛାଡ଼ି ଦେଇ ସେ ବନ୍ୟାପ୍ରପୀଡ଼ିତ ଲୋକଙ୍କର ସେବାରେ ବାହାରି ଯାଇଥିଲେ, ଏଇଟି କିନ୍ତୁ ସଂପୂର୍ଣ୍ଣ ଅସତ୍ୟ ଓ ମନଗଢ଼ା କଥା ଥିଲା। ଯଦିଓ ସେ ସାଧାରଣ ସଭା ଓ କାଉନସିଲରେ ଉଭୟ ଓଡ଼ିଆ ଓ ଇଂରେଜୀରେ ଓଜସ୍ୱିନୀ ବକ୍ତୃତା ଦେଇପାରୁଥିଲେ, ତାଙ୍କର ଭାବମୂର୍ତ୍ତି ଥିଲା ଗୋଟିଏ ଶାନ୍ତଶିଷ୍ଟ ଗାଉଁଲି ଆଦର୍ଶ ସ୍କୁଲ ଶିକ୍ଷକର।

ମଧୁସୂଦନ କଟକ ସହରରେ କାରଖାନା ବସାଇବା ବେଳେ ଗୋପବନ୍ଧୁ ସତ୍ୟବାଦୀ ଗାଁରେ ସ୍କୁଲ ଖୋଲିଲେ। ମଧୁସୂଦନ ରାଜାମହାରାଜା ଓ ଜମିଦାରଙ୍କ ଗହଣରେ ରହୁଥିଲେ ଓ ଧୋବଧାଉଳିଆଙ୍କ ସହିତ ଚଳପ୍ରଚଳ ହେଉଥିଲେ। ଗୋପବଂଧୁଙ୍କ ଆଖପାଖର ଲୋକଥିଲେ ଚାଷୀ ଓ ମଳିମୁଣ୍ଡିଆ। କନିକା ରାଜାଙ୍କ ଟଙ୍କାରେ ବିଲାତ ଯାଇ ମଧୁସୂଦନ ସେଠାରେ ଜମିଦାରଙ୍କ ସପକ୍ଷରେ ଲଢ଼ିଥିଲେ। 'ସମାଜ' କନିକା ରାଜାଙ୍କ ଶୋଷଣ ବିରୁଦ୍ଧରେ ଲେଖିଥିବାରୁ ଗୋପବଂଧୁ ଜେଲ ଯାଇଥିଲେ।

ବଙ୍ଗାଳୀମାନଙ୍କ ସହିତ ସଂପର୍କ ବିଷୟରେ ମଧ ଉଭୟଙ୍କର ମନୋଭାବ ଭିନ୍ନ ପ୍ରକାରର ଥିଲା। ସ୍କୁଲରେ ପଢୁଥିବା ବେଳେ ବଙ୍ଗାଳୀ ପିଲାଏ ମଧୁସୂଦନଙ୍କର ଚୁଟି କାଟି ଦେଇଥିଲେ ଏବଂ ସେ ତାଙ୍କୁ କହିଥିଲେ, ମତେ ଚୁଟି ଫେରାଇ ଦିଅ ! ମୁଁ ଯେଉ ବଙ୍ଗାଳୀ ଝିଅକୁ ବାହା ଦେବି, ତାକୁ ଦେଖାଇବି। ସେ ବଙ୍ଗାଳୀ ବାହା ହେଲେ କିନ୍ତୁ ବଙ୍ଗାଳୀଙ୍କ ସହିତ ତାଙ୍କର ସଂପର୍କ ରହିଥିଲା କେତେବେଳେ ପ୍ରେମ ତ କେତେବେଳେ ଘୃଣା। ତାଙ୍କୁ କିଏ ବଙ୍ଗାଳୀ କହିଲେ ସେ ଗର୍ବ ଅନୁଭବ କରୁଥିଲେ କିନ୍ତୁ ତାକୁ ସଂଶୋଧନ କରୁଥିଲେ। ତାଙ୍କର ଲକ୍ଷ୍ୟ ଥିଲା କିପରି ସେ ବଙ୍ଗାଳୀମାନଙ୍କୁ ଟପିବେ।

ଗୋପବଂଧୁଙ୍କର କିନ୍ତୁ ଏପରି କୌଣସି ମାନସିକ ସମସ୍ୟା ନଥିଲା। ଗୋପବଂଧୁଙ୍କୁ ମଧ୍ୟ କଲେଜରେ ବଢ଼ିବା ବେଳେ ବଙ୍ଗାଳୀ ପିଲା ଥଟ୍ଟା ପରିହାସ କରି ତାଙ୍କୁ ଡାକୁଥିଲେ 'ମାଷ୍ଟର ମଶାୟ'। କଲିକତାରେ ବି.ଏଲ୍ ପଢ଼ିବା ବେଳେ କିନ୍ତୁ ତାଙ୍କର ଅନେକ ବଙ୍ଗାଳୀ ସାଙ୍ଗ ହୋଇଯାଇଥିଲେ ଏବଂ ୧୯୦୪ରେ ଉତ୍କଳ ସମ୍ମିଳନୀ ସଭାକୁ ଯିବାବେଳେ ସେ ସେମାନଙ୍କୁ ସାଙ୍ଗରେ ନେଇ ଯାଇଥିଲେ। ମଧୁସୂଦନ ସଭାରୁ ବଙ୍ଗାଳୀମାନଙ୍କୁ ବାହାରିଯିବାକୁ କହିବାରୁ ଗୋପବଂଧୁ ନିଜର ସାଙ୍ଗମାନଙ୍କୁ ନେଇ ସେଠାରୁ ବାହାରିଗଲେ। ମଧୁସୂଦନଙ୍କୁ ଏଥିପାଇଁ କ୍ଷମା ମାଗିବାକୁ ପଡ଼ିଥିଲା। ମଧୁସୂଦନ କିନ୍ତୁ ଓଡ଼ିଶାକୁ ବଙ୍ଗଳା ସହିତ ରହିବାକୁ

ଚାହୁଁଥିବା ବେଳେ ଗୋପବଂଧୁ ଏହାକୁ ବିରୋଧ କରୁଥିଲେ।

ଗୋଟିଏ କଥାରେ କହିଲେ ମଧୁସୂଦନ ଓ ଗୋପବନ୍ଧୁଙ୍କ ଭିତରେ ପ୍ରଭେଦ ଥିଲା ବ୍ରେକଫାଷ୍ଟ ଓ ବାସି ପଖାଳର।

ଏହି ଦୁଇ ମହାପୁରୁଷଙ୍କର ଚିତ୍ର ମଧ ଲୋକମାନଙ୍କର କଳ୍ପନା ଅନୁଯାୟୀ ଦେଖିବାକୁ ମିଳେ। ତାଙ୍କର ବହୁ ପ୍ରଚଳିତ ଫଟୋଗ୍ରାଫରେ ସୁଟ ପିନ୍ଧି, ମୁଣ୍ଡରେ ପଗଡ଼ି ବାନ୍ଧି ମଧୁସୂଦନ ଛିଡ଼ା ହୋଇଛନ୍ତି (ବା ବସିଛନ୍ତି) ବହି ଆଲମାରି ସାମନା ପଢ଼ା ଟେବୁଲ ପାଖରେ। ତାଙ୍କ ମୁହଁରେ ଚଉକସ ନିଶ ଓ ଆଖିରେ ସୁନା ଫ୍ରେମର ଚଷମା। ତାଙ୍କର ଭଙ୍ଗୀ ସେ ସମୟରେ ରାଜା ମହାରାଜା ଉଠାଉଥିବା ଫଟୋର ନକଲରେ।

'ଯୁଗେ ଯୁଗେ ଓଡ଼ିଶା' ବୋଲି ଯେଉଁ ଚିତ୍ରମାନ ଭୁବନେଶ୍ୱର ରାଜଭବନରେ ଅଛି, ସେଥିରେ ଗୋଟିଏ ଚିତ୍ରରେ ମଧୁସୂଦନ ତାଙ୍କର ଚିରାଚରିତ ପୋଷାକ ପିନ୍ଧି କାରଖାନାରେ ଠିଆ ହୋଇଛନ୍ତି, ଅନ୍ୟ ଚିତ୍ରରେ ଗୋପବଂଧୁ ମୁଣ୍ଡ ଉପରେ ଛତା ଧରି ବଢ଼ି ପାଣି ଭିତରେ ଚାଲୁଛନ୍ତି। ଆମ ରାଜଧାନୀରେ ମଧୁସୂଦନଙ୍କ ମୂର୍ତ୍ତି ଅଛି ରାଜଭବନ ସାମନା ଛକରେ, ଗୋପବଂଧୁଙ୍କର ଦୂର ନିରୋଳାରେ। ମୂର୍ତ୍ତିରେ ମଧୁସୂଦନଙ୍କ ଭଙ୍ଗୀ ହେଉଛି ଜଣେ ବିରାଟ ପୁରୁଷ ଜାମାଜୋଡ଼ ହୋଇ ହାତ ଉଠାଇ ଲୋକମାନଙ୍କୁ ଉଦ୍‌ବୋଧନ ଦେବାର। ଗୋପବନ୍ଧୁ ତାଙ୍କର ନିତିଦିନିଆ ପୋଷାକ ପିନ୍ଧି ଚୁପ ଚାପ ଶୂନ୍ୟ ଦୃଷ୍ଟିରେ ଠିଆ ହୋଇଛନ୍ତି କିଂକର୍ତ୍ତବ୍ୟ ବିମୂଢ଼।

ଏହି ପ୍ରତିମା ଲକ୍ଷଣ ସୂଚାଇ ଦେଉଛି ଯେ ଜଣେ ହେଉଛନ୍ତି ଆଭିଜାତ୍ୟ ସଂପନ୍ନ, ବିଲାତ ଫେରନ୍ତା, ରାଜାମହାରାଜା ଓ ସାହେବଙ୍କ ସାଙ୍ଗରେ ଚଳପ୍ରଚଳ ହେଉଥିବା, ବାରିଷ୍ଟରି ପାସ ନକରି ବାରିଷ୍ଟର ବୋଲାଉଥିବା ଓ ସାଧାରଣ ଲୋକଙ୍କ ପାଇଁ ଅଲଭ୍ୟ ମିଷ୍ଟର ଦାସ। ଅନ୍ୟ ଜଣକ ହେଉଛନ୍ତି ଗାଁ ଲୋକଙ୍କ ସାଙ୍ଗରେ ତାଙ୍କ ସୁଖଦୁଃଖରେ ତାଙ୍କ ପାଖରେ କାନ୍ଧରେ କାନ୍ଧ ମିଳାଇ ଠିଆ ହୋଇଥିବା ପଡ଼ୋଶୀ ଭଳି ଲୋକଟିଏ, ଦାସ ଆପଣେ।

ଲେଖକମାନେ ମଧ ଉଭୟଙ୍କୁ ଠିକ ସେଇଭାବେ ଦେଖିଛନ୍ତି। ଫକୀରମୋହନ ତାଙ୍କର 'ଉତ୍କଳ ଭ୍ରମଣଂ'ରେ ମଧୁସୂଦନଙ୍କୁ ସ୍ୱାଗତ କରି କହିଛନ୍ତି : ଆସ ମିଷ୍ଟର ଏମ୍.ଏସ୍.କରେ ଶେକ ହ୍ୟାଣ୍ଡ, ଉତ୍କଳ ହୋଇଛି ତୁମ୍ଭ ଯୋଗେ ମଦରଲ୍ୟାଣ୍ଡ। ତା ପରେ ଫକୀରମୋହନ ତାଙ୍କୁ ଦେବତାର ସ୍ଥାନ ଦେଇ ଲେଖିଛନ୍ତି : ପତିତ ଉତ୍କଳ ଦେଶ ଉଦ୍ଧାର କାରଣ, ଅବତାର ରୂପେ ଜନ୍ମଅଛି ନାରାୟଣ। ମଧୁସୂଦନଙ୍କ ପାଇଁ ଏ ଭଳି ୪୨ ଧାଡ଼ି ଲେଖିବାପରେ ସେ ଗୋପବନ୍ଧୁଙ୍କର ନାମ ଥରେ ମାତ୍ର ଉଲ୍ଲେଖ କରିଛନ୍ତି, ତା ମଧ ସତ୍ୟବାଦୀ ଗୋଷ୍ଠୀର ଜଣେ ସଦସ୍ୟ ଭାବରେ : ସଦାଶିବ ନୀଳକଣ୍ଠ ସନ୍ତତ ସନ୍ନ୍ୟାସୀ, ଜଗତ ମଙ୍ଗଳେ ଗୋପବଂଧୁ ବ୍ରଜବାସୀ। ଏଠାରେ ଉଲ୍ଲେଖଯୋଗ୍ୟ ଯେ ୧୯୧୬ରେ ଉତ୍କଳ ଭ୍ରମଣଂର ପରିବର୍ଦ୍ଧିତ ତୃତୀୟ ସଂସ୍କରଣ ପ୍ରକାଶ ବେଳକୁ ଗୋପବଂଧୁ ନିଶ୍ଚିତ

ଭାବେ ସୁପ୍ରସିଦ୍ଧ ହୋଇ ସାରିଥିଲେ।

ଜୀବନୀମାନଙ୍କରେ ମଧ ମଧୁସୂଦନ ଓ ଗୋପବଂଧୁ ଏହି ଭଳି ଚିତ୍ରିତ ହୋଇଛନ୍ତି। ନ୍ୟାଶନାଲ ବୁକ ଟ୍ରଷ୍ଟ ପ୍ରକାଶିତ ସୁରେନ୍ଦ୍ର ମହାନ୍ତିଙ୍କ ମଧୁସୂଦନ ଜୀବନୀରେ ଗୋପବଂଧୁଙ୍କର ଉଲ୍ଲେଖ ଅଛି ଶେଷପୃଷ୍ଠାରେ କେବଳ ଏତିକି : ଗୋପବଂଧୁଙ୍କର ଦେହାନ୍ତ ହୋଇଯାଇଥିବାରୁ ମଧୁସୂଦନ ନୀଳକଣ୍ଠ ଦାସଙ୍କୁ ନିଜର ଉତ୍ତରାଧିକାରୀ ବାଛିଲେ। ମାୟାଧର ମାନସିଂହଙ୍କ 'ସଙ୍ଗ ଅଫ ଦ ଲ୍ୟାଣ୍ଡ ଅଫ ଜଗନ୍ନାଥ' ବହିରେ ମଧୁସୂଦନ ପରିଚ୍ଛେଦର ନାଁ ହେଉଛି 'ହିନ୍ଦୁ ଜନଙ୍କର ଖ୍ରୀଷ୍ଟିଆନ ନିର୍ମାତା', ଗୋପବନ୍ଧୁ ପରିଚ୍ଛେଦ ହେଉଛି 'ଯେ ନିଜ ଲୋକଙ୍କ ପାଇଁ ରକ୍ତ ଝରାଇଲା'। ଗୋପୀନାଥ ମହାନ୍ତିଙ୍କ 'ଉତ୍କଳମଣି' ପଢ଼ିଲେ ମନେ ହେବ ଯେପରିକି ଗୋପବଂଧୁଙ୍କର ଅଧିକାଂଶ ସମୟ ଯାଇଥିଲା କାନ୍ଦିବାରେ।

ମଧୁସୂଦନ ଗୋପବଂଧୁଙ୍କ ଭିତରେ ବିଭେଦ ହେଲା ଜାତୀୟତାକୁ ନେଇ। ମଧୁସୂଦନଙ୍କ ପାଇଁ ଜୀବନର ମୂଳ ଲକ୍ଷ୍ୟ ଥିଲା ଓଡ଼ିଶାର ବିଚ୍ଛିନ୍ନାଞ୍ଚଳର ମିଶ୍ରଣ। ସେ ଚାହୁଁଥିଲେ ବ୍ରିଟିଶ ଶାସନାଧୀନ ବଙ୍ଗ ପ୍ରଦେଶ ତଳେ ଏକ ଓଡ଼ିଆ ଭାଷା ଭାଷୀ ଉପ-ପ୍ରଦେଶ। ଗୋପବଂଧୁ କିନ୍ତୁ ଓଡ଼ିଶାକୁ ଦେଖୁଥିଲେ ପୂର୍ଣ୍ଣାଙ୍ଗ ଭାରତର ଏକ ଅଂଶ ଭାବରେ। ୧୮୯୯ରେ ମାତ୍ର ୨୨ ବର୍ଷ ବୟସରେ 'ଅବକାଶ ଚିନ୍ତା'ର ପ୍ରଥମ କବିତା 'ପ୍ରାର୍ଥନା'ରେ ସେ ଲେଖିଥିଲେ :

ସଂସାର ତୁମୁଳ ରଣ ପ୍ରାଙ୍ଗଣେ
ଉତ୍କଳର ଦୀନ ତନୟ ଗଣେ
ପଛରେ କେବେ ହେଁ ନ ପଡୁ ଦେବ
ଶ୍ରୀ ଛାମୁରୁ ଏହି ଆଦେଶ ହେବ
ଘେନି ଅପୂର୍ବ ଉତ୍ସାହ
ଭାରତର ମହା ଜାତୀୟ ତରଙ୍ଗେ
ମିଶୁ ଉତ୍କଳ ପ୍ରବାହ।

ଭାରତବର୍ଷ କଥା ମଧୁସୂଦନଙ୍କ ଚିନ୍ତାଧାରାରେ ନଥିଲା। ସେ ଚାହୁଁଥିଲେ ଏକ ବୃହତ୍ତର ଓଡ଼ିଶା ଏବଂ ଓଡ଼ିଶାର ଗୌରବମୟ ଅତୀତ ଥିଲା ତାଙ୍କର ପ୍ରେରଣା। ସେଥିପାଇଁ ସେ ଲେଖିଥିଲେ :

ତୁ ପରା ବୋଲାଉ ଉତ୍କଳ ସନ୍ତାନ ତେବେ କିମ୍ପା ଏତେ ଭୀରୁ
ତୋହର ଜନନୀ ରୋଦନ କରିଲେ କହିବାକୁ କିମ୍ପା ଡରୁ ?
ତୋ ପୂର୍ବ ପୁରୁଷେ ଜୟ କରିଥିଲେ ଗଙ୍ଗାଠାରୁ ଗୋଦାବରୀ
ତାଙ୍କରି ଔରସେ ଜନ୍ମ ହୋଇ ତୁହି କେଉଁ ଗୁଣେ ତାଙ୍କ ସରି ?

ମଧୁସୂଦନ ଏ ଭଳି ଓଡ଼ିଶା କଥା ଭାବୁଥିବା ବେଳେ ଗୋପବଂଧୁ ଭାରତବର୍ଷ ଓ ସ୍ୱରାଜ୍ୟ କଥା ଭାବୁଥିଲେ। ଉତ୍କଳ ସମ୍ମିଳନୀର ୧୯୧୯ ସଭାରେ ଭାଷଣ ଦେଇ ସେ

କହିଥିଲେ : ଓଡ଼ିଆ ଜାତୀୟତାର ଲକ୍ଷ୍ୟ ନୁହେଁ ଆଞ୍ଚଳିକତା, ଏହାର ଲକ୍ଷ୍ୟ ହେଲା ବିଶ୍ୱପ୍ରେମ।... ଓଡ଼ିଶାର ନଦୀ ହେଉଛି ମହାନଦୀ, ଓଡ଼ିଶାର ସମୁଦ୍ର ହେଲା ମହୋଦଧି। ଓଡ଼ିଶାର ପର୍ବତର ନାମ ମହେନ୍ଦ୍ରଗିରି, ଓଡ଼ିଶାର ବୃକ୍ଷ ହେଲା କଳ୍ପବଟ, ଓଡ଼ିଶାର ଶ୍ମଶାନର ନାମ ସ୍ୱର୍ଗଦ୍ୱାର। ଓଡ଼ିଆ ଚତୁର୍ଦ୍ଦିଗରେ କେବଳ ବିଶାଳତା ଦେଖେ।

ସେ ଏ କଥା ମଧ୍ୟ କହିଥିଲେ : "ହୋଇପାରେ କୌଣସି ଜାତୀୟ ଆନ୍ଦୋଳନ ଫଳରେ ଓଡ଼ିଶାର ସତ୍ତା ପର୍ଯ୍ୟନ୍ତ ଲୋପ ପାଇଯିବ। ସେଥିପାଇଁ ମଧ୍ୟ ପ୍ରସ୍ତୁତ ହେବାକୁ ହେବ। ବାସ୍ତବିକ ଓଡ଼ିଆ ସତ୍ତା ଲୋପ କରି ଯଦି ଭାରତର ଜାତୀୟତା ରକ୍ଷା କରାଯାଇ ପାରେ, ତେବେ ସେ ଗତି ସ୍ପୃହଣୀୟ ନୁହେଁ କି? ତାହାକୁ ତ ଓଡ଼ିଶାର ଭାଗ୍ୟ ବୋଲି ବିଚାର କରିବାକୁ ହେବ। ଜାତୀୟ କଲ୍ୟାଣ କଳ୍ପେ ଓଡ଼ିଶାର ଏ ଆତ୍ମଦାନ କେହି ନ ଜାଣନ୍ତୁ, କିନ୍ତୁ ଏ ଦଧୀଚିର ଆତ୍ମଦାନ ସ୍ୱର୍ଗଲୋକରେ ମହୀୟାନ।"

ସେ ସମୟର ଓଡ଼ିଶାରେ ଏବଂ ବିଶେଷ କରି ମଧୁସୂଦନଙ୍କ ପରିପ୍ରେକ୍ଷୀରେ ଏହା ନିଶ୍ଚୟ ଏକ ବୈପ୍ଳବିକ ଚିନ୍ତାଧାରା ଥିଲା। 'ବନ୍ଦୀର ଆତ୍ମକଥା'ରେ ଗୋପବଂଧୁ ପୁଣି ଲେଖିଲେ :

ଜାତୀୟ ମମତା ବିଶ୍ୱଜନ ପ୍ରୀତି
ଉତ୍କଳବାସୀର ହେଉ ଏହା ନୀତି।...
ସ୍ୱରାଜ୍ୟ ସାଧନେ ରହୁ ମନ ଧ୍ୟାନ
ଭାରତ ସ୍ୱରାଜ୍ୟେ ଜଗତ କଲ୍ୟାଣ।
ଜଗତ ସରସେ ଭାରତ କମଳ
ତା ମଧ୍ୟେ କେଶର ପୁଣ୍ୟ ନୀଳାଚଳ।
ଥିଲେ ଯହିଁ ତହିଁ ଭାରତ ବକ୍ଷରେ
ମଣିବି ମୁଁ ଅଛି ଆପଣା କକ୍ଷରେ।

ଏଠାରେ ଲକ୍ଷ୍ୟ କରିବାର କଥା ଯେ ଭାରତରୁ ସେ ସିଧାସଳଖ ନୀଳାଚଳକୁ ଯାଇଛନ୍ତି, ଓଡ଼ିଶା ଦେଇ ନୁହେଁ। ଏବଂ ଏହା ସେ ଛନ୍ଦ ମେଳ ପାଇଁ ଏପରି କରି ନାହାନ୍ତି କାରଣ ସେ ସହଜରେ ପୁଣ୍ୟ ନୀଳାଚଳ ସ୍ଥାନରେ ପବିତ୍ର ଉତ୍କଳ ଲେଖି ପାରିଥାନ୍ତେ।

ଯଦିଓ ମଧୁସୂଦନ ୧୮୮୫ରୁ କଂଗ୍ରେସ ଅଧିବେଶନରେ ଯୋଗ ଦେଉଥିଲେ ୧୯୦୩ରେ ଉତ୍କଳ ସମ୍ମିଳନୀ ଗଠନ ପରେ ସେ ଆଉ କଂଗ୍ରେସରେ ବିଶେଷ ଆଗ୍ରହୀ ହେଲେ ନାହିଁ। ଗାନ୍ଧୀ ଯେତେବେଳେ ଅସହଯୋଗର ଡାକରା ଦେଲେ, ମଧୁସୂଦନ କଂଗ୍ରେସ ସହିତ ସଂପର୍କ ରଖିଲେ ନାହିଁ କାରଣ ସେ ଅସହଯୋଗରେ ବିଶ୍ୱାସ କରୁ ନଥିଲେ। ଗୋପବଂଧୁ କିନ୍ତୁ ପୂର୍ଣ୍ଣ ପ୍ରାଣରେ କଂଗ୍ରେସର ସଭ୍ୟ ଓ ସମର୍ଥକ ଥିଲେ। ଅବଶ୍ୟ ଉତ୍କଳ ସମ୍ମିଳନୀ କାମରେ ମଧୁସୂଦନଙ୍କ ସହିତ ତାଙ୍କର ପୂର୍ଣ୍ଣ ପ୍ରାଣ ସହଯୋଗ

ଥିଲା।

ଗୋପବଂଧୁ କିନ୍ତୁ ଅନୁଭବ କରୁଥିଲେ ଯେ ଉତ୍କଳ ସମ୍ମିଳନୀ ରାଜା, ଜମିଦାର ଓ ଧନୀ ଲୋକଙ୍କ ଦ୍ୱାରା ପରିଚାଳିତ ହେଉଛି, ଏଥିରେ ପ୍ରଜା ସାଧାରଣଙ୍କର ଯୋଗ ନାହିଁ। ସମ୍ମିଳନୀର ଅଧିବେଶନମାନଙ୍କରେ କେବଳ ରାଜା ଜମିଦାର ହିଁ ସଭାପତିତ୍ୱ କରୁଥିଲେ। ୧୯୧୯ରେ ପୁରୀରେ ହୋଇଥିବା ସମ୍ମିଳନୀର ଅଧିବେଶନରେ ଗୋପବଂଧୁ ସମ୍ବଲପୁରର ନେତା ଚନ୍ଦ୍ରଶେଖର ବେହେରାଙ୍କୁ ସଭାପତି କରାଇଲେ। ଏହି ସଭାରେ ଗୋପବଂଧୁ ତାଙ୍କ ବକ୍ତୃତାରେ କହିଲେ, ‘‘ସମ୍ମିଳନୀକି ଗୋଟିଏ ବଡ଼ ଗାଡ଼ିଆ ପରି ପକାଇ ରଖିବା ଉଚିତ ନୁହେଁ। ଭାରତର ଜାତୀୟ ଆନ୍ଦୋଳନ ସମୁଦ୍ର ସଙ୍ଗେ ଏହାର ସଂପର୍କ ନ ରହିଲେ ଏହାର କଦାପି ବଳ, ତେଜ ଆସିବ ନାହିଁ।’’ ଏହି ସଭାରେ କିନ୍ତୁ ସେ ସମ୍ମିଳନୀକୁ କଂଗ୍ରେସ ସହିତ ମିଶାଇବାକୁ ସମର୍ଥ ହୋଇ ନ ଥିଲେ।

୧୯୨୦ ଡିସେମ୍ବର ୩୦ ତାରିଖ ଦିନ ଉତ୍କଳ ସମ୍ମିଳନୀର ୧୬ଶ ଅଧିବେଶନ ଚକ୍ରଧରପୁରଠାରେ ଆରମ୍ଭ ହେଲା। ନାଗପୁରର କଂଗ୍ରେସ ଅଧିବେଶନରୁ ଫେରି ଗୋପବଂଧୁ ସେଠାରେ ଯୋଗ ଦେଲେ ଏବଂ ପ୍ରସ୍ତାବ କଲେ, ‘‘ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ ସହିତ ଭାରତୀୟ ଜାତୀୟ କଂଗ୍ରେସର ଲକ୍ଷ୍ୟ ମଧ୍ୟ ସମ୍ମିଳନୀର ଲକ୍ଷ୍ୟ ହେଉ।’’ ଏହା ଉପରେ ତୁମୁଳ ଆଲୋଚନା ହେଲା ଏବଂ ଶେଷରେ ଭୋଟ ନିଆଗଲା। ପ୍ରସ୍ତାବ ସପକ୍ଷରେ ୧୨୭ ଭୋଟ ଓ ବିପକ୍ଷରେ ୧୬ ଭୋଟ ଆସିଲା। ବିପକ୍ଷରେ ଭୋଟ ଦେଇଥିଲେ ମଧୁସୂଦନଙ୍କ ସମର୍ଥକମାନେ। ଏହି ଭୋଟରେ ଜିତି ମଧୁସୂଦନଙ୍କ ସ୍ଥାନରେ ଓଡ଼ିଶାର ଅପ୍ରତିଦ୍ୱନ୍ଦ୍ୱୀ ନେତା ହେଲେ ଗୋପବଂଧୁ । ଓଡ଼ିଶା ବର୍ତ୍ତମାନ ଜାତୀୟ ସ୍ରୋତରେ ସମ୍ମିଳିତ ହୋଇଗଲା।

୧୯୨୧ ଜାନୁଆରୀ ପହିଲା ଦିନ ଭାରତ ଶାସନ ସଂସ୍କାର ଆଇନ ଅନୁସାରେ ଗଠିତ ବିହାର-ଓଡ଼ିଶା ମନ୍ତ୍ରିମଣ୍ଡଳରେ ମଧୁସୂଦନଙ୍କୁ ନିଯୁକ୍ତି ଦିଆଗଲା। ମଧୁସୂଦନ ଏ ଚାକିରି ନେବାରେ ସାଧାରଣରୁ ବିକ୍ଷୋଭ ହେଲା। ଏବଂ କୁହାଗଲା : ‘‘ଅଶି ବରଷରେ ମଧୁବାବୁ ଚାକିରିଆ – ସ୍ୱପ୍ନ କି ସତ୍ୟ ? ପାଇବେ ବର୍ଷରେ ଷାଠିଏ ହଜାର। କାହାଠାରୁ ? ଆମର ଅନ୍ନକଷ୍ଟିଆ ପୁରିଆ ଭାଇ, ଧୋଇଆ କଟକୀ, ସମ୍ବଲପୁରିଆ, ଜରୁଆ ବାଲେଶ୍ୱରିଆ ଭାଇ – ଆମରି ଟିକସରେ ତ ସରକାରଙ୍କର ପାଣ୍ଠି !’’ ଗୋପବଂଧୁଙ୍କର ‘ସମାଜ’ କାଗଜରେ ମଧ୍ୟ ମଧୁସୂଦନଙ୍କ ସମାଲୋଚନା ହେଲା।

୧୯୨୧ ଏପ୍ରିଲ ପହିଲାରେ ମଧୁସୂଦନ ପୁରୀ ଆସି ସେଠାରେ ପଣ୍ଡାମାନଙ୍କ ପାଖକୁ ଯାଇ ଅସହଯୋଗ ନ କରିବା ପାଇଁ ପରାମର୍ଶ ଦେଇଥିଲେ। ‘ସମାଜ’ରେ ଏ ଖବର ପ୍ରକାଶିତ ହେଲା ‘ମଧୁବାବୁଙ୍କ ଗୋଇନ୍ଦାଗିରି’ ଶିରୋନାମାରେ। ପରେ ଗୋପବଂଧୁ ଏ ଭଳି ଶିରୋନାମା ପାଇଁ କ୍ଷମା ଭିକ୍ଷା କରିଥିଲେ, କିନ୍ତୁ ଖବରଟିକୁ ଖଣ୍ଡନ କରି ନ ଥିଲେ।

୧୯୨୩ରେ ମଧୁସୂଦନ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଲେ। ଏଇ ସମୟରେ କନିକା ଆନ୍ଦୋଳନ କରି ଗୋପବଂଧୁ ଜେଲ ଗଲେ। ରାଜନୈତିକ ବନ୍ଦୀମାନଙ୍କର ମୁକ୍ତି ଦାବୀ କରି

ମଧୁସୂଦନ ୧୯୨୪ ଫେବ୍ରୁଆରି ୨୦ ତାରିଖ ଦିନ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାରେ ଏକ ଭାଷଣ ଦେଲେ। ଏଥିରେ ଗୋପବଂଧୁଙ୍କୁ 'ମୋର ପ୍ରିୟ ବଂଧୁ' ବୋଲି ସମ୍ବୋଧନ କରି ସେ କହିଥିଲେ, " ଏ ଯୁବକର ଜୀବନ ଗଠନ କରିବାରେ ମୁଁ ଅଂଶ ଗ୍ରହଣ କରିଥିବାରୁ ନିଜକୁ ଗୌରବାନ୍ୱିତ ଓ ସମ୍ମାନିତ ମନେ କରୁଛି।... ଏହି ଚରିତ୍ରବାନ ଲୋକକୁ ଖଲାସ କରିଦେଲେ ତାଙ୍କ ପ୍ରଭାବରେ ଲୋକେ ଶୃଙ୍ଖଳା ଭଙ୍ଗ କରିବେ, ଆଇନ ଅମାନ୍ୟ କରିବେ ବୋଲି ସରକାର ଆଶଂକା କରୁଛନ୍ତି।... ଯଦି ସରକାର ଭାବୁଥାନ୍ତି ଯେ ଏହି ସଜ୍ଜନଙ୍କ ସଂସ୍ପର୍ଶରେ ଲୋକେ ଆସୁଥିବାରୁ ସେହି ବ୍ୟକ୍ତି ଏକ ବିପଦର ଉତ୍ସ, ତାହା ହେଲେ ବୁଝିବାକୁ ହେବ ଯେ ଜନ ବିକ୍ଷୋଭର କାରଣ ସେହି ବ୍ୟକ୍ତି ନୁହନ୍ତି, ଜନ ବିକ୍ଷୋଭ ନିମନ୍ତେ ଅନ୍ୟ ପ୍ରକୃତ ସ୍ୱତନ୍ତ୍ର କାରଣ ବିଦ୍ୟମାନ ଅଛି।"

ଲୋକେ କିନ୍ତୁ କହିଲେ ଯେ ମଧୁସୂଦନ କଂଗ୍ରେସ ଯୋଗ ଦେବା ପାଇଁ ମନରେ ପାଞ୍ଚୁଥିଲେ ଏବଂ କଂଗ୍ରେସ ରାଜନୀତିରେ ପଶିବା ପାଇଁ ନିଜ ପଥ ସୁଗମ କରିବା ଲକ୍ଷ୍ୟରେ ଗୋପବଂଧୁଙ୍କର ପ୍ରଶଂସା ଗାଇଥିଲେ।

ଗୋପବଂଧୁ ଖଲାସ ହେଲେ ଜୁନ ୨୬ ତାରିଖରେ। ଏହାର ଦୁଇ ଦିନ ପରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ଏକ ସମ୍ମିଳନୀ ଥିଲା। ସଭା ଆରମ୍ଭ ପୂର୍ବରୁ ମଧୁସୂଦନ କଂଗ୍ରେସ ଆବେଦନ ପତ୍ରରେ ସ୍ୱାକ୍ଷର କରି ପ୍ରତିନିଧି ଭାବରେ ସଭାରେ ଯୋଗ ଦେଲେ। ଏହି ସମ୍ମିଳନୀରେ ମଧୁସୂଦନଙ୍କ ଉତ୍କଳ ଟ୍ୟାନେରି ପାଇଁ ଗୋଟିଏ ପ୍ରସ୍ତାବ ଗୃହୀତ ହୋଇଥିଲା: ଏ ସମ୍ମିଳନୀ ଉତ୍କଳ ଟ୍ୟାନେରି ଯୌଥ କମ୍ପାନୀ ପ୍ରତି ସହାନୁଭୂତି ପ୍ରକାଶ କରୁଛନ୍ତି ଓ ଦେଶବାସୀ ଏଥିରେ ସାହାଯ୍ୟ କରିବେ ବୋଲି ଆଶା କରନ୍ତି। ଏହି ସମ୍ମିଳନୀରେ ଅସହଯୋଗକୁ ସମର୍ଥନ କରି ପ୍ରସ୍ତାବ ଆସିଲା। ମଧୁସୂଦନ ଏହାକୁ ବିରୋଧ କଲେ, କିନ୍ତୁ ବହୁମତରେ ପ୍ରସ୍ତାବଟି ପାରିତ ହେଲା। ଏହାପରେ ମଧୁସୂଦନ ପୁଣି ଥରେ କଂଗ୍ରେସ ସହିତ ସଂପର୍କ କାଟି ଦେଲେ।

ମଧୁସୂଦନଙ୍କ ଆଗରେ ବର୍ତ୍ତମାନ ଏକ ବଡ଼ ସମସ୍ୟା ଥିଲା ଉତ୍କଳ ଟ୍ୟାନେରି। ଏହାକୁ ସେ ୧୯୦୫ରେ ଆରମ୍ଭ କରିଥିଲେ କିନ୍ତୁ ଅଳ୍ପ କିଛି ବର୍ଷ ଭଲରେ ଚାଲିବା ପରେ ଏହାର ଅବନତି ହେବାରେ ଲାଗିଲା ଏବଂ ଏହାକୁ ଚଳାଇବାକୁ ଯାଇ ମଧୁସୂଦନ ଋଣଗ୍ରସ୍ତ ହୋଇଗଲେ। ଏହି କାରଖାନା ଓଡ଼ିଶା ପାଇଁ ଏକ ଜାତୀୟ ସଂପତ୍ତି ଭଳି ହୋଇଥିବାରୁ ଉତ୍କଳ ପ୍ରାଦେଶିକ କଂଗ୍ରେସ ସମ୍ମିଳନୀର ଯେଉଁ ସଭାରେ ଗୋପବଂଧୁଙ୍କୁ ଉତ୍କଳମଣି ଉପାଧି ଦିଆଗଲା, ସେହି ସଭାରେ ଟ୍ୟାନେରିର ପୁନରୁଦ୍ଧାର ପାଇଁ ଗୋଟିଏ ପ୍ରସ୍ତାବ ହୋଇଥିଲା। ଏହା ପରେ କଂପାନୀ ପାଇଁ ଶେୟାର ବିକ୍ରୟ ଆରମ୍ଭ ହେଲା। ଗୋପବଂଧୁ ଟ୍ୟାନେରିର କାର୍ଯ୍ୟଭାର ନେବା ପାଇଁ ପ୍ରସ୍ତୁତ ଅଛନ୍ତି ବୋଲି କହିଲେ। କିନ୍ତୁ ନିର୍ଦ୍ଦିଷ୍ଟ ସଂଖ୍ୟକ ଅଂଶ ନ ଉଠିବାରୁ ଗୋପବଂଧୁ ନିଜ ପ୍ରତିଶ୍ରୁତିରୁ ଓହରି ଯାଇ ଯୁକ୍ତି ଦେଲେ ଯେ ତାଙ୍କ ପାଖରେ ଅଂଶ କିଣିବାକୁ ବଳ ନାହିଁ, ତାଙ୍କର ସମୟ ନାହିଁ ଏବଂ ବ୍ୟବସାୟ ବା କାରବାରରେ

ତାଙ୍କର ଅଭିଜ୍ଞତା ନାହିଁ।

ଗାନ୍ଧୀଙ୍କୁ ଗୋପବଂଧୁ ପ୍ରଥମ ଥର ଓଡ଼ିଶାକୁ ଆଣିଥିଲେ ୧୯୨୧ ମାର୍ଚ୍ଚ ମାସରେ। ୧୯୨୫ରେ ଗାନ୍ଧୀଙ୍କୁ ଅନୁରୋଧ କରିବାରେ ସେ ଟ୍ୟାନେରି ଦେଖିବାକୁ ଆସିଲେ। ଏଥର ସେ ସାଙ୍ଗରେ ଆଣିଥିଲେ କଲିକତାର ଜଣେ ବ୍ୟବସାୟୀଙ୍କୁ କାରଖାନା ଦେଖାଇବା ପାଇଁ, କିନ୍ତୁ ସେଥିରେ ମଧ କୌଣସି ଫଳ ହେଲା ନାହିଁ।

ଉତ୍କଳ ଟ୍ୟାନେରି ଯୋଜନାର ବିଫଳତା ପରେ ମଧୁସୂଦନ ଓ ଗୋପବଂଧୁ ପରସ୍ପରଠାରୁ ଦୂରେଇ ଗଲେ। ଗୋପବଂଧୁ କଂଗ୍ରେସ କାମରେ ନିଜକୁ ପୂର୍ଣ୍ଣ ମାତ୍ରାରେ ନିୟୋଜିତ କରିଦେଲେ। ମଧୁସୂଦନ ନିଜର ଶେଷ ବୟସରେ ବ୍ୟସ୍ତ ରହିଲେ ନିଜର ସ୍ୱାସ୍ଥ୍ୟ ଓ ଆର୍ଥିକ ସମସ୍ୟାମାନଙ୍କୁ ନେଇ। ସେ ସେତେବେଳକୁ ଓଡ଼ିଶାର ସର୍ବପ୍ରସିଦ୍ଧ ଲୋକ। ତେଣୁ ସଭା ସମିତି, ସମ୍ବର୍ଦ୍ଧନା ଓ ବିଭିନ୍ନ ସମସ୍ୟାରେ ତାଙ୍କର ପରାମର୍ଶ ନେବା ଲାଗି ରହିଲା। କିନ୍ତୁ ସେ ମୁହୂର୍ତ୍ତେ ମାତ୍ର ଓଡ଼ିଶାର ସମ୍ମିଶ୍ରଣ ଉଦ୍ୟମରୁ ବିରତ ହୋଇ ନଥିଲେ।

ଗୁରୁ ଶିଷ୍ୟ ସଂପର୍କ ସବୁବେଳେ ସମସ୍ୟାଜନକ। ଗାନ୍ଧୀ ଓ ନେହେରୁ ବ୍ୟକ୍ତିଗତ ଭାବରେ ଘନିଷ୍ଠ ଥିଲେ ମଧ ନେହେରୁଙ୍କୁ କେହି ଖାଣ୍ଟି ଗାନ୍ଧୀବାଦୀ ବୋଲି କହନ୍ତି ନାହିଁ। ସେହିପରି ରାମକୃଷ୍ଣ ପରମହଂସ ଓ ବିବେକାନନ୍ଦ। ବିବେକାନନ୍ଦ ମଧ ରାମକୃଷ୍ଣଙ୍କର ମୂଳ ବିଶ୍ୱାସ ସବୁକୁ ଓଲଟ ପାଲଟ କରି ଦେଇଥିଲେ। ସେଥିପାଇଁ ଗୋପବଂଧୁ ଯେ ତାଙ୍କର ଗୁରୁ ମଧୁସୂଦନଙ୍କଠାରୁ କ୍ରମେ କ୍ରମେ ଦୂରକୁ ଚାଲିଗଲେ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ।

୮୦ ବର୍ଷ ବୟସରେ ମଧୁସୂଦନ ନିଜେ କହିଥିଲେ, " ମୁଁ ଓଡ଼ିଆ ଜାତିର ପ୍ରଥମ ଏମ୍.ଏ, ପ୍ରଥମ ଓଡ଼ିଆ ଓକିଲ, ପ୍ରଥମ ଓଡ଼ିଆ ଆଡ୍‌ଭୋକେଟ୍, ୟୁରୋପ ପରିଦର୍ଶନରେ ପ୍ରଥମ ଓଡ଼ିଆ, ପ୍ରାଦେଶିକ ବ୍ୟବସ୍ଥାପକ ସଭା ଓ ଭାଇସରୟଙ୍କ ବ୍ୟବସ୍ଥାପକ ସଭାରେ ପ୍ରଥମ ସଭ୍ୟ, ପ୍ରଥମ ଓଡ଼ିଆ ମନ୍ତ୍ରୀ ଓ ମନ୍ତ୍ରିତ୍ୱ ତ୍ୟାଗ କରିବାରେ ପ୍ରଥମ ଭାରତୀୟ।"

ଗୋପବଂଧୁ ଗାଁ ଚାହାଳିରୁ ଆରମ୍ଭ କରି, ମଝିରେ ଫେଲ ହୋଇ, ଶେଷରେ କଲିକତାରୁ ବି.ଏଲ୍ ପାସ କରିଥିଲେ। କଲିକତାରୁ ଆସି ସେ ଛ ମାସ ଶିକ୍ଷକତା କଲେ। ପରେ ସେ ମଧୁସୂଦନଙ୍କ ସହାୟତାରେ ଓକିଲାତି କଲେ, କିନ୍ତୁ ଏଥିରେ ତାଙ୍କର ମନ ନ ଥିଲା।

ଏଥିରୁ ଆଶା କରିବା କଥା ଯେ ମଧୁସୂଦନଙ୍କର ଦୃଷ୍ଟିଭଙ୍ଗୀ ବିସ୍ତୃତ ହୋଇଥିବ। ଅବଶ୍ୟ ସେ ବିଭିନ୍ନ ବିଷୟରେ ଆଗ୍ରହ ଦେଖାଉଥିଲେ ଓ ମତବ୍ୟକ୍ତ କରୁଥିଲେ ଓ ବିଭିନ୍ନ ପ୍ରକାରର ଅନୁଷ୍ଠାନ ସହିତ ଜଡ଼ିତ ଥିଲେ। କିନ୍ତୁ ତାଙ୍କର ମୂଳ ଲକ୍ଷ୍ୟ ଥିଲା ବଙ୍ଗାଳୀମାନଙ୍କଠାରୁ ଅଧିକ ଉନ୍ନତ ହେବା, ଓଡ଼ିଶାର ଔଦ୍ୟୋଗିକ ବିକାଶ କରିବା ଓ ଏ ସବୁର ଊର୍ଦ୍ଧ୍ୱରେ ଓଡ଼ିଶାକୁ ଏକାଠି କରିବା। ଏହି ଲକ୍ଷ୍ୟ ବାହାରେ ଯେ ଇଂରେଜ ଶାସନ ବିରୋଧରେ ଏକ ବଡ଼ ଯୁଗାନ୍ତକାରୀ ଆନ୍ଦୋଳନ ହେଉଥିଲା ତାକୁ ସେ

ଅଦେଖା କରିଦେଲେ । ଏକ ସଂକୁଚିତ ବତାବରଣରେ ବଢ଼ିଥିବା ଗୋପବଂଧୁ କିନ୍ତୁ ଏହି ଇଂରେଜ ବିରୋଧୀ ମହା ଭାରତୀୟ ସ୍ରୋତରେ ନିଜକୁ ସଂପୂର୍ଣ୍ଣ ଭାବେ ସମର୍ପିତ କରିଦେଲେ ।

୧୯୨୮ରେ ଯେତେବେଳେ ସାତଜଣ ସଭ୍ୟ ଥିବା ସାଇମନ କମିଶନ ଭାରତକୁ ଆସିଲା, କଂଗ୍ରେସ ପକ୍ଷରୁ ତାର ଘୋର ବିରୋଧ କରାଗଲା ଏବଂ ତା ସହିତ ସହଯୋଗ ନ କରିବା ପାଇଁ ନିଷ୍ପତ୍ତି ହେଲା । ସାରା ଦେଶରେ 'ସାଇମନ ଗୋ ବ୍ୟାକ' ସ୍ଲୋଗାନ ଓ ପୋଷ୍ଟର ଜାରି ରହିଲା । ଓଡ଼ିଶାରେ ଏହି ସାତଜଣଙ୍କୁ ନାଁ ଦିଆଗଲା ସାଇମନ ସପ୍ତା(ଯେପରି ଶନି ସପ୍ତା) ଓ ସାଇମନ ସାତଭାୟା (ଯେପରି ସାତଭାୟା ଗେଧ) । କମିଶନ ଯେତେ ଦିନ ଭାରତରେ ଥିଲେ ସବୁ ଜାଗାରେ କଳାପତାକା ଓ 'ସାଇମନ ଚାଲି ଯାଅ' ନାରା ଥିଲା । ଏହାର ଏକମାତ୍ର ବ୍ୟତିକ୍ରମ ଥିଲା ଯେତେବେଳେ ୧୯୨୮ ଡିସେମ୍ବର ୧୨ ତାରିଖ ଦିନ ସାଇମନ ପାଟନା ଷ୍ଟେସନରେ ଟ୍ରେନରୁ ଓହ୍ଲାଇଲେ । କଳା ପତାକା ଓ ସାଇମନ ଚାଲିଯାଅ ପୋଷ୍ଟର ଭିଡ଼ ଭିତରେ ଦଶ ପନ୍ଦର ଜଣ ଲୋକ 'ୱେଲକମ୍ ସାଇମନ' ପତାକା ଧରି ଛିଡ଼ା ହୋଇଥିଲେ । ଏମାନେ ମଧୁସୂଦନଙ୍କ ଲୋକ ଥିଲେ ଏବଂ ଆଶା କରୁଥିଲେ ଯେ ଏହା ଦ୍ୱାରା ବ୍ରିଟିଶ ସରକାର ପ୍ରୀତ ହୋଇ ସ୍ୱତନ୍ତ୍ର ଓଡ଼ିଶାର ପୁରସ୍କାର ଦେବେ । ଏମାନଙ୍କ ମଧ୍ୟରୁ ଜଣେ, ହରିହର ମହାପାତ୍ର, ଏ କାମ ପାଇଁ ପରବର୍ତ୍ତୀ ସମୟରେ ନିଜକୁ ଲଜ୍ଜିତ ମନେ କରିଥିଲେ ।

ଏହି ହୀନିମାନିଆ ଦୃଶ୍ୟ ଦେଖିବାକୁ ଗୋପବଂଧୁ ନଥିଲେ । ଛ ମାସ ଆଗରୁ ଜୁନ୍ ୧୬ ତାରିଖରେ ତାଙ୍କର ଦେହାନ୍ତ ହୋଇ ଯାଇଥିଲା । ମଧୁସୂଦନ ଗୋପବଂଧୁଙ୍କୁ ଲେଖିଥିଲେ, ତମେ ହେଉଛ ଏକମାତ୍ର ଲୋକ ଯାହା ସହିତ ମିଶି ମୁଁ ମୃତ୍ୟୁଶଯ୍ୟାରେ ଥାଇ ପ୍ରାର୍ଥନା କରିବାକୁ ଚାହିଁବି । ଗୋପବଂଧୁ କିନ୍ତୁ ଆଗରୁ ଚାଲିଗଲେ । ମଧୁସୂଦନ ଆହୁରି ପାଞ୍ଚ ବର୍ଷ ଉପରେ ବଞ୍ଚିଲେ, କିନ୍ତୁ ସେ ମଧ୍ୟ ତାଙ୍କର ଜୀବନର ସ୍ୱପ୍ନକୁ ସଫଳ ହେବାର ଦେଖି ପାରିଲେ ନାହିଁ । ପହିଲା ଏପ୍ରିଲ ୧୯୩୬ ହେବାକୁ ଆହୁରି ଦି ବର୍ଷ ସମୟ ଥିଲା ।

*ଏପ୍ରିଲ, ୨୦୧୫*

# ମିଛ ଇତିହାସ

ଅତୀତକୁ ବଦଳାଇବା ଈଶ୍ୱରଙ୍କ ସାମର୍ଥ୍ୟର ବାହାରେ, କିନ୍ତୁ ଇତିହାସକାରମାନେ ସହଜରେ ଏ କଥା କରିପାରନ୍ତି। ସେଥିପାଇଁ ଆମେ ଇତିହାସ ପୃଷ୍ଠାରେ ଦେଖିବାକୁ ପାଉ ଗୋଟିଏ ଘଟଣାର ବିଭିନ୍ନ ପ୍ରକାରର ବର୍ଣ୍ଣନା। ଏହା ସମ୍ଭବ କାରଣ ପ୍ରତ୍ୟେକ ଦର୍ଶକର ବୁଝିବାର ଶକ୍ତି ଓ ଦୃଷ୍ଟିଭଙ୍ଗୀ ଅଲଗା। ଟାୱାର ଅଫ ଇଂଲଣ୍ଡରେ ବନ୍ଦୀ ଥାଇ ମୃତ୍ୟୁଦଣ୍ଡକୁ ଅପେକ୍ଷା କରୁଥିବା ବେଳେ ୱାଲଟର ରାଲେ ଗୋଟିଏ ବିଶ୍ୱ ଇତିହାସ ଲେଖିବା ଆରମ୍ଭ କରିଥିଲେ। ଦିନେ ଝରକା ବାଟ ଦେଇ ସେ ଦେଖିଲେ ଜଣେ ବନ୍ଧୁ ତାଙ୍କୁ ଭେଟିବାକୁ ଆସୁଥିଲେ। ଏଇ ସମୟରେ ସେ ରାସ୍ତାରେ ଗଣ୍ଡଗୋଳ ହେଲା। ବନ୍ଧୁ ଆସି ରାଲେଙ୍କୁ ସେହି ଗୋଳମାଳର ଯେଉଁ ବିବରଣୀ ଦେଲେ ତାହା ରାଲେ ନିଜ ଆଖିରେ ଦେଖିଥିବା ଘଟଣାଠାରୁ ସଂପୂର୍ଣ୍ଣ ଭିନ୍ନ ଥିଲା। ରାଲେ ଉପଲବ୍‌ଧି କଲେ ଯେ ଗୋଟିଏ ନିର୍ଦ୍ଦିଷ୍ଟ ଘଟଣା ବିଷୟରେ ପରସ୍ପରକୁ ଜାଣିଥିବା ଓ ପରସ୍ପର ପ୍ରତି ସମ୍ମାନ ଥିବା ଦୁଇ ବନ୍ଧୁଙ୍କର ମତ ଯଦି ଏକା ନ ହେଲା, ତେବେ ଇତିହାସର ଘଟଣାକୁ କି ଭଳି ପ୍ରାମାଣିକ କହି ହେବ? ସେ ତେଣୁ ତାଙ୍କର ଅଧା ଲେଖା ଇତିହାସକୁ ଜାଳି ଦେଲେ।

ଉପର ଉଦାହରଣଟି ହେଲା ସଚ୍ଚୋଟ ଓ ଅପକ୍ଷପାତୀ କିନ୍ତୁ ବିରୋଧୀ ଦୃଷ୍ଟିଭଙ୍ଗୀର ଉଦାହରଣ। ଏ ଭଳି ପରିସ୍ଥିତିରେ ଦୁଇଟି ଭିନ୍ନ ଭିନ୍ନ ପ୍ରକାରର ଇତିହାସ ଲେଖା ଯାଇପାରେ। କିନ୍ତୁ ସମସ୍ୟା ଉପୁଜେ ଯେତେବେଳେ ଜାଣିଶୁଣି ସୁକଳ୍ପିତ ଭାବେ ଏକ ସଂପୂର୍ଣ୍ଣ ଅସତ୍ୟକୁ ପ୍ରଚାର କରିବାକୁ ମିଛ ଦଲିଲ ତିଆରି କରାଯାଏ। ଏ ଭଳି ଅବୈଧ ଇତିହାସ ବିରଚନ ସଂପୂର୍ଣ୍ଣ ନିନ୍ଦନୀୟ।

ଉଦ୍ଦେଶ୍ୟମୂଳକ ଐତିହାସିକ ଅପକର୍ମର ଏକ ବିଶେଷ ଉଦାହରଣ ହେଲା ୧୯୦୩ରେ ପ୍ରଚାରିତ 'ବୟୋଜ୍ୟେଷ୍ଠ ଇହୁଦୀଙ୍କର ଦଲିଲ', ଯେଉଁଥିରେ ଥିଲା ଇହୁଦୀମାନେ ପୃଥିବୀକୁ ବଶୀଭୂତ କରିବାର ଖସଡ଼ା। ଏଇଟି ସଂପୂର୍ଣ୍ଣ କପୋଳକଳ୍ପିତ ଥିଲା ଏବଂ ତିଆରି କରାଯାଇଥିଲା ଇହୁଦୀମାନଙ୍କ ପ୍ରତି ସାଧାରଣରେ ବିଦ୍ୱେଷ ସୃଷ୍ଟି କରିବା ପାଇଁ। ନାଜିମାନେ କ୍ଷମତାକୁ ଆସିବା ପରେ ହିଟଲର ଏହାକୁ ଜର୍ମାନୀର ସ୍କୁଲ ପାଠରେ ଲଗାଇଥିଲେ ଏବଂ ଶେଷରେ ତାଙ୍କର ହୋଲୋକାଷ୍ଟ ବା ଗଣନିଧନ ଯୋଜନାରେ ୬୦ ଲକ୍ଷ ଇହୁଦୀଙ୍କୁ ହତ୍ୟା କରାଯାଇଥିଲା।

ଇତିହାସକୁ ବିକୃତ କରିବାର କେତେକ ଉପାୟ ହେଲା : ମିଛ ଦଲିଲ ତିଆରି କରିବା,

ସତ ଦଲିଲକୁ ମିଛ ପ୍ରମାଣ କରିବାକୁ ଚେଷ୍ଟା କରିବା ଏବଂ ଜାଣିଶୁଣି ସତ୍ୟକୁ ଭ୍ରମାତ୍ମକ ଓ ଉଦ୍ଦେଶ୍ୟମୂଳକ ଭାବେ ବ୍ୟାଖ୍ୟା କରିବା। କିଛି ନବ୍ୟ ନାଜିବାଦୀ ବର୍ତ୍ତମାନ ଇହୁଦୀ ଗଣନିଧନକୁ ଅସ୍ୱୀକାର କରୁଛନ୍ତି ଏବଂ ଏଭଳି ଅସ୍ୱୀକାର କରିବା ଅନେକ ଇଉରୋପୀୟ ଦେଶରେ ଦଣ୍ଡନୀୟ ଅପରାଧ।

ମିଛ ଇତିହାସ ଲେଖି ଯେପରି ଅନ୍ୟକୁ ନୀଚ ବା ଘୃଣ୍ୟ ଦେଖାଇ ଦିଆଯାଇପାରେ, ସେହିପରି ମିଥ୍ୟାର ସାହାଯ୍ୟ ନେଇ ନିଜକୁ ମହିମାମଣ୍ଡିତ କରିବାର ଚେଷ୍ଟା ମଧ୍ୟ କରାଯାଇପାରେ। ଏ ଭଳି ଅପଲେଖନର ଉଦାହରଣ ହେଉଛି ହିନ୍ଦୁତ୍ୱବାଦୀ ତଥାକଥିତ ଐତିହାସିକମାନଙ୍କର ଭାରତର ଅତୀତକୁ ଗେରୁଆ ରଙ୍ଗ ଦେବାର ପ୍ରଚେଷ୍ଟା । ପି.ଏନ୍. ଓକ ନାମକ ଭଦ୍ରବ୍ୟକ୍ତି ଏକାଧିକ ଲେଖାରେ ପ୍ରମାଣ କରିବାକୁ ଚେଷ୍ଟା କରିଛନ୍ତି ଯେ ଭାରତବର୍ଷର ମୁସଲମାନ କୃତି ସବୁ ହେଉଛି ପ୍ରକୃତରେ ହିନ୍ଦୁ କୀର୍ତ୍ତି, ଯଥା, ତାଜମହଲ ହେଉଛି ତେଜ ମହାଳୟ। ତାଙ୍କ ମତରେ ଇସଲାମ ଓ ଖ୍ରିଷ୍ଟିଆନିଟି ବୈଦିକ ଚିନ୍ତାଧାରାରୁ ଜାତ ଏବଂ ଏମାନଙ୍କର ମୂଳ ନାଁ ହେଲା ଈଶାଳୟମ୍ ଓ କୃଷ୍ଣନୀତି! ସେହିପରି ସଂଘ ପରିବାରର ଆଉ ଗୋଟିଏ ଦାବୀ ହେଉଛି ଯେ ଆର୍ଯ୍ୟମାନେ ବାହାରୁ ଆସି ନଥିଲେ, ମୂଳରୁ ଭାରତ ବାସିନ୍ଦା ଥିଲେ। ଆଗରୁ ଭାରତରେ ଘୋଡ଼ା ନ ଥିଲେ ଏବଂ ଆର୍ଯ୍ୟମାନେ ତାକୁ ଆଣିଥିଲେ ଏ ମତକୁ ଖଣ୍ଡନ କରିବା ପାଇଁ ହରପ୍ପା ମୋହରରେ ଥିବା ଗୋଟିଏ ଜନ୍ତୁର ଚିତ୍ରକୁ କଂପ୍ୟୁଟରରେ ବଦଳାଇ ଘୋଡ଼ା ଭଳି କରିଦିଆ ହୋଇଛି।

ଓଡ଼ିଶା ଇତିହାସକୁ ଗଠନ ଓ ପୁନର୍ଲିଖନ କରିବାର ଗୋଟିଏ ଆଦ୍ୟ ଉଦାହରଣ ହେଉଛି ମାଦଳା ପାଂଜି। ଦ୍ୱାଦଶ ଶତାବ୍ଦୀରୁ ଲେଖା ହେଉଥିବା ବୋଲି କୁହା ଯାଉଥିବା ଏହି ଚକଡ଼ାରେ ରାଜଭୋଗର ଇତିହାସ ଅଛି, କଳିଯୁଗରୁ ଆରମ୍ଭ କରି। ଏହାକୁ ଭିତ୍ତି କରି ୧୮୨୫ରେ ଷ୍ଟର୍ଲିଂ ତାଙ୍କର ଓଡ଼ିଶା ଇତିହାସ ଲେଖିଲେ ଏବଂ ମତ ଦେଲେ ଯେ ମାଦଳାପାଂଜିରେ ପଞ୍ଚମ ଶତାବ୍ଦୀ ପରର ବିବରଣୀମାନ ସଠିକ। ପରବର୍ତ୍ତୀ ସମୟରେ କିନ୍ତୁ ଶିଳାଲିପି ଓ ତମ୍ବାପଟାର ପ୍ରମାଣ ମିଳିବାରୁ ମାଦଳାପାଂଜିକୁ ଆଉ ବିଶ୍ୱସନୀୟ ମନେ କରାଗଲା ନାହିଁ। ଫ୍ଲୀଟ୍ ତାଙ୍କର ଏପିଗ୍ରାଫିକା ଇଣ୍ଡିକା(୧୮୯୪)ରେ ଲେଖିଲେ, କେବଳ ମାଦଳାପାଂଜିର ଅସମର୍ଥିତ ବର୍ଣ୍ଣନା ଉପରେ ନିର୍ଭର କରି ଯାହାସବୁ ଲେଖାଯାଇଛି ତାକୁ ସଶରୀର ଇତିହାସ ପୃଷ୍ଠାରୁ ବାହାର କରିଦେବାକୁ ହେବ।

ମାଦଳାପାଂଜିର ପ୍ରାଚୀନତା ବିଷୟରେ ମତ ଦେଇ ହରେକୃଷ୍ଣ ମହତାବ ଲେଖିଛନ୍ତି ଯେ ଏହାର ଲେଖା ଆରମ୍ଭ ହୋଇଥିଲା ମାତ୍ର ଷୋଡ଼ଶ ଶତାବ୍ଦୀରେ। ଓଡ଼ିଶା ମୋଗଲ ଶାସନାଧୀନ ହେବା ପରେ ରାଜା ରାମଚନ୍ଦ୍ରଦେବ ନିଜର ବଂଶର ସୁବିଧା ପାଇଁ ବଟକୃଷ୍ଣ ମହାନ୍ତିଙ୍କ ଦ୍ୱାରା ମାଦଳାପାଂଜି ଲେଖାଇଥିଲେ। ପୁଣି ୧୮୦୩ରେ ବ୍ରିଟିଶ ଶାସକମାନେ ଖୋର୍ଦ୍ଧା ରାଜାଙ୍କ ଅଧିକାରକୁ ନ ମାନି ଜଗନ୍ନାଥ ମନ୍ଦିରରେ ହସ୍ତକ୍ଷେପ କଲାବେଳେ ମାଦଳାପାଂଜିରେ କିଛି ନୂଆ ପରିଚ୍ଛେଦ ଯୋଡ଼ା ଗଲା ଯାହା ଦ୍ୱାରା ରାଜାଙ୍କର ଅଧିକାର

ସୁରକ୍ଷିତ ହେବ। ତେଣୁ, କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ଭାଷାରେ, ଖାଲି ଜଗନ୍ନାଥଙ୍କ ନବକଳେବର ହେଉନାହିଁ, ମାଦଳାପାଂଜିର ମଧ୍ୟ ବହୁ ନବ କଳେବର ହୋଇ ଆସିଛି।

ଏହି ଆଦର୍ଶରେ ଅନୁପ୍ରାଣିତ ହୋଇ ଓଡ଼ିଶା ଗଡ଼ଜାତର କୁଳି ରାଜା ଓ ଜମିଦାରମାନେ ନିଜ ନିଜର ବଂଶଗୌରବ ପାଇଁ ନିଜକୁ କ୍ଷତ୍ରିୟ ରାଜପୁତ୍ର ବଂଶୋଦ୍ଭବ ବୋଲି କହିବାକୁ ଚାହିଁଲେ ଏବଂ ଏଥିପାଇଁ ଇଂରେଜ ଗେଜେଟିଅର ଲେଖକଙ୍କୁ ନିଜକୁ ସୁହାଇବା ଭଳି ତଥ୍ୟ ଯୋଗାଇଲେ। ସୋନପୁର-ପାଟଣା ରାଜା ବିଜୟଚନ୍ଦ୍ର ମଜୁମଦାରଙ୍କୁ ରାଜ୍ୟର ଇତିହାସ ତିଆରି କରିବାକୁ ନିଯୁକ୍ତ କଲେ ଏବଂ ସେ ତାଙ୍କର ୧୯୧୧ର ସୋନପୁର ବହିରେ ସେଠାର ରାଜା ଚୌହାନ ରାଜବଂଶର ବୋଲି ଉପସ୍ଥାପିତ କଲେ। ଓଡ଼ିଆ ରାଜାଙ୍କର ରାଜପୁତ କୁଳରୁ ଆସିଥିବା ବିଷୟରେ କଟୁ ମନ୍ତବ୍ୟ ଦେଇ ଆର୍.ଡି. ବ୍ୟାନାର୍ଜୀ ତାଙ୍କ ଓଡ଼ିଶା ଇତିହାସ(୧୯୩୦) ବହିରେ ଲେଖିଛନ୍ତି ଯେ ଏ ଦାବୀମାନ ସଂପୂର୍ଣ୍ଣ ମିଥ୍ୟା।

କୌଣସି ଦେଶକୁ ଗୌରବାନ୍ୱିତ କରିବା ପାଇଁ ସେଠାରେ ମହାପୁରୁଷ ଜନ୍ମ ନେଇଥିବାର ଉଦାହରଣ ଦିଆଯାଇଥାଏ। ଓଡ଼ିଶାରେ ଅନେକ ମହାପୁରୁଷ ଜନ୍ମିଥିବାର ଗଣନା କରାଯାଏ ଏବଂ ସେଥିରେ ପ୍ରଥମେ ଆସେ ବୁଦ୍ଧଙ୍କର ନାଁ। ୧୯୨୮ରେ ବୀରେନ୍ଦ୍ରନାଥ ରାୟ ନାମକ ପୁରୀର ଜଣେ ବ୍ୟବସାୟୀ ଭୁବନେଶ୍ୱର ନିକଟ କପିଳେଶ୍ୱରରୁ ଗୋଟିଏ ଶିଳାଲିପି ପାଇଥିବାର କହି ତାକୁ କଲିକତା ମିଉଜିଅମକୁ ବିକ୍ରି କଲେ। ଏହି ଶିଳାଲିପିକୁ ଭିତ୍ତି କରି ଦାବୀ କରାଗଲା ଯେ ନେପାଳ ନୁହେଁ ଓଡ଼ିଶା, ଓ କପିଳବାସ୍ତୁ ନୁହେଁ କପିଳେଶ୍ୱର ହିଁ ହେଉଛି ବୁଦ୍ଧଙ୍କର ଜନ୍ମସ୍ଥାନ। ବର୍ତ୍ତମାନ କିନ୍ତୁ ବିଦ୍ୱାନମାନେ ଏକମତ ଯେ ଏହି ଶିଳାଲିପିଟି ନେପାଳରୁ ମିଳିଥିବା ଶିଳାଲିପିର ଶସ୍ତା ନକଲ ମାତ୍ର। ତଥାପି ବୁଦ୍ଧଙ୍କୁ ଓଡ଼ିଆ ପ୍ରମାଣ କରିବାର ପ୍ରଚେଷ୍ଟା ଜାରି ରହିଛି। ଓଡ଼ିଶା ସରକାର ମଧ୍ୟ ଏ ଭଳି ଦାବୀରେ ଯୋଗ ଦେଇଛନ୍ତି।(ଟାଇମ୍‌ସ୍ ଅଫ ଇଣ୍ଡିଆ, ଦିଲ୍ଲୀ, ୩୦.୧୨. ୨୦୦୮)

ସେହିପରି ଜୟଦେବଙ୍କ ଜନ୍ମସ୍ଥାନ ନେଇ ପ୍ରାଚୀନ ବିବାଦର ମଧ୍ୟ ଅନ୍ତ ନାହିଁ। ୧୭୯୯ରେ ପ୍ରକାଶିତ ତାଙ୍କର ଗୀତଗୋବିନ୍ଦ ବହିର ମୁଖବନ୍ଧରେ ଉଇଲିଆମ୍ ଜୋନ୍‌ସ ଏହି ବିବାଦର ଉଲ୍ଲେଖ କରିଥିଲେ। ଅନ୍ତତଃ ସେହି ସମୟରୁ ଓଡ଼ିଶା ଓ ବଙ୍ଗଳା ପ୍ରାଚୀତଟ କେନ୍ଦୁଳୀ ଓ ବର୍ଦ୍ଧମାନର କେନ୍ଦୁଳୀ ଜୟଦେବଙ୍କ ଜନ୍ମସ୍ଥାନ ବୋଲି ଦାବୀ କରି ଆସୁଛନ୍ତି। ଯଦି କେହି ବଙ୍ଗାଳୀ ଜୟଦେବଙ୍କୁ ଓଡ଼ିଶାର ବୋଲି କହେ ଆମ ଖବରକାଗଜର ପ୍ରଥମ ପୃଷ୍ଠାରେ ଶିରୋନାମା ହୁଏ, 'ଆଉ ଜଣେ ବଙ୍ଗୀୟ ଗବେଷକଙ୍କ ସ୍ୱୀକାରୋକ୍ତି' (ଦିନଲିପି ୩.୬.୨୦୦୭)। ଏକ ସମୟରେ ପ୍ରାଚୀ ତଟରୁ ମିଳିଥିବା କୁହାଯାଉଥିବା ଏକ ଶିଳାଲିପି ଅସଲି ହୋଇଥିବା ବିଷୟରେ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ସନ୍ଦେହ ପ୍ରକାଶ କରିଛନ୍ତି। ସେହିପରି 'ବୈଷ୍ଣବ ଲୀଳାମୃତ' ନାମକ ପ୍ରାଚୀନ ବହିରେ କେନ୍ଦୁଳୀକୁ ଜୟଦେବଙ୍କ ବାସସ୍ଥାନ କୁହାଯାଉଥବା ବିଷୟରେ ମଧ୍ୟ ପ୍ରଶ୍ନ ଉଠାଯାଇଛି। ଏ ବହିର ଦୀର୍ଘ ଆଲୋଚନା କରି ଐତିହାସିକ କୈଳାଶ ଚନ୍ଦ୍ର ଦାଶ ଏଇଟି ନିର୍ଭରଯୋଗ୍ୟ ନୁହେଁ ବୋଲି କହିଛନ୍ତି। ତାଙ୍କ

ମତରେ ୧୫୩୫ରେ ଲେଖା ହୋଇଛି ବୋଲି କୁହାଯାଉଥିବା ବହିଟି ବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଲେଖା ହୋଇଥିଲା। ସେ ଆହୁରି ମଧ୍ୟ ସିଦ୍ଧାନ୍ତ କରିଛନ୍ତି ଯେ ଏହି ବହିଟି ଲେଖା ହୋଇଥିଲା ଓଡ଼ିଶା ଇତିହାସର କେତେକ ବିବଦମାନ ରହସ୍ୟ ସମାଧାନ କରିବା ପାଇଁ, ଯଥା, କବୀର କଣ ପୁରୀକୁ ଆସିଥିଲେ, ଚୈତନ୍ୟ କିପରି ତିରୋଧାନ କଲେ, ପଞ୍ଚସଖାଙ୍କ ସହିତ ଚୈତନ୍ୟଙ୍କର ସଂପର୍କ କିପରି ଥିଲା ଇତ୍ୟାଦି।

ଆହୁରି ମଜାର କଥା ଯେ ଓଡ଼ିଶା ଭିତରୁ ମଧ୍ୟ ସ୍ୱର ଉଠୁଛି ଯେ ପ୍ରାଚୀ ତଟର କେନ୍ଦୁଳୀ ପ୍ରକୃତରେ ଜୟଦେବଙ୍କର ଜନ୍ମସ୍ଥାନ ନୁହେଁ, ତାଙ୍କର ଜନ୍ମସ୍ଥାନ ହେଉଛି ଖଣ୍ଡପଡ଼ା ନିକଟବର୍ତ୍ତୀ କେନ୍ଦୁପଲ୍ଲୀ! ଶେକ୍ସପିଅରଙ୍କ ନାଟକମାନ ପ୍ରକୃତରେ କିଏ ଲେଖିଥିଲା ସେ ବିବାଦର ଯେପରି ଶେଷ ହେଉନାହିଁ, ଜୟଦେବ ଜନ୍ମସ୍ଥାନ ଆଲୋଚନାର ମଧ୍ୟ ଶେଷ ହେବାର ଲକ୍ଷଣ ଦେଖାଯାଉନାହିଁ। ଏଠାରେ ଉଲ୍ଲେଖଯୋଗ୍ୟ ଯେ ଏ ଭିତରେ ଆଉ ଗୋଟିଏ ନୂଆ ବିବାଦ ଆଲୋଚନାକୁ ଆସିଛି, ସେଇଟି ହେଲା, ରସଗୋଲାର ଜନ୍ମସ୍ଥାନ କେଉଁଠି, ଓଡ଼ିଶା ନା ବଙ୍ଗଳା?

ବୁଦ୍ଧଦେବ ଓ ଜୟଦେବଙ୍କ ପରେ ଆଉ କିଛି ମହାପୁରୁଷ ମଧ୍ୟ ଓଡ଼ିଶାରେ ଜନ୍ମିତ ବୋଲି ଦାବୀ ହେଲାଣି। ଓଡ଼ିଆ ଖବରକାଗଜର କେତେକ ଶିରୋନାମାରୁ ଏହା ଜଣା ପଡ଼ିବ, ଯଥା : ଦାବି, କାଳିଦାସ ଓଡ଼ିଶାର(ଧରିତ୍ରୀ ୪.୧.୨୦୦୭), କାଳିଦାସ ଓଡ଼ିଶାର ବୋଲି ପ୍ରମାଣିତ କରିବାକୁ ହେବ(ସଂଚାର ୧.୭.୨୦୧୩), କାଳିଦାସ ଉତ୍କଳୀୟ ପ୍ରାନ୍ତର କବି(ସମ୍ବାଦ ୨୯.୬.୨୦୧୩), ତୁଳସୀ କଣ ଓଡ଼ିଆ ଥିଲେ?(ଧରିତ୍ରୀ ୧୯.୬.୨୦୧୩), ତୁଳସୀ ଦାସଙ୍କ ଜନ୍ମସ୍ଥାନ ବାଲେଶ୍ୱରର ସୋର(ଧରିତ୍ରୀ ୨୪.୭.୨୦୧୩)।

ସମ୍ବାଦପତ୍ର ବିବରଣୀରୁ ଜଣାଯାଏ ଯେ କାଳିଦାସଙ୍କୁ ଓଡ଼ିଆ ବୋଲି ପ୍ରମାଣିତ କରିବା ପାଇଁ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର କୁଳପତି ଗୋଟିଏ ଚେୟାର ପ୍ରତିଷ୍ଠା କରିବାର ପ୍ରସ୍ତାବ ଦେଇଥିଲେ। ଓଡ଼ିଶା ବିଧାନସଭା ବାଚସ୍ପତିଙ୍କ ପୃଷ୍ଠପୋଷକତାରେ ଏକ 'ଓଡ଼ିଶାରେ କାଳିଦାସ କମିଟି' ଗଠନ କରାଯାଇଥିଲା ଏବଂ ଏ କମିଟି ତଥ୍ୟ ସଂଗ୍ରହ କରିବା ପାଇଁ ରାମଟେକ, ରେୱା, ଉଜ୍ଜୟିନୀ, ଚିତ୍ରକୂଟ ଇତ୍ୟାଦି ସ୍ଥାନକୁ ଗସ୍ତ କରିବେ ବୋଲି ସ୍ଥିର ହୋଇଥିଲା। ଉଦ୍ୟୋକ୍ତାମାନେ ସେମାନଙ୍କର ଗବେଷଣା ଓ ଲକ୍ଷ୍ୟରେ କେତେଦୂର ସଫଳ ହେଲେଣି ସେ ବିଷୟରେ କୌଣସି ଖବର ନାହିଁ।

କୌଣସି ବିରାଟ ବ୍ୟକ୍ତି, ଯଥା ସୁଭାଷ ବୋଷ, ଓଡ଼ିଶାରେ ଜନ୍ମ ନେଇଥିଲେ ତାଙ୍କୁ ଯେପରି ଓଡ଼ିଶାର ଗୌରବ ବୋଲି ମନେ କରାଯାଇଥାଏ, ସେହିଭଳି କେହି ମହାପୁରୁଷ ଓଡ଼ିଶାକୁ ଆସିଥିଲେ ଆମେ ନିଜକୁ ଗୌରବାନ୍ୱିତ ମନେ କରୁ। ଏ ତାଲିକାରେ ଅଛନ୍ତି ଶଙ୍କରାଚାର୍ଯ୍ୟ, ନାନକ ପ୍ରଭୃତି। ବର୍ତ୍ତମାନ ଏକଥା ମଧ୍ୟ କୁହାଗଲାଣି ଯେ ଯୀଶୁଖ୍ରୀଷ୍ଟ ଓ ମହମ୍ମଦ ମଧ୍ୟ ଓଡ଼ିଶା ଆସିଥିଲେ। ଯୀଶୁଙ୍କ ଜୀବନର ଯେଉଁ କେତେ ବର୍ଷ ଅଜଣା ସେଥିରୁ

କିଛି ସମୟ ସେ ଜଗନ୍ନାଥ ପୁରୀ ଆସି ଗୋବର୍ଦ୍ଧନ ମଠରେ ରହିଥିଲେ ବୋଲି ସୂଚନା ଦିଆଯାଉଛି। ଇଣ୍ଟରନେଟ ଖୋଜିଲେ ଯିଶୁଖ୍ରୀଷ୍ଟଙ୍କର ପୁରୀ ରହଣି ବିଷୟରେ ହଜାର ହଜାର ଲେଖା ମିଳିବ। ତାକୁ ନେଇ ଗର୍ବ କରିବାରେ ଆମର କୃପଣତା ରହିବ ନାହିଁ।

ଓଡ଼ିଶାର ଗୌରବ ଗାଥା ପାଇଁ ଯଦି ପ୍ରମାଣ ନାହିଁ, ସେଥିପାଇଁ ଜାଲ ଦଲିଲ ତିଆରି କରିବାର ଅନେକ ଉଦାହରଣ ରହିଛି। ଏଥିରୁ ଗୋଟିଏ ହେଲା ମାର୍ଚ୍ଚ ୧୮୫୬ରେ ରାଣୀ ଲକ୍ଷ୍ମୀବାଈ ତାଙ୍କର ପୁରୋହିତ ଚନ୍ଦନ ହଜୁରୀଙ୍କୁ ଲେଖିଥିବା ଚିଠି ଯାହା ମିଳିଥିଲା ପୁରୀର ପଣ୍ଡିତ ସଦାଶିବ ରଥ ଶର୍ମାଙ୍କ ପାଖରୁ। ଏ ଚିଠିଟିକୁ ଐତିହାସିକ ସୁରେନ୍ଦ୍ର ନାଥ ସେନ ନିଶ୍ଚିତ ଭାବେ ଏକ ନିତାନ୍ତ ଅପଟୁ ଜାଲ ବୋଲି କହିଛନ୍ତି, କାରଣ ଏଥିରେ ଥିବା ମୋହର ଭୁଲ,ଏଥିରେ ଇଂଲିଶ ତାରିଖ ବ୍ୟବହାର ହୋଇଛି, ରାଣୀ ନିଜକୁ ଆପ୍‌କା ଲକ୍ଷ୍ମୀବାଈ ବୋଲି ଦସ୍ତଖତ କରିଛନ୍ତି ଏବଂ ସର୍ବୋପରି ଏଥିରେ ଚର୍ବିଲଗା ଗୁଳି କଥା ଲେଖାଅଛି ଯାହା ଭାରତକୁ ଆସିଲା ନଭେମ୍ବର ୧୮୫୬ରେ।ଏହି ମିଥ୍ୟା ଦ୍ୱାରା ତାଖି ଖୁଣ୍ଟିଆ ବା ଚନ୍ଦନ ହଜୁରୀଙ୍କର ସିପାହୀ ବିଦ୍ରୋହରେ ଯେତିକି ଯୋଗଦାନ ଥିଲା ତା ମଧ୍ୟ ସନ୍ଦେହ ଘେରରେ ରହିଲା।

୧୯୪୭ରେ ପୁରୀର ଜଗନ୍ନାଥ ଗବେଷଣା ସମିତି 'ଶିଳ୍ପ ଚନ୍ଦ୍ରିକା' ନାମରେ ଗୋଟିଏ ପ୍ରାଚୀନ ଶିଳ୍ପଶାସ୍ତ୍ର ପ୍ରକାଶ କଲେ, ଯାହାର ସଂପାଦନା କରିଥିଲେ କୁଂଜବିହାରୀ ଦାଶ। ଏହି ବହିର ପାଠକୁ ପୋଥିରୁ ନକଲ କରିଥିଲେ ପଣ୍ଡିତ ରଥଶର୍ମା। ଏହି ବହିରେ ଥିଲା ଦ୍ୱାଦଶ ଶତାବ୍ଦୀରେ ପୁରୀ ମନ୍ଦିର ନିର୍ମାଣର ଧାରାବାହିକ ବିବରଣୀ, ପଥର ସଂଗ୍ରହରୁ ଆରମ୍ଭ କରି ମୁଣ୍ଡିରେ ଚକ୍ର ସ୍ଥାପନା ପର୍ଯ୍ୟନ୍ତ। ଏଥିରେ ଥିବା ତଥ୍ୟମାନ ଭ୍ରମାତ୍ମକ ଓ ଅବିଶ୍ୱସନୀୟ ଥିବାରୁ ପରବର୍ତ୍ତୀ ସମୟରେ କୁଂଜବିହାରୀ ଏହି ବହିଟିକୁ ଏକ ନକଲି ଲେଖା ବୋଲି କହିଥିଲେ।

୧୯୫୩ରେ ଏହି ଗବେଷଣା ସମିତି ପଣ୍ଡିତ ରଥଶର୍ମାଙ୍କ ସଂପାଦନାରେ 'ପାଇକ ଖେଦା' ନାମକ ଏକ ପୁରୁଣା ପୋଥି ଛପାଇଥିଲେ। ଏ ବହିରେ ଓଡ଼ିଶାର ଯୁଦ୍ଧ ବିଦ୍ୟା ବିଷୟରେ ବର୍ଣ୍ଣନା ଥିଲା, କିନ୍ତୁ ଏଥିରେ ଆଧୁନିକ ସମୟର ପୋତ, ପତାକା, ଔଷଧି ଇତ୍ୟାଦିର ଉଲ୍ଲେଖ ଯୋଗୁ ଏହା ମଧ୍ୟ ଏକ ନକଲି ଲେଖା ବୋଲି ବିବେଚିତ ହୋଇଥିଲା।

ପଣ୍ଡିତ ରଥଶର୍ମାଙ୍କ ଦ୍ୱାରା ସଂଗୃହୀତ 'ଅଭିନୟ ଚନ୍ଦ୍ରିକା' ପ୍ରକାଶିତ ହେଲା ୧୯୬୭ରେ। ଏହି ବହି ବିଷୟରେ ଓଡ଼ିଶୀ ନୃତ୍ୟ ବିଶେଷଜ୍ଞ ଧୀରେନ୍ଦ୍ରନାଥ ପଟ୍ଟନାୟକ ମତ ଦେଲେ ଯେ ଏଥିରେ ଅନେକ ନକଲି ପଦ ଅଛି ଏବଂ ଏହାକୁ ଅଭିନୟ ଚନ୍ଦ୍ରିକାର ଅସଲି ପାଠ ବୋଲି ଧରା ଯିବ ନାହିଁ।

ପଣ୍ଡିତ ରଥଶର୍ମାଙ୍କ ସହ-ସଂପାଦନାରେ ପ୍ରକାଶିତ ଆଉ ଦୁଇଟି ବହି 'ଶିଳ୍ପ ପ୍ରକାଶ'(୧୯୬୬) ଏବଂ 'କୋଣାର୍କ'(୧୯୭୨)ର ବିଶୁଦ୍ଧତା ଉପରେ ମଧ୍ୟ ଅନୁରୂପ ପ୍ରଶ୍ନ କରାଯାଇଛି। କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଓ କରୁଣା ସାଗର ବେହେରାଙ୍କ ମତରେ ଏହି

କୋଣାର୍କ ବହି ଉପରେ ଆସ୍ଥା କରାଯାଇ ନପାରେ କାରଣ ସପ୍ତଦଶ ଶତାବ୍ଦୀରେ ଲେଖାଯାଇଥିବା ଓ ୧୮୮୯ରେ ନକଲ କରା ହୋଇଛି ବୋଲି କୁହାଯାଉଥିବା ପୋଥିରେ କୋଣାର୍କ ମନ୍ଦିରର ଏପରି ବର୍ଣ୍ଣନା ଅଛି ଯାହା ୧୯୦୩ ଓ ୧୯୩୧ର ମରାମତି ପରର ସ୍ଥିତି।

ପଣ୍ଡିତ ରଥଶର୍ମାଙ୍କ ପାଖରୁ ଏହି ଭଳି ଆଉ ଗୋଟିଏ ଜାଲ ପୋଥି 'ମାଧବ ମାହାତ୍ମ୍ୟ' ପାଇ ଗୋପୀନାଥ ମହାନ୍ତି ପଞ୍ଚଦଶ ଶତାବ୍ଦୀର କବି ସାରଳା ଦାସଙ୍କୁ ଦଶମ ଶତାବ୍ଦୀର ବୋଲି ଉପସ୍ଥାପିତ କରିଥିଲେ ବୋଲି କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଲେଖିଛନ୍ତି।

ଉପରଲିଖିତ ଉଦାହାରଣମାନଙ୍କରୁ ଜଣାଯିବ ଯେ ଏହି ନକଲି ପୋଥି ଓ ତାର କାରିଗରମାନଙ୍କର ସବୁଠାରୁ ବଡ଼ ସମାଲୋଚକ ଥିଲେ ପାଣିଗ୍ରାହୀ। ସେ ତାଙ୍କର 'ମୋ ସମୟର ଓଡ଼ିଶା' ବହିରେ ଏ ଭଳି ପୋଥିମାନଙ୍କ ବିଷୟରେ ବିସ୍ତାରରେ ଆଲୋଚନା କରିଛନ୍ତି ଏବଂ ଲେଖିଛନ୍ତି କିପରି ନୂଆ ତାଳପତ୍ର ଲେଖାକୁ ଗୋବର ଗଦାରେ ପୋତି, ଚୁଲି ମୁଣ୍ଡରେ ଟାଙ୍ଗି, କଞ୍ଚା ନଡ଼ିଆ ଚୋପା ଓ ଆମ୍ବଛାଲିରେ ବୁଡ଼ାଇ ତାକୁ ପୁରୁଣା ରୂପ ଦିଆ ଯାଉଥିଲା। ତାଙ୍କ ମତରେ, 'ଜାଲ ଐତିହାସିକ ଉପାଦାନ ଦିନକୁ ଦିନ ଏପରି ବୃଦ୍ଧି ପାଉଛି ଯେ ତଦ୍ୱାରା ଐତିହାସିକ ଗବେଷଣାର ପଥ ଏକାବେଳେକେ ଅବରୁଦ୍ଧ ହୋଇଯିବାର ଆଶଂକା ରହିଛି।'

ଏ ସବୁରୁ ଆମର ଧାରଣା ହେବ ଯେ ପୁରୀ ଥିଲା ଜାଲ କାଗଜ ଓ ପୋଥିର ପେଣ୍ଠସ୍ଥଳି ଏବଂ ପଣ୍ଡିତ ରଥଶର୍ମାଙ୍କ ପାଖରେ କୌଣସି ପ୍ରକାରେ ଏ ସାମଗ୍ରୀମାନ ଆସି ପହଞ୍ଚୁଥିଲା। ଏ ବିଷୟରେ ମୋର ନିଜର ମଧ୍ୟ କିଛି ବ୍ୟକ୍ତିଗତ ଅଭିଜ୍ଞତା ଅଛି। ୧୯୭୦ ବେଳକୁ ମୁଁ ଓଡ଼ିଶାର ଚିତ୍ରକଳା ଉପରେ କିଛି ଗବେଷଣା କରିବାକୁ ଚାହୁଁଥିଲି ଏବଂ ପଣ୍ଡିତ ରଥଶର୍ମା ଏଥିରେ ସହାୟକ ହେବେ ବୋଲି ମୋର ସହପାଠୀ ଓ ଓଡ଼ିଶା ସଂସ୍କୃତି ବିଭାଗର ଅଫିସର ଅର୍ଜୁନ ଯୋଶୀଙ୍କୁ ନେଇ ପୁରୀ ଯାଇ ତାଙ୍କୁ ଭେଟିଥିଲି। ତାଙ୍କ ପାଖରେ ଓଡ଼ିଶାର ଚିତ୍ରକଳା ସଂପର୍କରେ ଗୋଟିଏ ପୋଥି ଅଛି ଓ ତାର ନକଲ କରାଇ ସେ ତାକୁ ଯୋଶୀଙ୍କ ହାତରେ ମୋ ପାଖକୁ ପଠାଇଦେବେ ବୋଲି କହିଥିଲେ। ଏ କାମଟି କିନ୍ତୁ ହୋଇ ନ ଥିଲା।

୧୯୭୯ରେ ହୋମି ଭାବା ଫେଲୋଶିପ ପାଇ ମୁଁ ପୁରୀକୁ ଗଲି ପଟଚିତ୍ର ସମ୍ବନ୍ଧରେ ଗବେଷଣା କରିବା ପାଇଁ ଏବଂ ପଣ୍ଡିତ ରଥଶର୍ମାଙ୍କ ସହିତ ପୁଣି ଯୋଗାଯୋଗ ହେଲା। ସେତେବେଳେ ଆମେରିକା ବର୍କଲେର ପ୍ରଫେସର ଜୋଆନା ଉଇଲିଆମ୍ସ୍ ମଧ୍ୟ ତାଙ୍କ ଗବେଷଣା କାମରେ ପୁରୀକୁ ଆସୁଥିଲେ। ପଣ୍ଡିତ ରଥଶର୍ମା ମତେ, ଓ ପରେ ଜୋଆନାଙ୍କୁ, 'ପଟ୍ଟଚିତ୍ର ନିର୍ଣ୍ଣୟମ' ନାମକ ଗୋଟିଏ ପୋଥିର ୪/୫ ପୃଷ୍ଠା ଦେଖାଇଲେ ଏବଂ କହିଲେ ଯେ ଗଂଜାମ ଶିକୁଳା ଗାଁରୁ ସେ ଏଗୁଡ଼ିକ ସଂଗ୍ରହ କରିଛନ୍ତି ଏବଂ ଆଉ ଥରେ ସେଠାକୁ ଯାଇ ବାକି ପୃଷ୍ଠା ସବୁ ସଂଗ୍ରହ କରିବେ। ପରେ ସେ ଆଉ କିଛି ପୃଷ୍ଠା ଆଣି ସେ ତାକୁ ଫଟୋ ଉଠାଇବାକୁ ଦେଲେ ଏବଂ ଆଗ୍ରହ ପ୍ରକାଶ କଲେ ଯେ ମୁଁ ମୋର ବହିରେ 'ପଟ୍ଟଚିତ୍ର

କିଛି ସମୟ ସେ ଜଗନ୍ନାଥ ପୁରୀ ଆସି ଗୋବର୍ଦ୍ଧନ ମଠରେ ରହିଥିଲେ ବୋଲି ସୂଚନା ଦିଆଯାଉଛି। ଇଣ୍ଟରନେଟ ଖୋଜିଲେ ଯିଶୁଖ୍ରୀଷ୍ଟଙ୍କର ପୁରୀ ରହଣି ବିଷୟରେ ହଜାର ହଜାର ଲେଖା ମିଳିବ। ତାକୁ ନେଇ ଗର୍ବ କରିବାରେ ଆମର କୃପଣତା ରହିବ ନାହିଁ।

ଓଡ଼ିଶାର ଗୌରବ ଗାଥା ପାଇଁ ଯଦି ପ୍ରମାଣ ନାହିଁ, ସେଥିପାଇଁ ଜାଲ ଦଲିଲ ତିଆରି କରିବାର ଅନେକ ଉଦାହରଣ ରହିଛି। ଏଥିରୁ ଗୋଟିଏ ହେଲା ମାର୍ଚ୍ଚ ୧୮୫୬ରେ ରାଣୀ ଲକ୍ଷ୍ମୀବାଇ ତାଙ୍କର ପୁରୋହିତ ଚନ୍ଦନ ହଜୁରୀଙ୍କୁ ଲେଖିଥିବା ଚିଠି ଯାହା ମିଳିଥିଲା ପୁରୀର ପଣ୍ଡିତ ସଦାଶିବ ରଥ ଶର୍ମାଙ୍କ ପାଖରୁ। ଏ ଚିଠିଟିକୁ ଐତିହାସିକ ସୁରେନ୍ଦ୍ର ନାଥ ସେନ ନିଶ୍ଚିତ ଭାବେ ଏକ ନିତାନ୍ତ ଅପଟୁ ଜାଲ ବୋଲି କହିଛନ୍ତି, କାରଣ ଏଥିରେ ଥିବା ମୋହର ଭୁଲ,ଏଥିରେ ଇଂଲିଶ ତାରିଖ ବ୍ୟବହାର ହୋଇଛି, ରାଣୀ ନିଜକୁ ଆପ୍‌କା ଲକ୍ଷ୍ମୀବାଇ ବୋଲି ଦସ୍ତଖତ କରିଛନ୍ତି ଏବଂ ସର୍ବୋପରି ଏଥିରେ ଚର୍ବିଲଗା ଗୁଳି କଥା ଲେଖାଅଛି ଯାହା ଭାରତକୁ ଆସିଲା ନଭେମ୍ବର ୧୮୫୬ରେ। ଏହି ମିଥ୍ୟା ଦ୍ୱାରା ଚାଖି ଖୁଣ୍ଟିଆ ବା ଚନ୍ଦନ ହଜୁରୀଙ୍କର ସିପାହୀ ବିଦ୍ରୋହରେ ଯେତିକି ଯୋଗଦାନ ଥିଲା ତା ମଧ୍ୟ ସନ୍ଦେହ ଘେରରେ ରହିଲା।

୧୯୪୭ରେ ପୁରୀର ଜଗନ୍ନାଥ ଗବେଷଣା ସମିତି 'ଶିଳ୍ପ ଚନ୍ଦ୍ରିକା' ନାମରେ ଗୋଟିଏ ପ୍ରାଚୀନ ଶିଳ୍ପଶାସ୍ତ୍ର ପ୍ରକାଶ କଲେ, ଯାହାର ସଂପାଦନା କରିଥିଲେ କୁଂଜବିହାରୀ ଦାଶ। ଏହି ବହିର ପାଠକୁ ପୋଥିରୁ ନକଲ କରିଥିଲେ ପଣ୍ଡିତ ରଥଶର୍ମା। ଏହି ବହିରେ ଥିଲା ଦ୍ୱାଦଶ ଶତାବ୍ଦୀରେ ପୁରୀ ମନ୍ଦିର ନିର୍ମାଣର ଧାରାବାହିକ ବିବରଣୀ, ପଥର ସଂଗ୍ରହରୁ ଆରମ୍ଭ କରି ମୁଣ୍ଡିରେ ଚକ୍ର ସ୍ଥାପନା ପର୍ଯ୍ୟନ୍ତ। ଏଥିରେ ଥିବା ତଥ୍ୟମାନ ଭ୍ରମାତ୍ମକ ଓ ଅବିଶ୍ୱସନୀୟ ଥିବାରୁ ପରବର୍ତ୍ତୀ ସମୟରେ କୁଂଜବିହାରୀ ଏହି ବହିଟିକୁ ଏକ ନକଲି ଲେଖା ବୋଲି କହିଥିଲେ।

୧୯୫୩ରେ ଏହି ଗବେଷଣା ସମିତି ପଣ୍ଡିତ ରଥଶର୍ମାଙ୍କ ସଂପାଦନାରେ 'ପାଇକ ଖେଦା' ନାମକ ଏକ ପୁରୁଣା ପୋଥି ଛପାଇଥିଲେ। ଏ ବହିରେ ଓଡ଼ିଶାର ଯୁଦ୍ଧ ବିଦ୍ୟା ବିଷୟରେ ବର୍ଣ୍ଣନା ଥିଲା, କିନ୍ତୁ ଏଥିରେ ଆଧୁନିକ ସମୟର ପୋତ, ପତାକା, ଔଷଧି ଇତ୍ୟାଦିର ଉଲ୍ଲେଖ ଯୋଗୁ ଏହା ମଧ୍ୟ ଏକ ନକଲି ଲେଖା ବୋଲି ବିବେଚିତ ହୋଇଥିଲା।

ପଣ୍ଡିତ ରଥଶର୍ମାଙ୍କ ଦ୍ୱାରା ସଂଗୃହୀତ 'ଅଭିନୟ ଚନ୍ଦ୍ରିକା' ପ୍ରକାଶିତ ହେଲା ୧୯୬୭ରେ। ଏହି ବହି ବିଷୟରେ ଓଡ଼ିଶୀ ନୃତ୍ୟ ବିଶେଷଜ୍ଞ ଧୀରେନ୍ଦ୍ରନାଥ ପଟ୍ଟନାୟକ ମତ ଦେଲେ ଯେ ଏଥିରେ ଅନେକ ନକଲି ପଦ ଅଛି ଏବଂ ଏହାକୁ ଅଭିନୟ ଚନ୍ଦ୍ରିକାର ଅସଲି ପାଠ ବୋଲି ଧରା ଯିବ ନାହିଁ।

ପଣ୍ଡିତ ରଥଶର୍ମାଙ୍କ ସହ-ସଂପାଦନାରେ ପ୍ରକାଶିତ ଆଉ ଦୁଇଟି ବହି 'ଶିଳ୍ପ ପ୍ରକାଶ'(୧୯୬୬) ଏବଂ 'କୋଣାର୍କ'(୧୯୭୨)ର ବିଶୁଦ୍ଧତା ଉପରେ ମଧ୍ୟ ଅନୁରୂପ ପ୍ରଶ୍ନ କରାଯାଇଛି। କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଓ କରୁଣା ସାଗର ବେହେରାଙ୍କ ମତରେ ଏହି

କୋଣାର୍କ ବହି ଉପରେ ଆସ୍ଥା କରାଯାଇ ନପାରେ କାରଣ ସପ୍ତଦଶ ଶତାବ୍ଦୀରେ ଲେଖାଯାଇଥିବା ଓ ୧୮୮୯ରେ ନକଲ କରା ହୋଇଛି ବୋଲି କୁହାଯାଉଥିବା ପୋଥିରେ କୋଣାର୍କ ମନ୍ଦିରର ଏପରି ବର୍ଣ୍ଣନା ଅଛି ଯାହା ୧୯୦୩ ଓ ୧୯୩୧ର ମରାମତି ପରର ସ୍ଥିତି।

ପଣ୍ଡିତ ରଥଶର୍ମାଙ୍କ ପାଖରୁ ଏହି ଭଳି ଆଉ ଗୋଟିଏ ଜାଲ ପୋଥି 'ମାଧବ ମାହାତ୍ମ୍ୟ' ପାଇ ଗୋପୀନାଥ ମହାନ୍ତି ପଞ୍ଚଦଶ ଶତାବ୍ଦୀର କବି ସାରଳା ଦାସଙ୍କୁ ଦଶମ ଶତାବ୍ଦୀର ବୋଲି ଉପସ୍ଥାପିତ କରିଥିଲେ ବୋଲି କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଲେଖିଛନ୍ତି।

ଉପରଲିଖିତ ଉଦାହାରଣମାନଙ୍କରୁ ଜଣାଯିବ ଯେ ଏହି ନକଲି ପୋଥି ଓ ତାର କାରିଗରମାନଙ୍କର ସବୁଠାରୁ ବଡ଼ ସମାଲୋଚକ ଥିଲେ ପାଣିଗ୍ରାହୀ। ସେ ତାଙ୍କର 'ମୋ ସମୟର ଓଡ଼ିଶା' ବହିରେ ଏ ଭଳି ପୋଥିମାନଙ୍କ ବିଷୟରେ ବିସ୍ତାରରେ ଆଲୋଚନା କରିଛନ୍ତି ଏବଂ ଲେଖିଛନ୍ତି କିପରି ନୂଆ ତାଳପତ୍ର ଲେଖାକୁ ଗୋବର ଗଦାରେ ପୋତି, ଚୁଲି ମୁଣ୍ଡରେ ଟାଙ୍ଗି, କଞ୍ଚା ନଡ଼ିଆ ଚୋପା ଓ ଆମ୍ବଛାଲିରେ ବୁଡ଼ାଇ ତାକୁ ପୁରୁଣା ରୂପ ଦିଆ ଯାଉଥିଲା। ତାଙ୍କ ମତରେ, 'ଜାଲ ଐତିହାସିକ ଉପାଦାନ ଦିନକୁ ଦିନ ଏପରି ବୃଦ୍ଧି ପାଉଛି ଯେ ତଦ୍ୱାରା ଐତିହାସିକ ଗବେଷଣାର ପଥ ଏକାବେଳେକେ ଅବରୁଦ୍ଧ ହୋଇଯିବାର ଆଶଂକା ରହିଛି।'

ଏ ସବୁରୁ ଆମର ଧାରଣା ହେବ ଯେ ପୁରୀ ଥିଲା ଜାଲ କାଗଜ ଓ ପୋଥିର ପେଣ୍ଠସ୍ଥଳି ଏବଂ ପଣ୍ଡିତ ରଥଶର୍ମାଙ୍କ ପାଖରେ କୌଣସି ପ୍ରକାରେ ଏ ସାମଗ୍ରୀମାନ ଆସି ପହଞ୍ଚୁଥିଲା। ଏ ବିଷୟରେ ମୋର ନିଜର ମଧ କିଛି ବ୍ୟକ୍ତିଗତ ଅଭିଜ୍ଞତା ଅଛି। ୧୯୭୦ ବେଳକୁ ମୁଁ ଓଡ଼ିଶାର ଚିତ୍ରକଳା ଉପରେ କିଛି ଗବେଷଣା କରିବାକୁ ଚାହୁଁଥିଲି ଏବଂ ପଣ୍ଡିତ ରଥଶର୍ମା ଏଥିରେ ସହାୟକ ହେବେ ବୋଲି ମୋର ସହପାଠୀ ଓ ଓଡ଼ିଶା ସଂସ୍କୃତି ବିଭାଗର ଅଫିସର ଅର୍ଜୁନ ଯୋଶୀଙ୍କୁ ନେଇ ପୁରୀ ଯାଇ ତାଙ୍କୁ ଭେଟିଥିଲି। ତାଙ୍କ ପାଖରେ ଓଡ଼ିଶାର ଚିତ୍ରକଳା ସଂପର୍କରେ ଗୋଟିଏ ପୋଥି ଅଛି ଓ ତାର ନକଲ କରାଇ ସେ ତାକୁ ଯୋଶୀଙ୍କ ହାତରେ ମୋ ପାଖକୁ ପଠାଇଦେବେ ବୋଲି କହିଥିଲେ। ଏ କାମଟି କିନ୍ତୁ ହୋଇ ନ ଥିଲା।

୧୯୭୯ରେ ହୋମି ଭାବା ଫେଲୋଶିପ ପାଇ ମୁଁ ପୁରୀକୁ ଗଲି ପଟଚିତ୍ର ସମ୍ବନ୍ଧରେ ଗବେଷଣା କରିବା ପାଇଁ ଏବଂ ପଣ୍ଡିତ ରଥଶର୍ମାଙ୍କ ସହିତ ପୁଣି ଯୋଗାଯୋଗ ହେଲା। ସେତେବେଳେ ଆମେରିକା ବର୍କଲେର ପ୍ରଫେସର ଜୋଆନ୍ନା ଉଇଲିଆମ୍‌ସ୍ ମଧ ତାଙ୍କ ଗବେଷଣା କାମରେ ପୁରୀକୁ ଆସୁଥିଲେ। ପଣ୍ଡିତ ରଥଶର୍ମା ମତେ, ଓ ପରେ ଜୋଆନ୍ନାଙ୍କୁ, 'ପଟଚିତ୍ର ନିର୍ଣ୍ଣୟମ' ନାମକ ଗୋଟିଏ ପୋଥିର ୪/୫ ପୃଷ୍ଠା ଦେଖାଇଲେ ଏବଂ କହିଲେ ଯେ ଗଂଜାମ ଶିକୁଳା ଗାଁରୁ ସେ ଏଗୁଡ଼ିକ ସଂଗ୍ରହ କରିଛନ୍ତି ଏବଂ ଆଉ ଥରେ ସେଠାକୁ ଯାଇ ବାକି ପୃଷ୍ଠା ସବୁ ସଂଗ୍ରହ କରିବେ। ପରେ ସେ ଆଉ କିଛି ପୃଷ୍ଠା ଆଣି ସେ ତାକୁ ଫଟୋ ଉଠାଇବାକୁ ଦେଲେ ଏବଂ ଆଗ୍ରହ ପ୍ରକାଶ କଲେ ଯେ ମୁଁ ମୋର ବହିରେ 'ପଟଚିତ୍ର

ନିର୍ଣ୍ଣୟମ୍'କୁ ଏକ ସ୍ୱତନ୍ତ୍ର ପରିଶିଷ୍ଟରେ ସ୍ଥାନ ଦେବି। ଜୋଆନ୍ନା ଓ ମୁଁ କିନ୍ତୁ ପୋଥିଟି ଅସଲି ହୋଇଥିବା ବିଷୟରେ ସନ୍ଦିହାନ ଥିଲୁ। ଶେଷରେ ମୋର ପଟଚିତ୍ର ବହି ବାହାରିବା ବେଳେ ମୁଁ ପୋଥିଟି ବିଷୟରେ ଗୋଟିଏ ପାଦଟୀକା ଦେଇ ଲେଖିଥିଲି : ପୁରୀରେ ବ୍ୟକ୍ତିଗତ ସଂଗ୍ରହରେ ଥିବା ପଟ୍ଟଚିତ୍ର ନିର୍ଣ୍ଣୟମ ପୋଥି ଅସଲି ହୋଇଥିବା ସନ୍ଦେହଜନକ।

ଜାଲ ପ୍ରମାଣ ଦ୍ୱାରା ମିଛ ଇତିହାସ ତିଆରି କରିବାର ଅନେକ ଉଦ୍ଦେଶ୍ୟ ଥାଏ, ଯଥା: ନିଜକୁ ବା ନିଜର ଦେଶକୁ ବଡ଼ ବୋଲି ଦେଖାଇବା, ନିଜର ଦୋଷକୁ ଘୋଡ଼ାଇବା ଓ ଅନ୍ୟକୁ ଦୋଷୀ ସାବ୍ୟସ୍ତ କରିବା, ସମସ୍ୟାକୁ ସମାଧାନ କରିବା ଓ କିମ୍ବଦନ୍ତୀକୁ ସତ୍ୟରେ ବଦଳାଇବା। ଏ ଭଳି ଅବୈଧ ଇତିହାସର ତଥ୍ୟ ବେଶି ଦିନ ତିଷ୍ଠେ ନାହିଁ। ଶେଷରେ ଏହି ଜାଲିଆତି ଧରାପଡ଼େ, ସତ୍ୟ ପଦାକୁ ଆସେ, ଏବଂ 'ଜନେ ହସିବେ ଏହି ତହୁଁ ଫଳ'। ବୁଦ୍ଧଦେବଙ୍କୁ ଓଡ଼ିଆ ବୋଲି ଦାବି କରିବାରେ ଆନ୍ତର୍ଜାତିକ ସ୍ତରରେ ଏହା ହିଁ ହୋଇଛି।

ପୁଣି ସେହି ବିଶିଷ୍ଟ ଐତିହାସିକ ପାଣିଗ୍ରାହୀଙ୍କୁ ଉଦ୍ଧାର କରାଯାଉ। ଇତିହାସକାର ଓ ଗବେଷକମାନଙ୍କ ପାଇଁ ସେ କିଛି ମୌଳିକ ନିୟମ ପ୍ରଣୟନ କରିଛନ୍ତି। ପ୍ରଥମରେ, ପ୍ରତ୍ୟେକ ଐତିହାସିକ ଆଲୋଚନା ଉପାଦାନ ଉପରେ ପ୍ରତିଷ୍ଠିତ ହେବ। ଦ୍ୱିତୀୟ, ଉପାଦାନଗୁଡ଼ିକ ପ୍ରାଚୀନ କି ଅର୍ବାଚୀନ, ଭଲ କି ଭେଲ ଭଲ ରୂପେ ବିଚାର କରିବାକୁ ହେବ। ତୃତୀୟ, ଯେଉଁ ବିଷୟ କୌଣସି ଉପାଦାନରେ ନାହିଁ ତାହା ଅଛି ବୋଲି କୁହାଯାଇପାରିବ ନାହିଁ। ଚତୁର୍ଥ, ଅମୁକ ପଣ୍ଡିତ ଏହା ଲେଖି ଯାଇଛନ୍ତି, ଅତଏବ ଏହା ସତ୍ୟ, ଏ କଥାର ମୂଲ୍ୟ ନାହିଁ। (ଇତିହାସ ଓ କିମ୍ବଦନ୍ତୀ) ଏ ସବୁ ବ୍ୟତୀତ ପଣ୍ଡିତ ନୀଳକଣ୍ଠ ଦାସଙ୍କର ଏକ ସତର୍କବାଣୀ ମଧ୍ୟ ରହିଛି, 'କିନ୍ତୁ ମନେ ରଖିବାର ଅଛି, କେବଳ ଦେଶ ପ୍ରୀତିରେ ଗବେଷଣା ବିଗିଡ଼ି ଯାଏ'।(ଓଡ଼ିଆ ସାହିତ୍ୟର କ୍ରମ ପରିଣାମ)

ଏହା ହିଁ ଆମର ଆଦର୍ଶ ଓ ଦିଗ୍‌ଦର୍ଶନ ହେଉ। ସତ ଇତିହାସରେ ଆମେ ଗର୍ବ କରିବାର ଅନେକ କିଛି ଅଛି, ତେଣୁ ମିଛ ଇତିହାସ ତିଆରି କରି ଆମର ଲୋକହସା ହେବାର କୌଣସି ଆବଶ୍ୟକତା ନାହିଁ।

*ଏପ୍ରିଲ୍, ୨୦୧୫*

*ଏହି ପ୍ରବନ୍ଧର ପ୍ରଥମ ଭାଗ 'ସମ୍ବାଦ' କାଗଜର ୩୧ ମେ ୨୦୧୫ ସଂଖ୍ୟାରେ ନିମ୍ନଲିଖିତ ଟିପ୍‌ପଣୀ ସହିତ ପ୍ରକାଶ ପାଇଥିଲା : 'ଏଥିରେ ପ୍ରକାଶିତ ମତାମତ ଓ ମନ୍ତବ୍ୟ ଲେଖକଙ୍କର ନିଜସ୍ୱ'।*

# ଭୁରୁକୁଞ୍ଚା ପଣ୍ଡିତଙ୍କ ଦଳ

ଏଠିକାର ଭୁରୁକୁଞ୍ଚା ପଣ୍ଡିତଙ୍କ ଦଳ
ପାଣିରୁ କାଢ଼ନ୍ତି ସର, କ୍ଷୀରରୁ ଯେ ଜଳ
ଏ ଯେ ଅଧ୍ୟାପକ ଦଳ ବ୍ରହ୍ମା, ଦାସ, ମିଶ୍ର
ଗରଜନ୍ତି ଟୀକା କରି ସଭାରେ ଅଜସ୍ର।

ଉପର ଲିଖିତ ଚାରିଧାଡ଼ି ଗୋଟିଏ କବିତାର ଅଂଶ ମନେ ହୋଇପାରେ, କିନ୍ତୁ ଏହା ଦୁଇଟି କବିତାରୁ ଉଦ୍ଧୃତ। ପ୍ରଥମ ଦୁଇଧାଡ଼ି ଅଛି ସଚ୍ଚି ରାଉତରାୟଙ୍କର 'କବିର ମୃତ୍ୟୁ'ରେ ଏବଂ ପରବର୍ତ୍ତୀ ଦୁଇଧାଡ଼ି ଗୋଦାବରୀଶ ମହାପାତ୍ରଙ୍କର 'ଭଂଜ ବିଚାର' କବିତାରେ। ଏଥି ସହିତ ଯୋଡ଼ି ଦିଆଯାଇପାରେ ଇଂରେଜୀ କବି ୟେଟ୍‌ସ୍‌ଙ୍କର 'ଦ ସ୍କଲାର୍ସ' (ବିଦ୍ୱାନ ଦଳ) କବିତାର କେତେ ଧାଡ଼ି, ଯାହା ମୁକ୍ତ ଅନୁବାଦରେ ଏପରି ହେବ :

ନିଜ ନିଜ ପାପ ଭୁଲି ବୃଦ୍ଧ ଜ୍ଞାନୀ ମାନୀ
ଚନ୍ଦାମୁଣ୍ଡିଆଙ୍କ ଦଳ ଲେଖନ୍ତି ଟିପ୍‌ପଣୀ।

ଏ ସବୁ ହେଉଛି ସମୀକ୍ଷକ ଓ ସମାଲୋଚକଙ୍କ ପ୍ରତି ସୃଜନଶୀଳ ଲେଖକମାନଙ୍କରର ବିଷୋଦ୍‌ଗାର। ଜଣେ ଅଧ୍ୟାପକ ବଙ୍ଗଳା କବି ଜୀବନାନନ୍ଦ ଦାଶଙ୍କୁ ଆକ୍ରମଣ କରିବାରେ ସେ 'ସମାରୂଢ଼' କବିତା ଲେଖିଥିଲେ ଯେଉଁଥିରେ ନିମ୍ନଲିଖିତ ଧାଡ଼ିମାନ ଥିଲା :

ବୁଝିଲାମ ସେ ତୋ କବି ନୟ, ସେ ଯେ ଆରୂଢ଼ ଭଣିତା
ପାଣ୍ଡୁଲିପି, ଭାଷ୍ୟ, ଟୀକା, କାଳି ଆର କଲମେର 'ପର
ବସିଆଛେ ସିଂହାସନେ, କବି ନୟ, ଅଜର ଅକ୍ଷର
ଅଧ୍ୟାପକ – ଦାନ୍ତ ନେଇ – ଚୋଖେ ତାର ଅକ୍ଷମ ପିଁଚୁଟି।

ପଣ୍ଡିତ, ଅଧ୍ୟାପକ ଓ ବିଦ୍ୱାନ ଦଳଙ୍କ ପାଇଁ କବିମାନଙ୍କର ଆକ୍ରୋଶ କିଛି ନୂଆ କଥା ନୁହେଁ। ଆମର ପ୍ରାଚୀନ କବି ଦୀନକୃଷ୍ଣ ଦାସ କହିବା ଲୋକକୁ କବିତାର ସାବତ ମା ବୋଲି କହିଥିଲେ। ଇଂରେଜୀରେ କଥା ଅଛି ଯେ ଲେଖକକୁ ସମାଲୋଚକ ବିଷୟରେ ପଚାରିବା ଯାହା, ବତୀଖୁଣ୍ଟକୁ କୁକୁର ବିଷୟରେ ପଚାରିବା ସେଇଆ। କବି ବାଇରନ୍ ମଧ୍ୟ କହିଛନ୍ତି ଯେ ସମାଲୋଚକଙ୍କୁ ବିଶ୍ୱାସ କରିବା ଡିସେମ୍ବର ମାସରେ ଗୋଲାପ ଫୁଲ ବା ଜୁନ ମାସରେ ବରଫ ବା ସେଇଭଳି ଆଉ କିଛି ମିଛ ଜିନିଷ ଖୋଜିବା ସହିତ ସମାନ। ସାହିତ୍ୟ କ୍ଷେତ୍ରରେ ଲେଖକ–ସମାଲୋଚକ ସଂପର୍କର ଏକ ମର୍ମାନ୍ତିକ ବିବରଣୀ ନିମ୍ନମତେ:

ଇଂରେଜ କବି କୀଟ୍‌ସ୍‌ଙ୍କର ଏଣ୍ଡିମିଅନ୍ କବିତା ପ୍ରକାଶ ହେବା ପରେ ଏହାର ଏକ ଅତି କଟୁ ସାମକ୍ଷା ପ୍ରକାଶ ପାଇଥିଲା କ୍ୱାର୍ଟରଲି ରିଭିଉ ପତ୍ରିକାରେ। ଏହାର କିଛିଦିନ ପରେ କବି ଶେଲି ତାଙ୍କ ପାଇଁ ଆଡୋନେସ ଶୀର୍ଷକରେ ଏକ ଏଲିଜି ବା ଶୋକଗୀତି ଲେଖିଲେ। ଏହାର ମୁଖବନ୍ଧରେ ଶେଲି ଦାବୀ କଲେ (ଭ୍ରମାତ୍ମକ ଭାବେ) ଯେ କୀଟ୍‌ସ୍‌ଙ୍କର ମୃତ୍ୟୁ ହେଲା ତାଙ୍କ କବିତାର ଅନୁଚିତ କଠୋର ସମାଲୋଚନା ଫଳରେ ତାଙ୍କର କ୍ରୋଧ ହୋଇ ଫୁସ୍‌ଫୁସ୍ ବିଦୀର୍ଣ୍ଣ ହେବା ଯୋଗୁ। ସେ ଏହି ମୁଖବନ୍ଧରେ ସମୀକ୍ଷକମାନଙ୍କୁ ଅଧମ ଲୋକ ଓ ସାହିତ୍ୟିକ ବେଶ୍ୟା ଆଖ୍ୟା ଦେଇଥିଲେ ଏବଂ କୀଟ୍‌ସ୍‌ଙ୍କ ବହିର ସମାଲୋଚକଙ୍କୁ ହତ୍ୟାକାରୀ ବୋଲି କହିଥିଲେ।

ଲେଖକ-ସମାଲୋଚକର ଏ ଭଳି ସଂପର୍କ ଜନସାଧାରଣଙ୍କୁ ଆମୋଦର ଖୋରାକ ଯୋଗାଇପାରେ, କିନ୍ତୁ ଏହା ସାହିତ୍ୟ ପାଇଁ କଦାପି ହିତକର ନୁହେଁ। ସମାଲୋଚକ ଲେଖକ ଓ ପାଠକ ମଧ୍ୟରେସେତୁର କାମ କରେ ଓ ପାଠକକୁ ବହିଟି ପାଖରେ ପହଞ୍ଚିବାକୁ ପ୍ରବର୍ତ୍ତାଏ। ସେଥିପାଇଁ ସବୁ ଲେଖକ ଚାହାନ୍ତି ତାଙ୍କର ବହି ଆଲୋଚିତ ହେଉ। ଏବଂ ଚାହାନ୍ତି ଯେ ସମାଲୋଚକ ବହିଟ ବିଷୟରେ କେବଳ ଭଲ କଥା ଲେଖନ୍ତୁ।

ଏ କଥା ମଧ୍ୟ କୁହାଯାଇଥାଏ ଯେ ଆଦୌ ସମୀକ୍ଷା ନ ହେବା ଅପେକ୍ଷା ନକାରାତ୍ମକ ଆଲୋଚନା ବରଂ ଭଲ। ସମୀକ୍ଷା ନ ହେବାର ଅର୍ଥ ବହିଟି ଉପେକ୍ଷିତ ହେବା, ବିରୂପ ସମାଲୋଚନାର ଅର୍ଥ ବହିଟିର ଗୁରୁତ୍ୱ ଉପଲବ୍ଧି କରି ସମାଲୋଚକ ତାର ସମୀକ୍ଷା କରିଛନ୍ତି। ବିରୂପ ଆଲୋଚନା ଅନେକ ସମୟରେ ବହିଟିକୁ ଲୋକଲୋଚନକୁ ଆଣିଥାଏ। ମୁଁ ଭାବୁଛି ମୋର ୧୯୯୨ର ବହି 'ଦେଶ କାଳ ପାତ୍ର'ର ପ୍ରଥମେ ପ୍ରଥମେ ଯେଉଁ ଦୋଷଦର୍ଶୀ ସମାଲୋଚନାମାନ ପ୍ରକାଶ ପାଇଥିଲା ସେଥି ଯୋଗୁ ବହିଟି ପାଇଁ କିଛି ଅଧିକ ଆଗ୍ରହ ପ୍ରକାଶ ପାଇଥିଲା। ଏ ଭଳି ସ୍ଥିତିରେ ସମାଲୋଚନା ସବୁ କାଳକ୍ରମେ ପୁରୁଣା ପତ୍ରିକା ପୃଷ୍ଠାରେ ରହିଯାଏ ଏବା ନୂଆ ପାଠକମାନେ ଏ ସବୁର ସହାୟତା ବା ପ୍ରଭାବ ବିନା ବହିଟିକୁ ପଢ଼ନ୍ତି।

ଲେଖା ଭଲ ବା ଖରାପ, ପଢ଼ିବା ଆଗରୁ ପାଠକ ସେ କଥା ଜାଣିବାକୁ ଚାହେଁ। ସାରଳା ଠାକୁରାଣୀ କୁଆଡ଼େ ସାରଳା ଦାସଙ୍କୁ କହିଥିଲେ ଯେ ସେ ରାତିରେ ଯାହା ଲେଖିଥିବେ ସେ ସବୁ ତାଳପତ୍ରକୁ ନଈରେ ନେଇ ଭସାଇଦେବେ, ଯାହା ଖରାପ ଲେଖା, ତା ବୁଡ଼ିଯିବ ଓ ଭଲ ଲେଖାମାନ ଉପରେ ଭାସିବ। ଆମ ପାଖରେ କିନ୍ତୁ ଭଲ ଖରାପ ବାଛିବା ପାଇଁ ଏ ଭଳି ସହଜ ସୂତ୍ର ନାହିଁ। ଆମକୁ ତେଣୁ ଭୁରୁକୁଞ୍ଚା ଚନ୍ଦାମୁଣ୍ଡିଆ ପଣ୍ଡିତ ଅଧ୍ୟାପକଙ୍କ ଉପରେ ନିର୍ଭର କରିବାକୁ ପଡ଼େ।

ଗୋଟିଏ ଭଲ ସମୀକ୍ଷା ବହିଟିର ବିଷୟବସ୍ତୁକୁ ପାଠକ ପାଖରେ ଭଲଭାବରେ ବୁଝାଇବାରେ ସାହାଯ୍ୟ କରେ । ପାଠକ ବହିଟିରେ ଅନେକ ନୂଆ ଜିନିଷ ଦେଖେ ଯାହା ସେ ପଢ଼ିବା ବେଳେ ଲକ୍ଷ୍ୟ କରିପାରି ନ ଥିଲା। ଯଦି ସେ ଏହି ସଂପର୍କିତ ଆଉ କିଛି

ଜାଣିବାକୁ ଚାହେଁ, ଗୋଟିଏ ଭଲ ସମୀକ୍ଷା ତାକୁ ସେ ଦିଗରେ ସହାୟକ ହୁଏ। ସେଥିପାଇଁ ସମୀକ୍ଷାଟିକୁ ବହି ପଢ଼ିବା ପୂର୍ବରୁ ଓ ପଢ଼ିବା ପରେ ମଧ୍ୟ ବ୍ୟବହାର କରାଯାଇପାରେ ଓ ସେଥିରୁ ସୂଚନା ଓ ପରାମର୍ଶ ନେଇ ହୁଏ।

ଆମ ଭାଷାରେ ସାହିତ୍ୟ ଓ ପୁସ୍ତକ ଆଲୋଚନାର ପରମ୍ପରା ବେଶ ପୁରୁଣା। ଓଡ଼ିଆରେ ଛପାବହିର ଚଳଣି ଆରମ୍ଭ ହେବା ପରେ ପରେ ପତ୍ରପତ୍ରିକାରେ ସମୀକ୍ଷା ଓ ସମାଲୋଚନା ମଧ୍ୟ ଆରମ୍ଭ ହେଲା। ଉଦାହରଣ ସ୍ୱରୂପ, ଉତ୍କଳ ଦୀପିକାରେ ପ୍ରକାଶିତ(୧୧ ଡିସେମ୍ବର ୧୮୮୦) ଏକ ଆଲୋଚନାକୁ ନିଆଯାଉ। ବହିଟି ଥିଲା ମଧୁସୂଦନ ରାଓଙ୍କର ପ୍ରବନ୍ଧମାଳା ଏବଂ ଏହାର ଏକ ଦୀର୍ଘ ଆଲୋଚନାରେ ଏ ଭଳି କଥାମାନ କୁହାଯାଇଥିଲା :

ଏହାର ଭାଷା ସଂପୂର୍ଣ୍ଣ ଓଡ଼ିଆ ନୁହଇ। ଏଥିରେ ବଙ୍ଗ ଭାଷାର ରୀତି ଅନେକ ରହିଅଛି। ବିବିଧ ବିଷୟକ ପ୍ରସ୍ତାବମାନ ଯେ ପ୍ରକାର ସୁଚାରୁ ରୂପେ ନିର୍ବାଚିତ ଓ ବର୍ଣ୍ଣିତ ହୋଇଅଛି ସେ ପ୍ରକାର ଉତ୍କଳ ଭାଷାରେ ଅତି ବିରଳ। ଅତ୍ୟନ୍ତ କଠିନ ସଂସ୍କୃତ ଶବ୍ଦମାନଙ୍କ ବହୁଳ ବ୍ୟବହାର ଦ୍ୱାରା ଅନେକ ସ୍ଥଳରେ ରଚନା କର୍କଶ ହୋଇଅଛି। ଗ୍ରନ୍ଥକାର ଏ ପୁସ୍ତକର ଭୂମିକା ନ ଦେଇ ଭଲ କରିନାହାନ୍ତି ଓ ଯେଉଁଠାରୁ ପ୍ରବନ୍ଧମାନ ସଂକଳନ କରିଅଛନ୍ତି ତାହା ଚିହ୍ନାଇ ନ ଦେବାରୁ କେତେକାଂଶରେ ନିନ୍ଦାର ଭାଜନ ହୋଇ ଅଛନ୍ତି । ଇତ୍ୟାଦି।

ଏଥିରୁ ଦେଖାଯିବ ଯେ ଆଲୋଚନାଟି ନିଷ୍ପକ୍ଷ ଥିଲା ଏବଂ ଏଥିରେ ନିନ୍ଦା ସହିତ ପ୍ରଶଂସା ମଧ୍ୟ ସନ୍ତୁଳିତ ଭାବରେ ରହିଛି। ପରବର୍ତ୍ତୀ ସମୟରେ ପ୍ରକାଶିତ ସାହିତ୍ୟ ପତ୍ରିକା ଉତ୍କଳ ସାହିତ୍ୟରେ ପୁସ୍ତକ ଆଲୋଚନା ଏକ ଗୁରୁତ୍ୱପୂର୍ଣ୍ଣ ଅଂଗ ଥିଲା। ଏହାର ପ୍ରଥମ ସଂଖ୍ୟାରେ(ଯେଉଁଥିରେ ଧୂର୍ଜଟିଙ୍କର ଛମାଣ ଆଠଗୁଣ୍ଠ ଧାରାବାହିକ ଆରମ୍ଭ ହେଲା) ଚାରିଟି ବହିର ସଂକ୍ଷିପ୍ତ ଆଲୋଚନା ଓ ରାଧାନାଥ ରାୟଙ୍କ ମହାଯାତ୍ରାର ଦୀର୍ଘ ଆଲୋଚନା ଥିଲା। ଏହି ପତ୍ରିକା ପ୍ରକାଶନ ଓ ତହିଁରେ ପୁସ୍ତକ ଆଲୋଚନା ବହୁକାଳ ପର୍ଯ୍ୟନ୍ତ ଚାଲି ଆସିଥିଲା।

ବର୍ତ୍ତମାନ କିନ୍ତୁ ଓଡ଼ିଆରେ ନିୟମିତ ଭାବରେ ପ୍ରକାଶ ପାଉଥିବା ପତ୍ରିକା ଅତ୍ୟନ୍ତ ଅନିୟମିତ, ସ୍ୱଳ୍ପ ଓ ସେଥିରେ ପୁସ୍ତକ ଆଲୋଚନା ଅତ୍ୟନ୍ତ ଅନିୟତ। ଗୋଟିଏ ପତ୍ରିକାରେ ଗତ ମାର୍ଚ୍ଚ ଓ ଏପ୍ରିଲ(୨୦୧୫) ସଂଖ୍ୟାରେ ଚଉଦଟି ବହିର ଆଲୋଚନା ହୋଇଛି ଏବଂ ପ୍ରତିଟି (ଚଉଦରୁ ଚଉଦଟି) ବହି ଉପରେ ମନ୍ତବ୍ୟ ରହିଛି ଯେ ବହିଟି ପାଠକାଦୃତ ହେବ ବା ପାଠକୀୟତା ଲାଭ କରିବ କିମ୍ବା ପାଠକମାନଙ୍କୁ ବିମୋହିତ କରିବ। ଏ ଭଳି ମନ୍ତବ୍ୟ ଦେଖି ପାଠକ ସନ୍ଦିଗ୍ଧ ହେବା ସ୍ୱାଭାବିକ।

ସମାଲୋଚକର ପ୍ରଥମ ଦାୟିତ୍ୱ ନିଷ୍ପକ୍ଷ ଆଲୋଚନା କରିବା। ଏଥିରେ ସମସ୍ୟା ହେଲା ଯେ ଯାହାର ବହି ଉପରେ କଟୁ ବା ନକାରାତ୍ମକ ମନ୍ତବ୍ୟ କରାଯାଇଥାଏ, ତାର ଲେଖକ ସମାଲୋଚକର ଶତ୍ରୁ ପାଲଟି ଯାଏ। ସମାଲୋଚକମାନେ ସେଥିପାଇଁ ଜଗି ରଖି ନିଜର ଲେଖା ଲେଖନ୍ତି। ପ୍ରତ୍ୟେକ ଆଲୋଚକର ବହି ବିଷୟରେ ତିନୋଟି ମତ ଥାଏ। ସେ ଯେତେବେଳେ ବହିଟିକୁ ପ୍ରଥମେ ପଢ଼େ ଉପଲବ୍ଧି କରେ ଯେ ଏଇଟି ଗୋଟିଏ ବାଜେ,

ନିକୃଷ୍ଟ ଲେଖା। ସାଙ୍ଗମାନଙ୍କ ସହିତ ଆଲୋଚନା କଲା ବେଳେ ସେ ବହିଟିକୁ ଠିକଠାକ୍ ବୋଲି କହେ। କିନ୍ତୁ ଯେତେବେଳେ ପତ୍ରପତ୍ରିକାରେ ସମୀକ୍ଷା କରିବାକୁ ହୁଏ ସେ ବହିର ପ୍ରଶଂସାରେ ଶତମୁଖ ହୋଇଯାଏ। ଏଥିରୁ ବହିଟିର ଅସାରତା ଯେତେ ନୁହେଁ ତାଠାରୁ ଅଧିକ ପ୍ରମାଣ ମିଳେ ସମାଲୋଚକର କୃତ୍ରିମତା ଓ ନିର୍ବୋଧତାର।

ଅଧିକାଂଶ ଲେଖକ ମନ୍ଦ ମନ୍ତବ୍ୟ ବିଷୟରେ ଭୟଙ୍କର ଭାବେ ସମ୍ବେଦନଶୀଳ ଓ ଏହା ଉପରେ ପ୍ରଚଣ୍ଡ ପ୍ରତିକ୍ରିୟା ପ୍ରକାଶ କରନ୍ତି। ଏହାର ଏକ ପ୍ରସିଦ୍ଧ ଉଦାହରଣ ହେଉଛି ୧୯୬୦ ଦଶକରେ ଏଡ୍‌ମଣ୍ଡ ଉଇଲ୍‌ସନ୍ ଲେଖିଥିବା ନାବୋକଭଙ୍କ ପୁଶକିନ ଅନୁବାଦର ସମୀକ୍ଷା। ନାବୋକଭ ଏହି ସମୀକ୍ଷା ଉପରେ ନ ପୃଷ୍ଠାର ଜବାବ ଲେଖିଥିଲେ ଏବଂ ପୂର୍ବରୁ ଘନିଷ୍ଠ ବନ୍ଧୁ ଥିବା ଲେଖକ ଦୁହେଁ ପରସ୍ପରର କଠୋର ଶତ୍ରୁ ପାଲଟି ଯାଇଥିଲେ। ସେହିପରି ହେମିଂଓ୍ୱେ ତାଙ୍କ ଲେଖାର ସମାଲୋଚକଙ୍କ ଅଫିସକୁ ଯାଇ ତାଙ୍କ ମୁହଁକୁ ବହି ଫୋପାଡ଼ି ଥିଲେ। ଏହି କାରଣରୁ ଏକ ସମୟରେ ପୁସ୍ତକ ଆଲୋଚନା ଲେଖାରେ ସମୀକ୍ଷକଙ୍କର ନାଁ ଦିଆ ଯାଉ ନଥିଲା। ଉଲ୍ଲେଖଯୋଗ୍ୟ ଯେ ଉପରଲିଖିତ କୀଟ୍‌ସ୍‌ଙ୍କ ବହିର ସମୀକ୍ଷା ମଧ୍ୟ ଏ ଭଳି ବେନାମୀ ପ୍ରକାଶ ପାଇଥିଲା।

ଦିଲ୍ଲୀରୁ ପ୍ରକାଶିତ ସ୍ୱଳ୍ପ ପ୍ରସାରିତ ଏକ ଇଂରେଜୀ ପତ୍ରିକାରେ ଏକଦା ତାଙ୍କର ବହିର ବିରୂପ ସମାଲୋଚନା ବାହାରିଥିବାରୁ ଆମର ମନୋଜ ଦାସ ଦିଲ୍ଲୀ ଯାଇ ସେଠାରେ ପତ୍ରିକାର ସଂପାଦିକାଙ୍କୁ ଭେଟିଥିଲେ ଏବଂ 'ସମାଜ' ଖବରକାଗଜରେ ଏକ ଅଧା ପୃଷ୍ଠାର ପ୍ରତିବାଦ ଲେଖିଥିଲେ(୯.୧୦.୯୪)। ଏଥିରେ ସେ ସମୀକ୍ଷାଟିକୁ ଆମୂଳଚୂଳ ଦୁଷ୍ଟବୁଦ୍ଧି ପ୍ରଣୋଦିତ ବୋଲି କହିଥିଲେ। ତାଙ୍କର ଲେଖାକୁ ସମର୍ଥନ କରି ଅନେକ ଦିନ ପର୍ଯ୍ୟନ୍ତ ସମାଜ ପୃଷ୍ଠାରେ ଲେଖାମାନ ପ୍ରକାଶ ପାଇଥିଲା। ଏହି ଲେଖାଟିରେ ମନୋଜ ଦାସ ସମୀକ୍ଷା ବିଷୟରେ ଯେଉଁ କେତୋଟି କଥା ଲେଖିଛନ୍ତି, ତାହା ପ୍ରଣିଧାନଯୋଗ୍ୟ। ଯଥା, "ସମୀକ୍ଷକ ବହି ଜମାରୁ ନ ପଢ଼ି ସମୀକ୍ଷା ଲେଖିବାର ଲକ୍ଷ୍ୟ କରିଛି, କେବେ କେବେ ସମୀକ୍ଷକମାନେ ମନ ଦେଇ ପଢ଼ନ୍ତି ନାହିଁ। ... ସବୁ ପ୍ରଶଂସା ବି ଜଣେ ଲେଖକ ପାଇଁ ଉତ୍ସାହର ହେତୁ ହୋଇ ପାରେନା। ଯେମିତି ଭୁଲ୍ କାରଣରୁ ନିନ୍ଦା ସମ୍ଭବ, ସେମିତି ଭୁଲ୍ କାରଣରୁ ବି ପ୍ରଶଂସା ସମ୍ଭବ।"

ବହି ନ ପଢ଼ି ବା କେବଳ ବହିର ମଲାଟ ଲେଖା ପଢ଼ି ବା ପୃଷ୍ଠା ଲେଉଟାଇ ସମୀକ୍ଷା ଲେଖିବାରେ ସମୀକ୍ଷକମାନଙ୍କର ଦୁର୍ନାମ ଅଛି। ଜଣେ ଅଧ୍ୟାପକଙ୍କୁ ସେ ଗୋଟିଏ ବହି ପଢ଼ିଛନ୍ତି କି ନାହିଁ ପଚାରିବାରେ ତାଙ୍କର ଉତ୍ତର ଥିଲା, ବହି ପଢ଼ିବା ତ ଦୂରର କଥା ମୁଁ ଏ ପର୍ଯ୍ୟନ୍ତ ତାର ସମୀକ୍ଷା ବି ଲେଖି ନାହିଁ!

ପୁସ୍ତକ ସମୀକ୍ଷା ଯେ ପୁସ୍ତକ ଲେଖିବା ଭଳି ଏକ ଗମ୍ଭୀର କାମ ଆମେମାନେ ସେ ବିଷୟରେ ସଚେତନ ନୋହୁଁ। ଇଂରେଜୀର କେତେକ ସମୀକ୍ଷା ପତ୍ରିକା ଓ ଖବରକାଗଜର ସାହିତ୍ୟ ପୃଷ୍ଠାରେ ପ୍ରକାଶ ପାଉଥିବା ସମୀକ୍ଷା ପଢ଼ିଲେ ଜାଣି ହେବ କି ଭଳି ପରିଶ୍ରମ, ଯତ୍ନ

ଓ ଅଧ୍ୟବସାୟର ସହିତ ଲେଖକମାନେ ଏହା ଲେଖୁଛନ୍ତି। ଏକ ସମୟରେ ଓଡ଼ିଆ ସାହିତ୍ୟ ପତ୍ରିକାରେ ପ୍ରକାଶିତ ସମୀକ୍ଷାକୁ ପାଠକ ଓ ସାହିତ୍ୟିକମାନେ ଗମ୍ଭୀରତାର ସହିତ ଗ୍ରହଣ କରୁଥିଲେ, ବର୍ତ୍ତମାନ ତା ଆଉ ନାହିଁ।

ବର୍ତ୍ତମାନ ଓଡ଼ିଆ ପତ୍ରପତ୍ରିକାରେ ଯେଉଁ ପୁସ୍ତକ ଆଲୋଚନା ପ୍ରକାଶ ପାଏ ସେ ବିଷୟରେ କୁହାଯାଏ ଯେ ସେ ଆଲୋଚନାମାନ ଅନେକ ସମୟରେ ନିଜେ ପୁସ୍ତକର ଲେଖକ ଲେଖିଥାନ୍ତି ଅଥବା ନିଜର ବନ୍ଧୁଙ୍କ ଦ୍ୱାରା ଲେଖାଇଥାନ୍ତି। ଏବଂ ନିଜେ ନେଇ ପତ୍ରପତ୍ରିକା ସଂପାଦକଙ୍କୁ ଛପାଇବା ପାଇଁ ଦେଇଥାନ୍ତି। ସେଥିପାଇଁ ଧୂଆ ମୂଳା ଅଧୂଆ ମୂଳା ଏକ ହୋଇ ସମସ୍ତ ପ୍ରକାର ଓ ମାନର ବହିମାନଙ୍କର ପ୍ରଶଂସାମୂଳକ ସ୍ତୁତି ପୁସ୍ତକ ଆଲୋଚନା ସ୍ତମ୍ଭରେ ପ୍ରକାଶ ପାଇଥାଏ।

ବଜାରରେ ହଜାର ହଜାର ସଂଖ୍ୟାର ବହି ପ୍ରକାଶ ପାଉଥିବାରୁ ଏବଂ ସାହିତ୍ୟ ପତ୍ରିକାର ପ୍ରକାଶନ ଅତି ସୀମିତ ଓ ଅନିୟମିତ ଥିବାରୁ କେବଳ ଅଳ୍ପ କିଛି ବହିର ଆଲୋଚନା ହିଁ ସମ୍ଭବ। ତେଣୁ କେଉଁ ବହିର ସମାଲୋଚନା ପ୍ରକାଶ ପାଇବ ସେ ବିଷୟ ଚିନ୍ତା ପୂର୍ବକ ନିର୍ଣ୍ଣୟ କରିବା ଉଚିତ। ସେହିପରି ବହିଟି ପାଇଁ ସମୀକ୍ଷକ ଠିକ କରିବା ବେଳେ କେତୋଟି କଥା ଦେଖିବାର ଅଛି। ପୁସ୍ତକର ଲେଖକ ଓ ସମୀକ୍ଷକ ପ୍ରତିଦ୍ୱନ୍ଦ୍ୱୀ ହୋଇ ନଥିବେ, ସେମାନେ ଆଗରୁ ପରସ୍ପରର ବହିର ଆଲୋଚନା କରି ନଥିବେ, ବହିର ବିଷୟବସ୍ତୁ ଉପରେ ସମାଲୋଚକର ଦକ୍ଷତା ଥିବ, ଇତ୍ୟାଦି। ଏ ସବୁ ନୀତି ନିୟମ ପାଳିବା ପାଇଁ ଉପଯୁକ୍ତ ମାଧ୍ୟମ ହେଉଛି ପୁସ୍ତକ ସମୀକ୍ଷା ପାଇଁ ସ୍ୱତନ୍ତ୍ର ପତ୍ରିକା। ଇଂରେଜୀରେ ଏ ଭଳି ଅନେକ ପତ୍ରିକା ଅଛି, କିନ୍ତୁ ଓଡ଼ିଆରେ ଗୋଟିଏ ପତ୍ରିକା କିଛି ଦିନ ପ୍ରକାଶ ପାଇବା ପରେ ବନ୍ଦ ଯାଇଥିଲା।

ଯେ ପର୍ଯ୍ୟନ୍ତ ବହି ବାହାରୁଥିବ, ତାର ଆଲୋଚନା ମଧ୍ୟ ବାହାରିବ। ପ୍ରଶଂସାସୂଚକ ଆଲୋଚନା ହେଲେ ଲେଖକ ଖୁସି ହେଉଥିବେ, କିନ୍ତୁ ନକାରାତ୍ମକ ହେଲେ ରକ୍ତଚାଉଳ ଚୋବାଇବେ। ଏ ଭଳି ଅସହିଷ୍ଣୁ ଲେଖକମାନଙ୍କୁ ରାଧାନାଥ ରାୟ ତାଙ୍କର 'ବିବେକୀ' ପ୍ରବନ୍ଧରେ ଭଲ ଉପଦେଶ ଦେଇଥିଲେ। ସେ ଲେଖିଥିଲେ, କେହି କେହି ଗ୍ରନ୍ଥକାର ଆପଣା ଗ୍ରନ୍ଥର ପ୍ରତିକୂଳ ସମାଲୋଚନା ପଢ଼ିଲା କ୍ଷଣି ଅସ୍ଥିର ହୁଅନ୍ତି। ମାତ୍ର ଅସ୍ଥିର ହେବାର ଉଚିତ ନୁହେଁ। ସମସ୍ତଙ୍କ ରୁଚି ଏକା ଛାଞ୍ଚରେ ଗଢ଼ା ହୋଇନାହିଁ।

ପରିଶେଷରେ ମୁଁ ଅନେକ ଦିନ ତଳେ ଲେଖିଥିବା 'ସମୀକ୍ଷକ' କବିତା (ଆକୁକୁଚି ମାକୁକୁଚି, ୧୯୯୩)କୁ ଉଦ୍ଧାର କରିବାର ଲୋଭ ସମ୍ବରଣ କରିପାରୁନାହିଁ :

ପ୍ରତି ପୃଷ୍ଠାରେ ଖୋଜି କିଛି କିଛି ଛିଦ୍ର
ବହିଟି ପଢ଼ାରେ କାଟେ ରାତିଟି ବିନିଦ୍ର
ଲେଖେ ଯେଉଁ ଆଲୋଚନା
ବହି କଥା ଥାଏ ଊଣା
ଇଂରେଜୀ ଉଦ୍ଧୃତି, ଉପଦେଶ ବି.ଦ୍ର।

ମେ, ୨୦୦୪

# କବୀ କବୟିତ୍ରୀ ନାରୀ କବି

ଆମ ଭାଷାରେ ନାରୀ କବିଙ୍କ ପାଇଁ ଦୁଇଟି ଶବ୍ଦ ଅଛି – କବୀ ଓ କବୟିତ୍ରୀ – କିନ୍ତୁ ନାରୀ କବି ହିଁ ବିଶେଷ ଭାବେ ବ୍ୟବହୃତ। ଇଂରେଜୀରେ ଅଭିନେତ୍ରୀମାନଙ୍କୁ ସାଧାରଣ ଭାବେ ଆକ୍ଟର କୁହାଯାଏ, ଆକ୍ଟ୍ରେସ ନୁହେଁ, କିନ୍ତୁ ନାରୀ କବିଙ୍କ ପାଇଁ ପୋଏଟେସ୍ ଶବ୍ଦ ପ୍ରଚଳିତ। ଅଧିକାଂଶ ଇଂରେଜୀ ନାରୀ କବି ପୋଏଟେସ ଶବ୍ଦକୁ ପସନ୍ଦ କରିନ୍ତି ନାହିଁ କାରଣ ଏ ଶବ୍ଦଟି ପୋଏଟ ଓ ମିସ୍‌ଟ୍ରେସ୍ ଶବ୍ଦର ସଙ୍କର ଭଳି ମନେ ହୁଏ।

ପାଶ୍ଚାତ୍ୟର ଲେଖିକାମାନେ ନାରୀକବିଙ୍କର ଅଲଗା ବିଭାଗକୁ ମଧ୍ୟ ନାପସନ୍ଦ କରନ୍ତି। ଏଲିଜାବେଥ ବିଶପ(୧୯୧୧–୭୯) ଏ ବିଷୟରେ କହିଥିଲେ, ମୁଁ ବରଂ ଷୋଡ଼ଶ କବି ଭାବେ ଗଣା ହେବାକୁ ଚାହିଁବି, କିନ୍ତୁ ଚତୁର୍ଥ ନାରୀ କବି ଭାବରେ ନୁହେଁ। ଆମର ପ୍ରତିଭା ଶତପଥୀ ମଧ୍ୟ କହିଛନ୍ତି, ଆତ୍ମାରୁ ନିଃସୃତ, ଅଭ୍ୟନ୍ତରରୁ ଉଦ୍ଧାରିତ ସାହିତ୍ୟ କଳା କବିତାରେ ଲିଙ୍ଗଭେଦ ରହେ ନାହିଁ, ତେଣୁ ରଚନା କର୍ମ–ନିପୁଣା ନାରୀଙ୍କ ପ୍ରତି 'ନାରୀ କବି' ଶବ୍ଦର ପ୍ରୟୋଗକୁ ମୁଁ ସ୍ୱୀକାର କରେ ନାହିଁ।(ଧରିତ୍ରୀ ସାହିତ୍ୟାୟନ, ଏପ୍ରିଲ ୫–୧୮, ୨୦୧୪)

ଆମ ସାହିତ୍ୟରେ ନାରୀ କବିଙ୍କର ଆବିର୍ଭାବ ଅତି ପ୍ରାଚୀନ ଓ ଆମର ପ୍ରଥମ ଜଣାଶୁଣା ନାରୀ କବି ହେଉଛନ୍ତି ୧୬ଶ ଶତାବ୍ଦୀର ମାଧବୀ ଦାସୀ। ଓଡ଼ିଆ ଓ ବ୍ରଜବୋଲି ଉଭୟ ଭାଷାରେ ତାଙ୍କର ଭକ୍ତିକବିତା ଅଛି। କିନ୍ତୁ ସ୍ତ୍ରୀ ହୋଇଥିବାରୁ ସେ କିପରି ପୁରୁଷମାନଙ୍କ ସହିତ ସମାନ ଅଧିକାର ପାଇ ନ ଥିଲେ ସେ ବିଷୟରେ ଲେଖିଛନ୍ତି :

ଯେ ଦେଖଲେ ଗୋରା ମୁଖ ସେଇ ପ୍ରେମେ ଭାସେ
ମାଧବୀ ବଞ୍ଚିତ ହଇଲା ନିଜ କର୍ମ ଦୋଷେ।

ତା ପରବର୍ତ୍ତୀ ସମୟରେ ଆମେ ଅଳ୍ପ କିଛି ନାରୀକବିଙ୍କ ନାଁ ଶୁଣିବାକୁ ପାଉ, ଯଥା, ବୃନ୍ଦାବତୀ ଦାସୀ(୧୭ଶ ଶତାବ୍ଦୀ), ନିଶଙ୍କରାୟ ରାଣୀ(୧୮ଶ ଶତାବ୍ଦୀ) । ଏ ତିନିଜଣଙ୍କ ପରେ ଆମେ ବିଂଶ ଶତାବ୍ଦୀରେ ଭେଟୁ ଗଂଜାମର ଅନ୍ନପୂର୍ଣ୍ଣା ଦେବୀ(ପଟ୍ଟନାୟକ)ଙ୍କୁ(୧୮୮୩–୧୯୬୧)। ଅତି ଦୁଃସ୍ଥ ଅବସ୍ଥାରେ ଥାଇ ସେ କବିତା ଲେଖୁଥିଲେ ଏବଂ ସେତେବେଳର ପ୍ରମୁଖ ସାହିତ୍ୟିକ ରାଧାନାଥ ରାୟ, ଫକୀରମୋହନ, ମଧୁସୂଦନ ରାଓ ଇତ୍ୟାଦି ତାଙ୍କ ବିଷୟରେ ପ୍ରଶଂସାମୂଳକ ଲେଖାମାନ ଲେଖିଥିଲେ। ତାଙ୍କ ପରବର୍ତ୍ତୀ ସମୟରେ ମୁଷ୍ଟିମେୟ ନାରୀ କବି ବାହାରିଥିଲେ, କିନ୍ତୁ କୁନ୍ତଳା କୁମାରୀ ସାବତ(୧୯୦୧–୧୯୩୮) ହିଁ ବିଂଶ ଶତାବ୍ଦୀ ପ୍ରଥମାର୍ଦ୍ଧର ସବୁଠାରୁ ବେଶି ଜଣାଶୁଣା

ନାରୀ କବି। ସେ ଯଦିଓ ପ୍ରସିଦ୍ଧି ଓ ସମ୍ମାନ ପାଇଥିଲେ, ତାଙ୍କ ସମୟରେ ନାରୀ କବିଙ୍କୁ ସାଧାରଣରେ ବିଶେଷ ପ୍ରୋତ୍ସାହନ ମିଳୁ ନଥିଲା। ସେତେବେଳର ପ୍ରସିଦ୍ଧ ପତ୍ରିକା 'ସହକାର' ଲେଖିକାମାନଙ୍କ ପାଇଁ 'ମହିଳା ମହଲ' ନାମକ ଏକ ସ୍ୱତନ୍ତ୍ର ବିଭାଗ ସୃଷ୍ଟି କରିବାରେ ନାରୀ ନେତ୍ରୀ ଓ ଲେଖିକା ସରଳା ଦେବୀ ପତ୍ରିକାକୁ ପ୍ରଶଂସା କରିଥିଲେ ଓ ଲେଖିଥିଲେ, ଉତ୍କଳ ସାହିତ୍ୟ କିମ୍ୱା ଚିନ୍ତା କ୍ଷେତ୍ରରେ ନାରୀ ଅବଦାନଶୂନ୍ୟତା ମୋର ମନକୁ ପୀଡ଼ିତ କରି ଆସୁଅଛି।(ସହକାର ୧୦ ମେ ୧୯୩୨)।

ବର୍ତ୍ତମାନ କିନ୍ତୁ ସେ ଯୁଗ ଗଲାଣି। ଓଡ଼ିଆରେ ଆଉ ନାରୀ କବିଙ୍କର ଅଭାବ ନାହିଁ। ଏବେ ବରଂ ବେଳ ଆସିଛି ପୁରୁଷ କବିଙ୍କର ମନ ପୀଡ଼ିତ ହେବାର।

ପୂର୍ବ ସମୟରେ ଇଉରୋପରେ ମଧ୍ୟ ନାରୀ କବିଙ୍କର ଅବସ୍ଥା କିଛି ଭଲ ନଥିଲା। ଊନବିଂଶ ଶତାବ୍ଦୀର ସ୍ତ୍ରୀ ଲେଖକମାନେ ଉପନ୍ୟାସ ଲେଖୁଥିଲେ କାରଣ କବିତା ଲେଖିବା ନାରୀ ସୁଲଭ ବିବେଚିତ ହେଉ ନଥିଲା। ବ୍ରଣ୍ଟେ ତିନି ଭଉଣୀ ଆନି, ଶାର୍ଲଟ୍, ଏମିଲି ୧୮୫୦ରେ ମିଳିମିଶି ତାଙ୍କର କବିତା ବହି ପ୍ରକାଶ କରିବା ବେଳେ ନିଜ ନିଜକୁ ତିନିଟି ପୁରୁଷ ନାଁ ଦେଇଥିଲେ, କାରଣ ସେତେବେଳେ ନାରୀ କବିଙ୍କ ପ୍ରତି ବିଦ୍ୱେଷ ଥିଲା। ୧୮୬୨ରେ ଏମିଲି ଡିକିନସନ୍ ମଧ୍ୟ ସେଥିପାଇଁ ଦୁଃଖ କରି ଲେଖିଥିଲେ, ମତେ ସେମାନେ ଗଦ୍ୟରେ ବନ୍ଦ କରିଦେଲେ। ୧୯୨୮ରେ ଭର୍ଜିନିଆ ଉଲ୍‌ଫ୍ ଗୋଟିଏ କାଳ୍ପନିକ ଜୁଡ଼ିଥ ଶେକ୍ସପିଅର ଚରିତ୍ର ତିଆରି କରି ଯୁକ୍ତି ଦେଇଥିଲେ ଜୁଡ଼ିଥ କାହିଁକି କେବେହେଲେ ତାଙ୍କ ଭାଇ ଉଇଲିଆମଙ୍କ ଭଳି କବି ହୋଇ ପାରି ନଥାନ୍ତେ।

ଭର୍ଜିନିଆ ଉଲ୍‌ଫ ଲେଖିକାମାନଙ୍କର ସମସ୍ୟା ପାଇଁ ଏକ ସହଜ ସମାଧାନ ଦେଇଥିଲେ– ନିଜର ଗୋଟିଏ କୋଠରି ଓ ବର୍ଷକୁ ପାଞ୍ଚ ଶହ ମୁଦ୍ରା। (ଏହାକୁ ଅତିରଂଜିତ କରି ସେତେବେଳେ ଫରାସୀ ଲେଖିକା କୋଲେଟ୍ କହିଥିଲେ, ମୋର ଦରକାର ବର୍ଷକୁ ପଚାଶ ହଜାର, ଗୋଟିଏ ଭିଲ୍ଲା ଘର, ଭଲ ରାନ୍ଧୁଣିଆ, ବିସ୍ତୃତ ବଗିଚା ଓ ଗୋଟିଏ ସୁନ୍ଦର ଯୁବକ!) ଆଜି ପର୍ଯ୍ୟନ୍ତ ଲେଖିକାମାନେ ଭର୍ଜିନିଆଙ୍କ ଭଳି ନିଜର ଗୋଟିଏ କୋଠରିର ଅଭାବ ଅନୁଭବ କରୁଛନ୍ତି।

ଏହି ଅଭାବ ବ୍ୟତୀତ ଲେଖିକାମାନଙ୍କର ଆଉ ଗୋଟିଏ ସମସ୍ୟା ହେଉଛି ନିଜର ପରିବାର। ନାରୀ କବିକୁ ଲେଖିବା ପାଇଁ ପରିବାର ଓ ସମାଜ ପକ୍ଷରୁ କୌଣସି ସମର୍ଥନ ମିଳେ ନାହିଁ। ତାର ଲେଖାକୁ ସ୍ୱାମୀ ଅଣଦେଖା କରେ। ଗୋଟିଏ ଓଡ଼ିଆ ଗଳ୍ପରୁ ଏହାର ଉଦାହରଣ ନିଆଯାଉ :

ନାରୀ କବି ଶ୍ରୀମତୀ ମିଶ୍ରର ସ୍ୱାମୀ କବିତା ପାଠ ସରିବା ଆଗରୁ ତାକୁ ସଭାରୁ ଜବରଦସ୍ତି ଉଠାଇ ଆଣେ। କବିମାନେ ତା ଘରକୁ ନିମନ୍ତ୍ରିତ ହୋଇ ଆସିଲେ ଯଦିଓ ସମସ୍ତେ ତାର ରୋଷାଇକୁ ପ୍ରଶଂସା କରନ୍ତି, ତାର କବିତା ପଢ଼ା ହୁଏ ନାହିଁ। ସ୍ୱାମୀ କହେ, କାହିଁକି ଅଯଥାରେ କବିତା ଫବିତା ଲେଖାରେ ମାତିଛ। ଆହୁରି ମଧ୍ୟ କହେ, ଯାହା ଲେଖିବ

ଲେଖିବ, ପ୍ରେମ କବିତା ଲେଖିବ ନାହିଁ। ତାକୁ ପୁରୁଷ ଲେଖକମାନେ ତାଙ୍କ ସୃଜନ ଖଟିରେ ପୂରାନ୍ତି ନାହିଁ, କାରଣ ସେମାନେ ଅଡୁଆ ଚାହାନ୍ତି ନାହିଁ।

କହିବା ବାହୁଲ୍ୟ ଗଳ୍ପଟି ଜଣେ ଲେଖିକାଙ୍କର ଲେଖା। (ପାରମିତା ଶତପଥୀ, ନାରୀ କବି, ୨୦୧୫)। ତେବେ ପୁରୁଷ କବିଙ୍କ ଅବସ୍ଥା ମଧ୍ୟ ସେପରି କିଛି ସ୍ୱଚ୍ଛନ୍ଦ ଓ ନିଶ୍ଚିନ୍ତ ନୁହେଁ, ବରଂ ଅନେକଟା ଏକା ଭଳି। ଏ ବିଷୟରେ ଆଉ ଗୋଟିଏ ଗଳ୍ପର ବିବରଣୀ ନିମ୍ନମତେ :

ପାଠ ପଢ଼ିବା ବେଳୁ କବି ହେବାର ଦୁରାକାଂକ୍ଷା ରଖିଥିବା ଅନିରୁଦ୍ଧ ସ୍ତ୍ରୀକୁ ତାର ପୁରୁଣା କବିତା ଖାତା ଦେଖାଇଲା। ସ୍ତ୍ରୀ କୌଣସି ଆଗ୍ରହ ନ ଦେଖାଇ କହିଲା, ମୋ ତକିଆ ତଳେ ରଖିଦିଅ। ଅନିରୁଦ୍ଧ କବିତାଟିକୁ ପଢ଼ିବାରୁ ସ୍ତ୍ରୀ କହିଲା, କଣ ପ୍ରେମ କବିତା? ତମେ କଲେଜରେ ପଢ଼ିବା ବେଳେ ତମ ସାଙ୍ଗରେ ଲୀତା ନା ଚିତା ବୋଲି ଝିଅ ଥିଲା, କୁଆଡ଼େ ଗଲା? ଅନିରୁଦ୍ଧ ସେଇ ମୁହୂର୍ତ୍ତରେ କବିତା ଲେଖିବା ଇଚ୍ଛାକୁ ଜଳାଂଜଳି ଦେଇଦେଲା।

କହିବା ବାହୁଲ୍ୟ ଗଳ୍ପଟି ଜଣେ ଲେଖକଙ୍କର। (ଅମରତ୍ୱ, ଦିନଚର୍ଯ୍ୟା, ୧୯୮୩) ଏଥିରୁ ଏ ଭଳି ନିଷ୍କର୍ଷ ବାହାରିବ ଯେ ଉଭୟ ଲେଖକ ଲେଖିକାଙ୍କର ପାରିବାରିକ ପରିସ୍ଥିତି ସମସ୍ୟାପୂର୍ଣ୍ଣ। ଶ୍ରମତୀ ମିଶ୍ରର ସ୍ୱାମୀ ଓ ଅନିରୁଦ୍ଧର ସ୍ତ୍ରୀ କବିତାର ଧାର ଧାରନ୍ତି ନାହିଁ। ତେବେ ମୁଁ ଭାବୁଛି ଏ ସମସ୍ୟା ଦାମ୍ପତ୍ୟର, କବିତା ସହିତ ଏହାର ବିଶେଷ ସଂପର୍କ ନାହିଁ। ସ୍ୱାମୀ ଓ ସ୍ତ୍ରୀ କବି ବଦଳରେ ଆଉ କିଛି ହୋଇଥିଲେ ବି ଏ ଭଳି ଟଣାଟଣି ଉପୁଜି ପାରିଥାନ୍ତା।

ନାରୀ କବି ନିଜର ସ୍ୱତନ୍ତ୍ର କୋଠରିର ଅଭାବ ଅନୁଭବ କରୁଥାଇ ପାରେ। କିନ୍ତୁ ପୁରୁଷ କବିକୁ ମଧ୍ୟ ସହିବାକୁ ପଡ଼େ ତାର ଚାକିରି ପ୍ରମୋଶନ ଦରମା ଟଙ୍କା ବିଷୟରେ ସ୍ତ୍ରୀର ଦାବିକୁ। ସେ ମଧ୍ୟ ସ୍ତ୍ରୀ ଭୟରେ ପ୍ରେମ କବିତା ଲେଖେ ଅଫିସରେ, ଫାଇଲ କାମ ମଝିରେ। ଯଦି ତାର ସ୍ତ୍ରୀ ଫକୀରମୋହନଙ୍କ 'କବିର କଳିହୁଡ଼ୀ ସ୍ତ୍ରୀ' ହୋଇଥାଏ ତେବେ ତାର ଯନ୍ତ୍ରଣାର ସୀମା ନାହିଁ।

ହୁଏତ କେହି ଭାବିବ ଯେ ସ୍ୱାମୀ ସ୍ତ୍ରୀ ଉଭୟ ଯଦି କବି ହୋଇଥାନ୍ତି ତେବେ ଆଉ ସମସ୍ୟା ରହିବ ନାହିଁ। ଏହି ଭୁଲ ଧାରଣାର ଜ୍ୱଳନ୍ତ ଉଦାହରଣ ହେଉଛନ୍ତି ଦୁଇ ଜଣ ପ୍ରସିଦ୍ଧ କବି, ସିଲ୍‌ଭିଆ ପ୍ଲାଥ ଓ ଟେଡ ହ୍ୟୁଗ। ସେମାନଙ୍କ ବିବାହିତ ଜୀବନ ସମସ୍ୟାପୂର୍ଣ୍ଣ ଥିଲା ଓ ଶେଷରେ ସିଲଭିଆ ତାର ସମାଧାନ କରିଥିଲେ ଆତ୍ମହତ୍ୟା କରି।

ଦାମ୍ପତ୍ୟ ସଂପର୍କ ବାହାରେ ମଧ୍ୟ ନାରୀ କବି ଓ ପୁରୁଷ କବିଙ୍କ ମଧ୍ୟରେ ଟଣାଟଣି ଥାଏ। ଅନେକ କବୟିତ୍ରୀ ଏହି ସମସ୍ୟାକୁ କବିତାରେ ଉପସ୍ଥାପିତ କରିଛନ୍ତି। ହିନ୍ଦୀ ଲେଖିକା ଗଗନ୍ ଗିଲ୍‌ଙ୍କର ଏକ କବିତାର ଶିରୋନାମା ହେଉଚି, 'କବିଗଣ କବିତାକୁ ଡରନ୍ତି'। (ଏକଦିନ ଲୌଟେଗୀ ଲଡ଼କୀ, ୧୯୮୬)। ଏହି କବିତାର ମର୍ମ ଥିଲା ଯେ ଝିଅଙ୍କ

କବିତାରେ ତାଙ୍କର ଯେଉଁ ନିଜତ୍ୱ ଥାଏ, ଯେଉଁ ଇଚ୍ଛା ଥାଏ, ଯେଉଁ ହିଂସ୍ରତା ଥାଏ ଦେହର ଗନ୍ଧ ଥାଏ, ଆତ୍ମାର ଶୋକ ଥାଏ, ସ୍ୱପ୍ନ ଦୁଃସ୍ୱପ୍ନର ଛାୟା ଥାଏ, କବିଗଣ ବୋଧହୁଏ ତାକୁ ହିଁ ଡରନ୍ତି। ଓଡ଼ିଆ କବୟିତ୍ରୀ କହନ୍ତି, ନାରୀଟିଏ ଯେତେବେଳେ କଲମ ଉଠାଏ, ଗୋଟାଏ ସଭ୍ୟତା ସଂସ୍କୃତି ଉପରେ ମୋହର ବାଜେ। ସେ ଶେଷରେ ପୁରୁଷକୁ ପ୍ରଶ୍ନ କରନ୍ତି, ଏ ଯାଏଁ ମୋ ଦେହରେ ଭରପୂର ଐଶ୍ୱର୍ଯ୍ୟ, ଅଳଙ୍କାର ବଦଳରେ କଲମଟିଏ ଧରାଇବାର ସାହସ କାହିଁକି କରି ନଥିଲ ? ( ମାଧୁରୀ ପଣ୍ଡା, ନାରୀଟିଏ ଯେତେବେଳେ କଲମ ଉଠାଏ, ଅଧୀର ଆଲୋକ, ୨୦୧୩)।

ତେବେ ନାରୀ କବି ପୁରୁଷର ଅନୁମୋଦନ ଓ ସ୍ୱୀକୃତି ଚାହାନ୍ତି କାହିଁକି ? କଣ ଭାସିଯିବ ସ୍ୱାମୀ କବିତା ନ ପଢ଼ିଲେ, ପୁରୁଷ କବି ତାଙ୍କ ଖଟିରେ ଜାଗା ନ ଦେଲେ ? ନାରୀ କବି କାହିଁକି ପୁରୁଷ ପାଖକୁ ତାର କଲମ ମାଗିବାକୁ ଯିବ ? ଏପରି ମନୋଭାବ ଯୋଗୁ ନାରୀଲେଖିକାକୁ ସମସ୍ତେ(ସ୍ତ୍ରୀ ଲୋକ ମିଶାଇ) ସବୁ ସମୟରେ ସନ୍ଦେହ ଓ ଛିଦ୍ରାନ୍ୱେଷୀ ଦୃଷ୍ଟିରେ ଦେଖିଥାନ୍ତି। ତାଙ୍କ ପାଇଁ ନିମ୍ନ ପ୍ରକାର ମନ୍ତବ୍ୟ କରାଯାଇଥାଏ :

୧. ଅସ୍ୱୀକାର । ଏ ଲେଖାଟି କଦାପି ସେ ନିଜେ ଲେଖି ନ ଥିଲେ, ଏଇଟି ଲେଖି ଦେଇଥିବେ ତାଙ୍କର ସ୍ୱାମୀ ବା ପୁରୁଷ ବନ୍ଧୁ। କିମ୍ବା, ଏଇଟି ଲେଖିକାଙ୍କର ନିଜ ବ୍ୟକ୍ତିତ୍ୱର ପୁରୁଷ ଅଂଶରୁ ଉଦ୍‌ଭୂତ। କୁନ୍ତଳା କୁମାରୀଙ୍କ ପାଇଁ କୈଳାସ ରାଓ ଲେଖି ଦେଇଥିବେ ପରା !

୨. ଅପକର୍ମ। ତାଙ୍କର ଏ ଭଳି ଲେଖା ଲେଖିବା ଉଚିତ ନଥିଲା, କାରଣ ଏହା ନାରୀ ସୁଲଭ ନୁହେଁ। ସେ ଯେଉଁ ବିଷୟରେ ଲେଖିଛନ୍ତି ତା ଗ୍ରହଣୀୟ ନୁହେଁ। ତାଙ୍କ କବିତାରେ ସ୍ତନ ଜଘନ ଚୁମ୍ବନ ଶବ୍ଦର ବ୍ୟବହାର ରୁଚି ବହିର୍ଭୂତ।

୩. ଅସାହିତ୍ୟ। ସେ ଯାହା ଲେଖିଛନ୍ତି ତାର କଳ୍ପନାତ୍ମକ ମୂଲ୍ୟ ନାହିଁ। ନାରୀମାନେ କେବଳ ଲେଖିପାରନ୍ତି ଶିଶୁ ଓ କିଶୋର ସାହିତ୍ୟ ଓ ଶସ୍ତା ରୋମାଞ୍ଚ ପ୍ରେମ କାହାଣୀ।

୪. ଅକିଞ୍ଚିତ । ସେ କେତେ ବା ଲେଖିଛନ୍ତି ଯେ ଆମେ ତାଙ୍କ ବିଷୟରେ ଆଲୋଚନା କରିବା ? ରେବା ରାୟ, ଅନ୍ନପୂର୍ଣ୍ଣାଙ୍କର କେତେଟା ବହି ଅଛି ?

୫. ବ୍ୟତିକ୍ରମ। ହଁ, ତାଙ୍କର ଲେଖା ଭଲ। ସେ ବ୍ୟତିକ୍ରମ ମାତ୍ର, ନିୟମ ନୁହନ୍ତି। ତାଙ୍କ ଭଳି ଆଉ କେତେ ଜଣ ଲେଖୁଛନ୍ତି ?

ନାରୀ କବି କହିଲେ ସାଧାରଣ ଲୋକେ ଭାବନ୍ତି ସେମାନେ ବାତୁଳୀ, ସମାଜ ଓ ଅନୁଷ୍ଠାନରୁ ବାହାରେ ଓ ନିଜର ହତାଶା, ବ୍ୟର୍ଥ ମନୋରଥ ଓ କ୍ରୋଧକୁ ସ୍ୱର ଦେଉଛନ୍ତି ତାଙ୍କର କବିତାରେ। ଏହିପରି ଦୃଷ୍ଟିଭଙ୍ଗୀ ନେଇ ନାରୀକବିମାନଙ୍କୁ କେତେକ ସହଜ ଶ୍ରେଣୀରେ ବିଭକ୍ତି କରି ଦିଆଯାଇଥାଏ। ଯଥା :

୧. ସମର୍ପିତା । ନିଜର ପ୍ରେମିକ ପାଇଁ ଲେଖେ। ଯଥା, ମାଧବୀ ଦାସୀ, ଏଲିଜାବେଥ୍ ବ୍ୟାରେଟ ବ୍ରାଉନିଙ୍ଗ୍, କୁନ୍ତଳାକୁମାରୀ ସାବତ।

୨. ଦୁଃଖିନୀ। ଅବିବାହିତା, ଅସୁଖୀ ଗୃହିଣୀ, ଏକାକିନୀ, ଅନ୍ତର୍ମୁଖୀ, ସମାଜରୁ ଅଲଗା। ଯଥା, ଏମିଲି ଡିକିନସନ୍।

୩. ଉନ୍ମାଦିନୀ। ମତିଭ୍ରଷ୍ଟ, ବିକାରଗ୍ରସ୍ତ, ଅତି ସମ୍ବେଦନଶୀଳ। ଯଥା, ସିଲଭିଆ ପ୍ଲାଥ।

୪. ସ୍ୱାଭିମାନୀ। ନିର୍ଭୀକ, ନିଃଶଙ୍କ, ଦୁଃସାହସୀ, ରୋଷାନ୍ୱିତା, ବିଦ୍ରୋହିଣୀ। ଯଥା, ସରଳା ଦେବୀ, ମାୟା ଆଂଜେଲୁ।

ତେବେ ଏ ସବୁ ହେଲା ପୁରୁଣା କଥା। ବର୍ତ୍ତମାନର ନାରୀ କବି କୌଣସି ଗୁଣରେ ପୁରୁଷଙ୍କଠାରୁ ଊଣା ନୁହନ୍ତି, ଏବଂ ବଡ଼ କଥା ହେଉଛି ସେମାନେ ନିଜେ ଏ ବିଷୟରେ ସଚେତନ। ସମସ୍ତେ ବର୍ତ୍ତମାନ ମାନି ନେଲେଣି ଯେ କବିତା ହେଉଛି ଲିଙ୍ଗ ନିରପେକ୍ଷ।

ଏ କଥା ମଧ୍ୟ ଆମକୁ ମାନି ନେବାକୁ ହେବ ଯେ କବି – ସେ ପୁରୁଷ କବି ହେଉ ବା ନାରୀ କବି – ଏକ ଗୋଠ ଖଣ୍ଡିଆ ଜୀବ। ତାକୁ ସବୁବେଳେ ଏକ ଅଭିଶପ୍ତ ଜୀବନ ବଞ୍ଚିବାକୁ ହେବ ପରିବାର ଓ ସମାଜ ଭିତରେ ଓ ବାହାରେ।

ଏ ଭଳି ପରିସ୍ଥିତିରେ ନାରୀ କବିମାନେ ଆଉ ତାଙ୍କ ବିରୁଦ୍ଧରେ ପକ୍ଷପାତିତା ହେଉଛି ବୋଲି କହି ପାରିବେ ନାହିଁ। ଅବଶ୍ୟ ନାରୀମାନଙ୍କର ଲେଖିବାରେ ଅନେକ ସମସ୍ୟା ଓ ବାଧା ରହିଛି। ତେବେ ନାରୀବାଦୀ ଜର୍ମେନ୍ ଗ୍ରୀଅର କହିବା ଭଳି, ହୋମର ଓ ମିଲ୍‌ଟନ୍ ଅନ୍ଧ ଥିଲେ, ଆମେ କ'ଣ କହିପାରିବା ଯେ ଅନ୍ଧ ହେବାଠାରୁ ସ୍ତ୍ରୀ ହୋଇଥିବା ଅଧିକ ଅସୁବିଧାଜନକ ଓ ସମସ୍ୟାସଂକୁଳ ?

*ମେ, ୨୦୦୪*

# ଅର୍ଥ ଅନର୍ଥ ପରମାର୍ଥ

କବିମାନଙ୍କୁ ଅନେକ ସମୟରେ ସେମାନେ ଲେଖିଥିବା କବିତାର ଅର୍ଥ କଣ ସେ ବିଷୟରେ ପଚରାଯାଇଥାଏ, ବିଶେଷରେ ଯେତେବେଳେ କବିତାଟି ସହଜବୋଧ୍ୟ ହୋଇ ନ ଥାଏ। ରବର୍ଟ ବ୍ରାଉନିଙ୍ଗଙ୍କୁ 'ସର୍ଡେଲୋ' କବିତା ବିଷୟରେ ପଚାରିବାରେ ତାଙ୍କର ଉତ୍ତର ଥିଲା, ''ମୁଁ ଯେତେବେଳେ କବିତାଟି ଲେଖିଥିଲି, ଈଶ୍ୱର ଓ ମୁଁ କବିତାଟିର ଅର୍ଥ ଜାଣିଥିଲୁ। ବର୍ତ୍ତମାନ କେବଳ ଈଶ୍ୱର ଜାଣନ୍ତି।'' ଗୋଟିଏ ସାହିତ୍ୟ ସଭାରେ ଇଲିଅଟଙ୍କୁ ଜଣେ ମହିଳା ପଚାରିଲେ, ''ଆପଣଙ୍କର Ash Wednesdayରେ Lady, three white leopards sat under a jumiper treeରେ ଆପଣ କଣ କହିବାକୁ ଚାହୁଁଛନ୍ତି ?'' ଇଲିଅଟଙ୍କର ଉତ୍ତର ଥିଲା, ''ମୁଁ କହିବାକୁ ଚାହୁଁଛି, Lady, three white leopards sat under a juniper tree"।

ଏଥିରୁ ଜଣାପଡ଼ିବ ଯେ ଲେଖକମାନେ ସେମାନଙ୍କର ଲେଖା ସଂପର୍କିତ ପ୍ରଶ୍ନକୁ ପ୍ରାୟତଃ ଏଡ଼ାଇ ଯାଇଥାନ୍ତି। ବେକେଟ୍‌ଙ୍କୁ ଯେତେବେଳେ ପଚରାଗଲା ତାଙ୍କର Waiting for Godot ନାଟକର ଗୋଦୋ କିଏ ବା କଣ, ସେ କହିଲେ, ''ମୁଁ ଯଦି ଜାଣିଥାନ୍ତି, ତେବେ ମୁଁ ସେ କଥା ମୋ ନାଟକରେ ହିଁ ସୂଚାଇ ଦେଇଥାନ୍ତି।'' ସେ ଆହୁରି ମଧ୍ୟ କହିଲେ ଯେ ସେ ଯଦି ନିଜର ଲେଖାର ଅର୍ଥ ବାହାର କରନ୍ତି ତା ତାଙ୍କର ଔଦ୍ଧତ୍ୟ ହେବ, କାରଣ ତା ହେଲେ ଧାରଣା ହେବ ଯେ ସେ ନିଜେ ତାଙ୍କର ଲେଖାଠାରୁ ଊର୍ଦ୍ଧ୍ୱରେ। ସେହି ଭଳି The Oldman and the Sea ବିଷୟରେ ହେମିଙ୍ଗୱେ କହିଥିଲେ, ଏଥିରେ କୌଣସି ସିମ୍ବଲିଜମ ବା ପ୍ରତୀକାତ୍ମକତା ନାହିଁ। ସମୁଦ୍ର ହେଉଛି ସମୁଦ୍ର, ବୁଢ଼ା ଲୋକଟି ବୁଢ଼ା ଲୋକ। ତା ବାହାରେ ଯଦି କିଛି ଅଛି, ତେବେ ତାହା ଆପଣଙ୍କ ଆଖିରେ।

ରବୀନ୍ଦ୍ରନାଥଙ୍କୁ ତାଙ୍କର ଶାହଜାହାନ କବିତାର କେତୋଟି ଧାଡ଼ି ବୁଝାଇବାକୁ କୁହାଯିବାରେ ସେ ପ୍ରମଥନାଥ ବିଶିଙ୍କୁ ପତ୍ରରେ ଲେଖିଥିଲେ, କବିତା ଲେଖିଛି ବୋଲି ତାର ମାନେ ସଂପୂର୍ଣ୍ଣ ବୁଝିଛି, ଏ କଥା ମନେ କରିବାର କୌଣସି ହେତୁ ନାହିଁ। ମନରୁ ଯେତେବେଳେ କଥାଗୁଡ଼ିକ ସଦ୍ୟ ଉତ୍ସାରିତ ହେଉଥିଲା, ସେତେବେଳେ ନିଶ୍ଚୟ ମାନେର ଇଙ୍ଗିତ ପ୍ରଚ୍ଛନ୍ନ ଥିଲା। ସେହି ଅନ୍ତର୍ଯ୍ୟାମୀର କାମ ଶେଷ ହେବା ପରେ ସେ ପଳାଇ ଯାଇଛି। ରବୀନ୍ଦ୍ରନାଥଙ୍କର ଏ କଥା ଅନେକଟା ବ୍ରାଉନିଙ୍ଗଙ୍କ ଉତ୍ତର ଭଳି।

ଶେଷ କାଳରେ କିନ୍ତୁ ଅଧ୍ୟାପକ ଭକ୍ତମାନଙ୍କର ଅନୁନୟ ବିନୟରେ ବିଚଳିତ ହୋଇ ରବୀନ୍ଦ୍ରନାଥ ନିଜର କବିତାର ବ୍ୟାଖ୍ୟା ଦେଉଥିଲେ । ଏ ବ୍ୟାଖ୍ୟା କିନ୍ତୁ ସବୁବେଳେ ସମସ୍ତଙ୍କର ଗ୍ରାହ୍ୟ ହେଉ ନଥିଲା । ଏ ଭଳି ଭାବେ ନିଜର ଉଦ୍ୟମ ଓ ସମୟର ଅପବ୍ୟବହାର କରୁଥିବାରୁ ନୀରଦ ଚନ୍ଦ୍ର ଚୌଧୁରୀ ତାଙ୍କର 'ଆତ୍ମଘାତୀ ରବୀନ୍ଦ୍ରନାଥ' ବହିରେ ରବୀନ୍ଦ୍ରନାଥଙ୍କୁ ସମାଲୋଚନା କରିଛନ୍ତି ।

କବିମାନଙ୍କୁ ଏ ଭଳି ବ୍ୟାଖ୍ୟା ଦେବା ପାଇଁ ଅନୁରୋଧ କରିବାର ଗୋଟିଏ କାରଣ ବୋଧହୁଏ କବିତାର ଦୁର୍ବୋଧ୍ୟତା । ଏ ବିଷୟରେ ଆମର ରମାକାନ୍ତ ରଥ କଣ କହୁଛନ୍ତି ଦେଖାଯାଉ । ତାଙ୍କର କବିତା 'ବିମାନ ଦୁର୍ଘଟଣାରେ ମୃତ୍ୟୁ' କବିତା ବିରୁଦ୍ଧରେ ଦୁର୍ବୋଧ୍ୟତା ଅଭିଯୋଗ ଆସିବାର ସମ୍ଭାବନା ବେଶି ଥିବାରୁ ସେ ନିଜେ ଏ କବିତାର ଦୀର୍ଘ ଆଲୋଚନା କରିଛନ୍ତି । ବିମାନକୁ ଦେହର ପ୍ରତୀକ ବୋଲି କହି ସେ କବିତାର ଧାଡ଼ିରୁ ଧାଡ଼ି ବ୍ୟାଖ୍ୟା କରିଛନ୍ତି, କିନ୍ତୁ ୧୩୧ ଧାଡ଼ି ପର୍ଯ୍ୟନ୍ତ ବ୍ୟାଖ୍ୟା କରିବା ପରେ ସେ ନିଜେ ମାନିଛନ୍ତି ଯେ ଏହା କେତେ ଦୂର କାମରେ ଲାଗିବ ସେ କଥା ସେ କହି ପାରୁନାହାନ୍ତି !

କବିତା ଯେ ଦୁର୍ବୋଧ୍ୟ, ଏ ଅପବାଦ କିଛି ନୂଆ କଥା ନୁହେଁ । ରୀତିଯୁଗର କବିମାନଙ୍କର କବିତାରେ ଶବ୍ଦର ଦୁର୍ବୋଧ୍ୟତା ଥିଲା, ଆଧୁନିକ କବିତାରେ ଆସିଲା ଭାବର ଦୁର୍ବୋଧ୍ୟତା । ଉପେନ୍ଦ୍ର ଭଞ୍ଜ ଆଦି କବି ସଂସ୍କୃତ ଶବ୍ଦ ବହୁଳ ଅଳଙ୍କାରମଣ୍ଡିତ କାବ୍ୟ ଲେଖୁଥିଲେ ଯାହା ରାଜ ସଭାରେ ପଣ୍ଡିତମାନେ ବ୍ୟାଖ୍ୟା କରି ବୁଝାଉଥିଲେ । 'ବିଲେ ଗାଏ ଚଷା ଅନ୍ତଃପୁରେ ଯୋଷା' ଉକ୍ତିଟି ଥିଲା ଗୀତକୁ ଗାଇବା ବିଷୟରେ ମାତ୍ର, ବୁଝିବା ବାହାରେ । ପରବର୍ତ୍ତୀ ସମୟରେ ଦାସକାଠିଆ ଓ ପାଲାଗାୟକମାନେ ଏହି ସବୁ ଦୁର୍ବୋଧ୍ୟ କବିତାକୁ ସାଧାରଣରେ ବୁଝାଇବାର ଦାୟିତ୍ୱ ନେଲେ ।

ଆଧୁନିକ କବିତା ବୁଝାଇବା ପାଇଁ ଏପରି କେହି ପାଲାବାଲା ନ ଥିବାରୁ ଏ ଦାୟିତ୍ୱ ପଡ଼େ ସମାଲୋଚକ ଓ କ୍ଲାସ ଘରେ ଶିକ୍ଷକଙ୍କ ଉପରେ । ଇଂରେଜୀ କବିତାର ଦୁର୍ବୋଧ୍ୟତା ଆରମ୍ଭ କରିଥିବାର ଶ୍ରେୟ ଦିଆଯାଏ ଇଲିଅଟଙ୍କୁ । କବି କାର୍ଲସ ଉଇଲିଆମ୍‌ସ୍‌ଙ୍କ ଭାଷାରେ ଇଲିଅଟ କବିତାକୁ କ୍ଲାସ ଘରକୁ ପଠାଇଦେଲେ । ପୃଥିବୀର ସବୁ କବିଙ୍କ ଉପରେ ଇଲିଅଟଙ୍କର ଏତେ ପ୍ରଭାବ ପଡ଼ିଲା ଯେ ଦୁର୍ବୋଧ୍ୟ କବିତା ହିଁ ଆଦର୍ଶ ଓ ମାନକ ହୋଇଗଲା । ପାଠକମାନେ ମଧ୍ୟ କବିତାରେ ଏହି ପ୍ରଭାବକୁ ମାନି ନେଲେ । ସେମାନେ ବର୍ତ୍ତମାନ କବିତାର ଦୁର୍ବୋଧ୍ୟତାକୁ ବିରକ୍ତି ଓ ଅସହିଷ୍ଣୁତାର ସହିତ ଦେଖିବା ବେଳେ ସହଜରେ ବୁଝି ହେଉଥିବା କବିତାକୁ ନୀଚ ଦୃଷ୍ଟିରେ ଦେଖିଲେ ।

କବିତାକୁ ବ୍ୟାଖ୍ୟା କରିବା ବେଳେ ଶିକ୍ଷକ ସମାଲୋଚକମାନେ ନିଜର ମତ ଓ ପାଣ୍ଡିତ୍ୟକୁ ଅନ୍ୟମାନଙ୍କ ଉପରେ ଲଦି ଦେବାକୁ ଚେଷ୍ଟା କରନ୍ତି । ଫକୀରମୋହନ ସେନାପତିଙ୍କ ସ୍କୁଲ ପଣ୍ଡିତେ କିପରି ପଢ଼ାଉଥିଲେ ସେ ବିଷୟରେ ତାଙ୍କର ବର୍ଣ୍ଣନା ଏପରି :

କୌଣସି ଦିନରେ ଗୋଟିଏ କାକ ଖଣ୍ଡିଏ ମାଂସ ମୁଖରେ ଧରି ଗୋଟାଏ ବୃକ୍ଷ ଡାଳରେ

ବସିଥିଲା । ଏହାକୁ ବୁଝାଇବାକୁ ଯାଇ ପଣ୍ଡିତେ କହନ୍ତି, "କୌଣସି ଦିନରେ କି କେହି ଅହ୍ନରେ, ଗୋଟିଏ କାକ କି ଏକ ଗୋଟି ବାୟସ, ଖଣ୍ଡିଏ ମାଂସ କି ଖଣ୍ଡିଏ ପିଶିତ ପଙ୍କ, ମୁଖରେ ଧରି କି ବଦନରେ ଧାରଣ କରି, ଗୋଟିଏ ବୃକ୍ଷ କି ଏକ ମହୀରୂହ, ଡାଳରେ କି ଶାଖାରେ, ବସିଥିଲା କି ଉପବେଶନ କରିଥିଲା । ଇତ୍ୟାଦି ।

ଏ ଭଳି ଅର୍ଥ ବୁଝାଇଲେ ଶେଷରେ ପିଲାଙ୍କୁ କିପରି ପାଠ ପଢ଼ାଯିବ ତାର ଏକ ଚରମ ଦୃଷ୍ଟାନ୍ତ ନିମ୍ନଲିଖିତ 'ସରଳାର୍ଥ' କବିତା :

ଦିନ ମାନେ ଅହ୍ନ      କାକ ମାନେ ବାୟସ
ମୁଖ ମାନେ ବଦନ      ମାଂସ ତରସ ।
ଓଟ ମାନେ ଧୂସକ      ପେଚା ମାନେ ଧୂକ
ସାପ ମାନେ ଜିହ୍ମଗ      ହେଟା ବାଘ ବୃକ ।
ବାର୍ହା ମାନେ ଘୃଷ୍ଟି      ବଗ ମାନେ କହ୍ୱ
ମାଙ୍କଡ଼ ପ୍ଳବଗ      ମୟୂର ବର୍ହ ।
ଅଧୀନ ନିଘ୍ନ ଓ କଠୋର ତିଗ୍ମ
ପାଠ ସବୁ ଏଥରକ ସରଳ ଅଜିହ୍ମ । (ଆଳକୁଚି ମାଳୁକୁଚି, ୧୯୯୩)

ଯଦି ଗୋଟିଏ ସାଧାରଣ ବାକ୍ୟ ଓ ଶବ୍ଦକୁ ଅର୍ଥ କରିବା ସମୟରେ ଏପରି ସଂସ୍କୃତୀକରଣ କରାଯାଉଥିଲା, ସାଧାରଣ ଭାବକୁ ବୁଝାଇବା ବେଳେ ତାକୁ ଏକ ଆଧ୍ୟାତ୍ମିକ ରୂପ ଦେବାର ମଧ୍ୟ ଉଦାହରଣ ଅଛି । ଓମାର ଖୈୟାମଙ୍କ ରୁବାଇୟତର ପ୍ରଥମ ଚାରି ଧାଡ଼ିର ଆକ୍ଷରିକ ଅନୁବାଦ ହେବ ଏପରି :

ସକାଳ ଫିଙ୍ଗିଲା ଶିଳା ରାତିର ପାତ୍ରରେ
ତାରା ହେଲେ ବିତାଡ଼ିତ, ଜାଗ ଆଉ ଦେଖ
ସୁଲତାନୀ ମିନାରକୁ ପ୍ରାଚ୍ୟର ଲୁବ୍ଧକ
ବାନ୍ଧି ନେଲା ଆସି ତାର ଜ୍ୟୋତିର ଫାଶରେ ।

ଯୋଗାନନ୍ଦ ପରମହଂସ ଏ ଧାଡ଼ିମାନଙ୍କର ଏ ଭଳି ବ୍ୟାଖ୍ୟା କରିଛନ୍ତି :

ପ୍ରଜ୍ଞାର ସକାଳ ତମର ଅଜ୍ଞତାର ଅନ୍ଧାର ପାତ୍ରକୁ ଆଧ୍ୟାତ୍ମିକ ଶୃଙ୍ଖଳାର ଶିଳା ନିକ୍ଷେପ କଲା । ଐଶ୍ୱରୀୟ କ୍ଷମତାର ଏ ଭଳି ଅସ୍ତ୍ର ସେ ପାତ୍ରକୁ ଭାଙ୍ଗିଦେଇ ପାର୍ଥିବ ବାସନାର ଲିଭି ଆସୁଥିବା ତାରାଙ୍କୁ ପଳାଇବାକୁ ବାଧ୍ୟ କରିବ । ଇତ୍ୟାଦି ।

ଏହାର କେତେ ଶହ ବର୍ଷ ପୂର୍ବରୁ ଆମର ଭାଗବତକାର ଜଗନ୍ନାଥ ଦାସ ମଧ୍ୟ ଏକା ଭଳି ମାର୍କଣ୍ଡ ଦାସଙ୍କ ସରଳ ସୁବୋଧ 'କେଶବ କୋଇଲି'ର ତାତ୍ତ୍ୱିକ ବ୍ୟାଖ୍ୟା କରିଛନ୍ତି :

କେଶବ କୋଇଲିର ପ୍ରଥମ ଦୁଇ ଧାଡ଼ି ହେଉଛି :

କୋଇଲି ଲୋ କେଶବ ଯେ ମଥୁରାକୁ ଗଲା
କାହା ବୋଲେ ଗଲା ପୁତ୍ର ବାହୁଡ଼ି ନଇଲା ।

ଜଗନ୍ନାଥ ଦାସଙ୍କ 'ଅର୍ଥ କୋଇଲି'ରେ ଏହାର ବ୍ୟାଖ୍ୟା :

ଶ୍ରୀ ଭଗବାନୁବାଚ

କୋଇଲି ବୋଲିଣ ପାର୍ଥ ଜୀବଟିକୁ କହି
ସେହି ଜୀବ ମୁହିଁ ଜାଣ ସର୍ବତ୍ର ଅଛଇ।
ଆପେ ଆସିଥିଲା ଜୀବ ଆପେ ଚଳିଗଲା
ସେହି ପୁତ୍ର ଗୋଟି ଆଉ ବାହୁଡ଼ି ନଇଲା।
ଏହି ପୁତ୍ର ଗୋଟି ଯହୁଁ ବାହୁଡ଼ି ନଇଲା
ମଥୁରା ସ୍ୱରୂପ ପିଣ୍ଡ ପଡ଼ିଣ ରହିଲା । ଇତ୍ୟାଦି ।

ତାଙ୍କର ବ୍ୟାଖ୍ୟା ଅନୁସାରେ ଦୂତ ଅକ୍ରୁର= ପରମ, ଯାତ୍ରା = ଖେଳଘର ସଂସାର, ନିଶାକାଳ = ଚକ୍ଷୁ, ଚାନ୍ଦ = ପରମାନନ୍ଦର ଘର, ଦଉଡ଼ି = ମାୟା ସଂସାର, ବହ = ପ୍ରକୃତି ଇତ୍ୟାଦି ଇତ୍ୟାଦି।

ଗୋଟିଏ ଲେଖାର କିପରି ବିବିଧ ଅର୍ଥ ସମ୍ଭବ, ସାହିତ୍ୟରେ ତାର ଅନେକ ଉଦାହରଣ ଅଛି। ଆମ ଓଡ଼ିଆରେ ଏପରି ଦୁଇଟି ଅତି ଜଣାଶୁଣା ଓ ଲୋକପ୍ରିୟ ଲେଖା ହେଲା ଉପେନ୍ଦ୍ର ଭଞ୍ଜଙ୍କ ବୈଦେହୀଶ ବିଳାସର 'ବାବୁ ନାକ ଶିରୀ ଦାନ' ଓ ଫକୀରମୋହନଙ୍କ ଆତ୍ମଚରିତର 'ପାନଗୁଆ' ପ୍ରସଙ୍ଗ। ରାମଚନ୍ଦ୍ରଙ୍କ ଲକ୍ଷ୍ମଣଙ୍କୁ ପଠାଇଥିବା ବାର୍ତ୍ତାରେ ସୂର୍ପଣଖାକୁ ସ୍ୱର୍ଗର ଶ୍ରୀ ବି ଦେଇ ହେବ ଏବଂ ତାର ନାକ ବି ଛେଦ ହେବ। ଫକୀରମୋହନଙ୍କର ଭୋଳାନାଥ ଖମାରିଆକୁ ଦେଇଥିବା ଚିଠିରେ ପାନ ଗୁଆ ପଠାଇ ଆଖୁ କିଆରୀକୁ ପାଣି ମଡ଼ାଇବା କଥା ଅଛି, ଏବଂ ଅଛି ସୈନ୍ୟ ଓ·ଗୁଳି ପଠାଇ ଆକ୍ରମଣ କରିବାର ନିର୍ଦ୍ଦେଶ।

ଲେଖାରୁ ଅର୍ଥ ବା କଦର୍ଥ ବାହାର କରି ଲେଖାକୁ ସମାଲୋଚନା କରିବାର ଦୃଷ୍ଟାନ୍ତ ମଧ୍ୟ ଅଛି। ଆମର ରାଧାନାଥ ରାୟ ଲେଖିଥିବା 'ତୁଳସୀ ସ୍ତବକ'ର ଦୁଇଧାଡ଼ି ହେଲା :

ସହନ୍ତି ଧାରାପାତ ଶଇଳ ଗଣ
ଖଳ ବଚନ ଯଥା ସହେ ସୁଜନ।

ସେ ସମୟରେ ରାଧାନାଥଙ୍କର କଠୋର ସମାଲୋଚନା ହେଉଥିଲା ଶିକ୍ଷା ବିଭାଗୀୟ କର୍ତ୍ତା ଭାବରେ ତାଙ୍କର ପକ୍ଷପାତିତାର ଓ ତାଙ୍କ ଲେଖା ପାଇଁ। ତାଙ୍କର ଶତ୍ରୁପକ୍ଷ ଉପର ଦୁଇଧାଡ଼ିରୁ ଅର୍ଥ କଲେ ଯେ ରାଧାନାଥ ତାଙ୍କର ସମାଲୋଚକମାନଙ୍କୁ ଖଳଲୋକ ବୋଲି କହିଛନ୍ତି। ପ୍ରକୃତ ପକ୍ଷରେ କିନ୍ତୁ ଏହି ଦୁଇଧାଡ଼ି ତୁଳସୀ ଦାସଙ୍କର ନିମ୍ନ ପଦର ଅନୁବାଦ ମାତ୍ର ଥିଲା :

ବୁନ୍ଦ ଆଘାତ ସହ ହିଁ ଗରି କୈସେ
ଖଳକେ ବଚନ ସନ୍ତ ସହେ ଜୈସେ।

ସେହି ଭଳି ରାଧାନାଥ 'ଶିବାଜୀଙ୍କର ଉତ୍ସାହ ବାକ୍ୟ'ରେ ଲେଖିଥିବା ଦୁରନ୍ତ ଯବନକୁ

ଶତ୍ରୁମାନେ ଦୁରନ୍ତ ଇଂରେଜ ଅର୍ଥ ବାହାର କରି ତାଙ୍କୁ ଅସୁବିଧାରେ ପକାଇଥିଲେ।

ଏ ସବୁ ସମସ୍ୟାର ମୂଳ କାରଣ ହେଲା ଯେ ସାହିତ୍ୟିକ ଲେଖାରେ, ବିଶେଷରେ କବିତାରେ, ବିଭିନ୍ନ ବ୍ୟାଖ୍ୟାର ସମ୍ଭାବନା ଥାଏ। ଇଲଅଟ ଏ ବିଷୟରେ କହିଥିଲେ, As for the meaning of the poem as a whole, it is not exhausted by any explanations, for the meaning is what the poem means to different, sensitive readers. (The Frontiers of Criticism) କବିତାରେ ଏହାକୁ କହିଲେ ହେବ :

କବିତା ପଢ଼ନ୍ତି କିଛି ଚନ୍ଦ୍ରାହତ ଲୋକ<br>
ପଢ଼ନ୍ତି, ଏବଂ କବି ସହିତ ମିଶି<br>
ସେମାନେ ବି କବିତାକୁ ତିଆରି କରନ୍ତି...<br>
ଯିଏ ତାକୁ ଯେତିକି ବୁଝେ<br>
ବ୍ୟଂଜନା ଓ ଦୁର୍ବୋଧ୍ୟତା ମଝିରେ<br>
କବିତାର ଯଥାର୍ଥତା ସେତିକି ମାତ୍ର<br>
ତା ବାହାରେ ଆଉ କିଛି ନୁହେଁ ।

(କବିତାର ଅର୍ଥ, ପରିକ୍ରମା, ୧୯୯୮)

ଏତେ କଥାକୁ ଗାନ୍ଧୀ ତାଙ୍କର ଗୀତା ଭାଷ୍ୟର ମୁଖବନ୍ଧରେ ନିଜର ସ୍ୱଭାବ ସୁଲଭ ଅତି ସରଳ ଭାଷାରେ କହିଥିଲେ, A poet's meaning is limitless।

ସାହିତ୍ୟ ସମେତ ପ୍ରତ୍ୟେକ କଳାକୃତିର ବହୁବିଧ ବ୍ୟଂଜନା ବା ସମ୍ଭାବନା ଥାଏ। ତାକୁ ଗୋଟିଏ ଅର୍ଥ ଦେଲେ ତାର ଏ ସବୁ ସମ୍ଭାବନା ସୀମିତ ହୋଇଯାଏ, ଯାହା ଅତ୍ୟନ୍ତ ଅନୁଚିତ। ପାଠକକୁ ତାର ସ୍ୱାଧୀନ ଚିନ୍ତା ଉପରେ ଛାଡ଼ି ଦେଲେ ସେ ଲେଖାଟିର ବିଭିନ୍ନ ଅର୍ଥ ଓ ସତ୍ୟକୁ ତଉଲି ନିଜର ନିର୍ଣ୍ଣୟରେ ପହଞ୍ଚିବ। ପଣ୍ଡିତ ଓ ବିଦ୍ୱାନମାନଙ୍କର ବ୍ୟାଖ୍ୟା ଲେଖାର ଅର୍ଥକୁ ସଂକୀର୍ଣ୍ଣ ହିଁ କରିଦେବ। ଆମେରିକୀ ଲେଖିକା ସୁଜାନ ସୋଣ୍ଟାଗଙ୍କ ଭାଷାରେ, ବ୍ୟାଖ୍ୟା ବା ଅର୍ଥ ନିର୍ଣ୍ଣୟ କରିବା ହେଉଛି କଳା ଉପରେ ପାଣ୍ଡିତ୍ୟର ପ୍ରତିଶୋଧ।

କୌଣସି କବିତା ନିଜର ସଂପୂର୍ଣ୍ଣ ବା ଶେଷକଥା ନୁହେଁ। ପ୍ରତିଟି ପାଠକ କବିତାଟିର ବ୍ୟାପ୍ତିକୁ ଆହୁରି ପ୍ରସାରିତ କରିଦିଏ। କବିତାରେ ଏତେ ସମ୍ଭାବନା ଥିବାବେଳେ ତାକୁ ଆମେ ଗୋଟିଏ ମାତ୍ର ଅର୍ଥ ଦେଇ ସୀମିତ କରିବା କାହିଁକି ?

*ଜୁନ, ୨୦୧୫*

# ସାକ୍ଷାତ୍‌କାର-୧

(କୌଣସି ସାକ୍ଷାତ୍‌କାର ପ୍ରାର୍ଥୀ ଦେଇଥିବା ପତ୍ର ଓ ପ୍ରଶ୍ନମାଳାର ଉତ୍ତର)

ସେପ୍ଟେମ୍ବର ୮, ୧୯୯୭

ପ୍ରିୟବଂଧୁ,

ମୁଁ ତମେ ଦେଇଥିବା ପ୍ରଶ୍ନମାଳାର ଉତ୍ତର ଲେଖିବା ଆରମ୍ଭ କରିଥିଲି, କିନ୍ତୁ ଦେଖିଲି ଯେ ନିମ୍ନଲିଖିତ କାରଣମାନଙ୍କ ଯେଗୁ ସେ ସବୁର ଉତ୍ତର ଦେବା ସମ୍ଭବ ହେବ ନାହିଁ :

୧) ମୁଁ ସବୁବେଳେ ବିଶ୍ୱାସ କରିଛି ଯେ ଜଣେ ଲେଖକର(ବିଶେଷରେ ସୃଜନଶୀଳ ଲେଖକର) ଯାହା ବକ୍ତବ୍ୟ, ତାକୁ ସେ ନିଜର ଗଳ୍ପ, କବିତା, ଉପନ୍ୟାସରେ କହିବା ଉଚିତ, ତା ବାହାରେ ନିଜ ଲେଖା ଉପରେ ଆଲୋଚନା କରି ନୁହେଁ। ତେଣୁ ମୁଁ ମୋର କବିତା ବିଷୟରେ କୌଣସି ପାଦଟୀକା ଦେବାକୁ ଚାହେଁ ନାହିଁ, କବିତାରେ ଯାହା କହିଛି, ସେତିକି।

ତା ବ୍ୟତୀତ, କୌଣସି ଲେଖା ପ୍ରକାଶ ପାଇଲା ପରେ ସେଇଟି ସର୍ବସାଧାରଣଙ୍କ ସଂପତ୍ତି, ଲେଖକର ନିଜର ମନ୍ତବ୍ୟ କୌଣସି ମତେ ଅନ୍ୟମାନଙ୍କର ମନ୍ତବ୍ୟ ଅପେକ୍ଷା ନିର୍ଭରଯୋଗ୍ୟ ବା ଗୁରୁତ୍ୱପୂର୍ଣ୍ଣ ନୁହେଁ। ଲେଖକର ନିଜ ଲେଖା ବିଷୟରେ ମତ ଅପ୍ରାସଂଗିକ ଏବଂ ଅନେକ ସମୟରେ ଭ୍ରମାତ୍ମକ ଓ ଅଯଥାର୍ଥ। ଅନ୍ୟମାନଙ୍କର(ପାଠକ, ସମାଲୋଚକ) ବ୍ୟକ୍ତବ୍ୟ ହିଁ ଲେଖାର ପ୍ରକୃତ ମୂଲ୍ୟାୟନ। ମୁଁ ଯେତେବେଳେ ଯାହା ଇଚ୍ଛା ହୋଇଛି ଲେଖୁଛି। ସାହିତ୍ୟ(ଅବଶ୍ୟ ନିଜର ଲେଖା) ବିଷୟରେ ତାତ୍ତ୍ୱିକ ଦୃଷ୍ଟିକୋଣରୁ ଭାବିବାକୁ ଚେଷ୍ଟା କରି ନାହିଁ, ତଥା ସେ ଭଳି ଭାବିବାରେ ମୋର ଆଗ୍ରହ ନାହିଁ।

୨) ଲେଖକର ବ୍ୟକ୍ତିଗତ ଜୀବନ ବିଷୟରେ ମୋର ମତ ଯେ ଲେଖାର ବିବେଚନା କରିବା ବେଳେ ତାର ଜୀବନକୁ ଅଲଗା କରି ରଖିବା ଉଚିତ୍। ଲେଖା ଉପରେ ଲେଖକର ଜୀବନର ପ୍ରଭାବ ତ ନିଶ୍ଚୟ ଥିବ, କିନ୍ତୁ ଲେଖାର ବିଚାର ବେଳେ ମୋ ମତରେ ତାହା ଅପ୍ରାସଙ୍ଗିକ।

୩) ସାଂପ୍ରତିକ ଓଡ଼ିଆ ସାହିତ୍ୟ ବିଷୟରେ କୌଣସି ମତ ଦେବାକୁ ମୁଁ ସାହସ କରୁ ନାହିଁ, କାରଣ ବିଧିବଦ୍ଧ ଭାବରେ ମୁଁ ଏ ସବୁ ପଢ଼ିବାର ସୁଯୋଗ ପାଇ ନାହିଁ।

ମୁଁ ଯାହା କିଛି ପଢ଼ିଛି, ଅତ୍ୟନ୍ତ ଅନିୟମିତ ଓ ଅବ୍ୟବସ୍ଥିତ ଭାବେ। ତେଣୁ ସେ ବିଷୟରେ ମତ ଦେବା ମୋ ପକ୍ଷରେ ଧୃଷ୍ଟତା ହେବ। ସେହିପରି ସାହିତ୍ୟର ତାତ୍ତ୍ୱିକ ଦିଗ ଉପରେ ମଧ୍ୟ ମୋର କୌଣସି ଅଧ୍ୟୟନ ନାହିଁ। ତେଣୁ ଆଧୁନିକ କବିତାର ଭାବବୋଧ ଓ ଗତିବିଧି ଇତ୍ୟାଦି ବିଷୟରେ ମତଦେବା ଅବସ୍ଥାରେ ମୁଁ ନାହିଁ।

ସେଥିପାଇଁ ତମେ ମତେ କ୍ଷମା କରିବ ବୋଲି ଆଶା।

॥ଇତି॥

ଜଗନ୍ନାଥ ପ୍ରସାଦ ଦାସ

(ପତ୍ର : ସେପ୍ଟେମ୍ବର, ୧୯୯୭)

# ସାକ୍ଷାତ୍କାର : ୨

ପ୍ରଶ୍ନ : ଲେଖକ ଜୀବନର ପୃଷ୍ଠଭୂମି ବିଷୟରେ କିଛି କହିବେ ? ଯଦି କୌଣସି ନିର୍ଦ୍ଦିଷ୍ଟ ଘଟଣା / ପରିସ୍ଥିତି ଉପରେ ଏହା ଆଧାରିତ ତାର ଏକ ସଂକ୍ଷିପ୍ତ ସୂଚନା ଦିଅନ୍ତୁ ।

ଉତ୍ତର : ଲେଖକଙ୍କର ଜୀବନ ମଧ୍ୟ ଅନ୍ୟ ସମସ୍ତଙ୍କ ଜୀବନ ଭଳି । ଲେଖକ ପାଇଁ କୌଣସି ବିଶେଷ ପୃଷ୍ଠଭୂମି ନ ଥାଏ । ଲେଖକର(ଅନ୍ତତଃ ମୋର) ଲେଖକ ଜୀବନ ତାର ସଂପୂର୍ଣ୍ଣ ଜୀବନ ଉପରେ ଆଧାରିତ । କୌଣସି ନିର୍ଦ୍ଦିଷ୍ଟ ଘଟଣା ବା ପରିସ୍ଥିତି ଉପରେ ନୁହେଁ ।

ପ୍ରଶ୍ନ : ପ୍ରଥମ ପ୍ରକାଶିତ ଲେଖା ଓ ସେ ସଂକ୍ରାନ୍ତୀୟ ଅନୁଭବ କିପରି ଥିଲା ?

ଉତ୍ତର : ସ୍କୁଲ କଲେଜ ବେଳେ(୧୯୫୫ ପର୍ଯ୍ୟନ୍ତ) ମୋର କିଛି କବିତା ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଥିଲା । କିନ୍ତୁ ମୋ ଦୃଷ୍ଟିରେ ସେ ସବୁର କୌଣସି ସାହିତ୍ୟିକ ମହତ୍ୱ ନାହିଁ । ତା ପରେ ମୁଁ ୧୯୭୦ରୁ ପୁଣି ଲେଖିବା ଆରମ୍ଭ କରିଥିଲି । 'ପ୍ରଥମ ପୁରୁଷ'(୧୯୭୧) ମୋର ପ୍ରଥମ କବିତା ସଂକଳନ ।

ପ୍ରଶ୍ନ : ଆପଣ ଗଳ୍ପ,କବିତା, ନାଟକ ଇତ୍ୟାଦିରେ ଲେଖନୀ ଚାଳନା କରିଥିଲେ ହେଁ ଉପନ୍ୟାସ କାହିଁକି ଲେଖିଲେ ନାହିଁ ? ନିକଟରେ ଅଥବା ଭବିଷ୍ୟତରେ ଉପନ୍ୟାସ ରଚନାର କୌଣସି ଯୋଜନା ରଖିଛନ୍ତି କି ?

ଉତ୍ତର : କିଛି ବର୍ଷ ତଳେ ମୁଁ ଗୋଟିଏ ଉପନ୍ୟାସ ଲେଖା ଆରମ୍ଭ କରିଥିଲି । ତାର ପ୍ରଥମ ପରିଚ୍ଛେଦ 'କଥା' ପତ୍ରିକା ମଧ୍ୟ ପ୍ରକାଶ ପାଇଥିଲା । ବିଭିନ୍ନ କାରଣରୁ ସେହି ଲେଖା ବିଶେଷ ଅଗ୍ରସର କରିନାହିଁ ।

ପ୍ରଶ୍ନ : ଆପଣଙ୍କର ବହୁ ପଠିତ ଓ ଆଲୋଚିତ ଗ୍ରନ୍ଥ 'ଦେଶ କାଳ ପାତ୍ର' କଣ ଏକ ସ୍ୱୟଂ ସଂପୂର୍ଣ୍ଣ ଉପନ୍ୟାସ ? ଯଦି ହଁ – ଏପରି ଏକ ଗ୍ରନ୍ଥ ରଚନା ପଛରେ ଆପଣଙ୍କର କି ଉଦ୍ଦେଶ୍ୟ ଥିଲା ?

ଉତ୍ତର : 'ଦେଶ କାଳ ପାତ୍ର'କୁ ସ୍ୱୟଂ ସଂପୂର୍ଣ୍ଣ ଉପନ୍ୟାସ କହି ହେବ କି ନାହିଁ, ତା ସାହିତ୍ୟିକମାନେ କହି ପାରିବେ । କିଛି ବର୍ଷ ତଳେ ଜୋଆନା ଉଲିଆମ୍ସ୍ ଓ ମୁଁ ଓଡ଼ିଶାର ଜଣେ ଊନବିଂଶ ଶତାବ୍ଦୀର ଚିତ୍ରକର(ରଘୁନାଥ ପୃଷ୍ଟି, ମୁଣ୍ଡ ମରାଇ, ଧରାକୋଟ)ଙ୍କ ବିଷୟରେ ଗବେଷଣା କରୁଥିଲୁ । ( ଏହି ଗବେଷଣା ପୁସ୍ତକଟି ପାମଲିଫ ମିନିଏଚର୍ସ ନାମରେ ପ୍ରକାଶ ପାଇସାରିଛି । )। ସେହି ସନ୍ଦର୍ଭରେ ମୁଁ

ସେତେବେଳେର ଓଡ଼ିଶା ବିଷୟରେ ପଢ଼ାପଢ଼ି କରିଥିଲି ଏବଂ ଊନବିଂଶ ଶତାବ୍ଦୀର ଓଡ଼ିଶା ମତେ ଅତ୍ୟନ୍ତ ଚିତ୍ତାକର୍ଷକ ମନେ ହୋଇଥିଲା। ମୁଁ ସେହି ସବୁ ସାମଗ୍ରୀକୁ ନେଇ 'ଦେଶ କାଳ ପାତ୍ର' ଲେଖିଥିଲି।

ପ୍ରଶ୍ନ : ମୋର ଯାହା ମନେ ହେଉଛି 'ଦେଶ କାଳ ପାତ୍ର'ରେ ଉଲ୍ଲିଖିତ ଅଧିକାଂଶ ଘଟଣା ସତ୍ୟ। କିନ୍ତୁ ସେହି ସତ୍ୟ ସନ୍ଧାନର ଉତ୍ସ ବିଷୟରେ ଆପଣ ନୀରବ ରହିଛନ୍ତି ପୁସ୍ତକଟିରେ। ଏପରି କାହିଁକି ?

ଉତ୍ତର : ମୁଁ ପ୍ରଥମେ ଭାବିଥିଲି ଉଭୟ ସତ୍ୟ ଏବଂ କଳ୍ପନାର ଆଧାର ଉପରେ ବହିଟି ଲେଖିବି, ଯେପରି କି ଆମେରିକାର୍ ଉପନ୍ୟାସ 'ରାଗ୍ ଟାଇମ୍'। କିନ୍ତୁ ସେତେବେଳର ପ୍ରକୃତ ଘଟଣାମାନ ଏତେ ନାଟକୀୟ ଓ ରୋଚକ ଥିଲା ଯେ ଶେଷ ପର୍ଯ୍ୟନ୍ତ, ମୁଁ କେବଳ ସତ୍ୟ ଘଟଣାକୁ ନେଇ ହିଁ ଲେଖିଲି। 'ଦେଶ କାଳ ପାତ୍ର' ସାଧାରଣ ପାଠକଙ୍କ ପାଇଁ ଉଦ୍ଦିଷ୍ଟ, ବିଦ୍ୱାନମାନଙ୍କ ପାଇଁ ନୁହେଁ ଏବଂ ଏହାର ବର୍ଣ୍ଣନା କାହାଣୀ ଶୈଳୀରେ, ଗବେଷଣା ପ୍ରବନ୍ଧ ଭଳି ନୁହେଁ। ସେଥିପାଇଁ ଏଥିରେ ବିବରଣୀମାନଙ୍କର ଉତ୍ସ ଦିଆ ଯାଇ ନାହିଁ।

ପ୍ରଶ୍ନ : ମୂଳତଃ ଆପଣ ଜଣେ କବି ଭାବରେ ପ୍ରତିଷ୍ଠା ପାଇଲେ। ପ୍ରତିଷ୍ଠିତ କବିର ଗୌରବ ଅକ୍ଷୁଣ୍ଣ ରହିଥିବା ବେଳେ ଆପଣ କେଉଁ କାରଣ ଯୋଗୁ ଗଳ୍ପ/ନାଟକ କ୍ଷେତ୍ରକୁ ଆସିଲେ ?

ଉତ୍ତର : ମୁଁ ପ୍ରଥମ ଗଳ୍ପ (ଶବ୍ଦ ଭେଦ) ଲେଖିଲି ୧୯୮୦ରେ। ମୋର ମନେ ହେଲା ମୁଁ ଏପରି କିଛି କଥା କହିବାକୁ ଚାହୁଁଛି ଯାହା କବିତାରେ(ଅନ୍ତତଃ ମୁଁ ଯେଉଁ ଭଳି କବିତା ଲେଖୁଥିଲି, ସେଥିରେ) କହିବା ସମ୍ଭବ ନୁହେଁ। ସେଥିପାଇଁ ମୁଁ ଗଳ୍ପରେ ହାତ ଦେଲି। ଅବଶ୍ୟ ତା' ପୂର୍ବରୁ ମୁଁ ନାଟକ ଲେଖିଥିଲି ('ସୂର୍ଯ୍ୟାସ୍ତ ପୂର୍ବରୁ' ୧୯୭୨, ଏବଂ ତା'ର ଅନେକ ପୂର୍ବରୁ ନାଟିକା 'ପୂର୍ବରାଗ', ୧୯୬୦), ହୁଏତ ସେହି କାରଣରୁ । ଗଳ୍ପ ଲେଖିବା ପରେ ଅବଶ୍ୟ ଗୋଟିଏ ନୂଆ କଥା ହେଲା ଯେ ମୁଁ କିଛି ଭିନ୍ନ ପ୍ରକାରର କବିତା ଲେଖିବା ଆରମ୍ଭ କଲି। ସମାଜ ମନସ୍କ ଗଳ୍ପରୁ ସମାଜ ମନସ୍କ କବିତାକୁ ଆସିଲି।

ପ୍ରଶ୍ନ : କ'ଣ କବିତାରେ ଏପରି କିଛି କହିବାକୁ ସୁଯୋଗ ମିଳିଲା ନାହିଁ ନା କବିତା ଉପଯୁକ୍ତ ମାଧ୍ୟମ ହେବ ନାହିଁ ଭାବି ଆପଣ ଏ ନିଷ୍ପତ୍ତି ନେଲେ ? ଆପଣଙ୍କୁ ଛାଡ଼ି ଦେଲେ ସୀତାକାନ୍ତ, ରମାକାନ୍ତ, ରାଜେନ୍ଦ୍ର ଇତ୍ୟାଦି କବିତାରେ ହିଁ ସବୁ କହିବାକୁ ଉଚିତ ମନେ କଲେ। ଏ ବିଷୟରେ ଆପଣ କିଛି କହିବେ କି ?

ଉତ୍ତର : କବିତାରେ ନିଶ୍ଚୟ ସବୁ କିଛି କହି ହେବ ଏବଂ ଅନେକେ ବି ସଫଳତାର ସହିତ ବିଭିନ୍ନ ବିଷୟରେ କବିତା ଲେଖିଛନ୍ତି। ତେବେ ସବୁ କବି ସବୁ ବିଷୟରେ

କବିତା ଲେଖନ୍ତି ନାହିଁ। କେତେକ ବିଷୟ ପାଇଁ ମୁଁ ଭାବିଲି ହୁଏତ କବିତା ଅପେକ୍ଷା ଗଳ୍ପ, ନାଟକ ଭଲ ମାଧ୍ୟମ ହେବ।

ମୋର ଗବେଷଣା ବେଳେ ମୁଁ ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଓଡ଼ିଶାରେ ଖ୍ରୀଷ୍ଟିଆନ୍ ମିଶନାରୀମାନଙ୍କ କାର୍ଯ୍ୟ କଳାପ ବିଷୟରେ ଯେଉଁ ତଥ୍ୟ ସଂଗ୍ରହ କରିଥିଲି, ତାକୁ ନେଇ 'ଦେଶ କାଳ ପାତ୍ର' ଭଳି ଆଉ ଗୋଟିଏ ବହି ନ ଲେଖି ମୁଁ ଭାବିଲି ଯେ ଗୋଟିଏ ନାଟକ ଲେଖିବା ଉପଯୁକ୍ତ ହେବ। ୧୯୯୩ରେ ରଚିତ ନାଟକ 'ସୁନ୍ଦର ଦାସ' ତାରି ପରିଣତି।

ପ୍ରଶ୍ନ : କବି, କଥାଶିଳ୍ପୀ ଓ ନାଟ୍ୟକାର ଭିତରୁ କେଉଁଟି ଆପଣଙ୍କୁ ଅଧିକ ଆକୃଷ୍ଟ କରେ? ଆପଣ ସତକୁ ସତ ନିଜ ଭିତରେ ତିନୋଟି ଅଲଗା ଅଲଗା ବ୍ୟକ୍ତିତ୍ୱର ସନ୍ଧାନ ପାଆନ୍ତି?

ଉତ୍ତର : ଲେଖକର ବ୍ୟକ୍ତିତ୍ୱ ଗୋଟିଏ ମାତ୍ର, ସେ ବିଭିନ୍ନ ପ୍ରକାରର ଲେଖା – କବିତା, ଗଳ୍ପ, ନାଟକ – ଲେଖୁଥାଉ ପଛେ। ତେବେ କବିତାର ମୋର ପ୍ରଥମ ପ୍ରେମ ହୋଇଥିବାରୁ ମୁଁ ନିଜକୁ ପ୍ରଥମେ କବି ଭାବରେ ଭାବିଥାଏ।

ପ୍ରଶ୍ନ : କଂପ୍ୟୁଟର ସହିତ ବହୁ ରାଷ୍ଟ୍ରୀୟ କଂପାନୀମାନଙ୍କର ଏ ଦେଶକୁ ବହୁଳ ପ୍ରବେଶ ପରେ ଓ ଉଚ୍ଚ ଶିକ୍ଷିତ ମେଧା ସଂପନ୍ନ ଯୁବ ସମାଜ ପାଇଁ ଚାକିରି, ବେତନ, ନିରାପତ୍ତାର ପ୍ରଚୁର ସୁଯୋଗ ରହିଥିବା ସତ୍ତ୍ୱେ ଆଇ.ଏ.ଏସ୍ ଆଜି ମଧ୍ୟ ଏ ଦେଶରେ ଏକ ସ୍ୱପ୍ନ, ଅଭିଳାଷ। ଅନେକ ଆଇ.ଏ.ଏସ୍ ନ ପାଇ ସମୁଦାୟ ଜୀବନକୁ ବ୍ୟର୍ଥ ହୋଇଗଲା ଭାବି ସାରା ଜୀବନ ଗ୍ଳାନି ଓ ହୀନମନ୍ୟତା ଭିତରେ କଟାଇ ଥାନ୍ତି। ଅଥଚ ଆପଣ ଏପରି ଏକ ଚାକିରି ଛାଡ଼ି ଦେଲେ! ଏହା ପଛରେ କଣ ସେପରି କିଛି ନିର୍ଦ୍ଦିଷ୍ଟ କାରଣ ଥିଲା? ସାହିତ୍ୟ ସାଧନା ଓ ରଚନା କଣ ସେଥିରୁ ଏକ କାରଣ? ଯଦି ପ୍ରକୃତରେ ସେପରି କୌଣସି ନିର୍ଦ୍ଦିଷ୍ଟ କାରଣ ଥିଲା ତାହା କଣ ଆଇ.ଏ.ଏସ୍ ଛାଡ଼ି ସଫଳ ହୋଇଛି?

ଉତ୍ତର : ଲେଖିବା ପାଇଁ ଚାକିରି ଛାଡ଼ିବି, ଏଭଳି ଇଚ୍ଛା ନିଶ୍ଚୟ ଥିଲା। ଚାକିରି ଛାଡ଼ି ଦେବା ବେଳେ ଭାବିଥିଲି ମୁଁ ଆହୁରି ଅଧିକ ଲେଖାଲେଖି କରିବି, କିନ୍ତୁ ମୁଁ ଦେଖୁଛି ଏପରି କିଛି ହେଲା ନାହିଁ। (ଜୀବନ ସାରା ଚାକରିରେ ରହି ଅନେକ ଲେଖକ ଅନେକ ବେଶୀ ଲେଖିଛନ୍ତି!) ତେବେ ଚାକିରି ଛାଡ଼ିବା ପରେ ମୁଁ ଯେଉଁ ସ୍ୱାଧୀନତା ଓ ସମୟ ପାଇଲି, ତାର ବିକଳ୍ପ ନାହିଁ।

ପ୍ରଶ୍ନ : ମୁଁ ଆପଣଙ୍କୁ ଅନେକ ଦିନରୁ ପଢୁଛି। ଆଇ.ଏ.ଏସ୍ ଚାକରିରେ ଥିବା ବେଳେ ଆପଣ ଲେଖୁଥିଲେ ଓ ଏବେ ଚାକିରି ଛାଡ଼ି ମଧ୍ୟ ଲେଖୁଛନ୍ତି। କଣ କିଛି ପାର୍ଥକ୍ୟ ଅନୁଭବ କରୁଛନ୍ତି? ଯଦି କରୁଛନ୍ତି ତାହା କିପରି?

ଉତ୍ତର : ମୁଁ କୌଣସି ପାର୍ଥକ୍ୟ ଅନୁଭବ କରୁନାହିଁ। (ପ୍ରକୃତରେ କହିବାକୁ ଗଲେ ମୁଁ

ନିଜ ଲେଖା ବିଷୟରେ କେବେ କିଛି ଭାବିବାକୁ ଚେଷ୍ଟା କରେ ନାହିଁ ଲେଖାଟି ଲେଖି ସାରିବା ପରେ।) ଯଦି କିଛି ପାର୍ଥକ୍ୟ ଥାଏ, ଅନ୍ୟମାନେ ହିଁ କହିପାରିବେ।

ପ୍ରଶ୍ନ : ହଁ – ଆପଣଙ୍କର 'ସୁନ୍ଦର ଦାସ' ଏକ ତଥ୍ୟ ଭିତ୍ତିକ ପୁସ୍ତକ। ମୁଁ ଭାବୁଛି ଏହା 'ଦେଶ କାଳ ପାତ୍ର' ଭିତରେ ରହିଯିବା କଥା। କିନ୍ତୁ ଏହାକୁ ଏକ ସ୍ୱତନ୍ତ୍ର ପୁସ୍ତକ ଭାବରେ କାହିଁକି ଲେଖିଲେ ?

ଉତ୍ତର : 'ସୁନ୍ଦର ଦାସ'ର ବିଷୟବସ୍ତୁ ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀ ଓ ପରିସ୍ଥିତିରେ ସୀମିତ : ଓଡ଼ିଶାରେ ଆଦି ଖ୍ରୀଷ୍ଟିଆନ୍ ଏବଂ ଓଡ଼ିଶାର ଅଧିବାସୀଙ୍କ ସହିତ ସେମାନଙ୍କ ଯୋଗାଯୋଗ ଓ ତାର ପ୍ରତିକ୍ରିୟା। ତାର ସମୟ କାଳ ମଧ୍ୟ ଅଲଗା, ଊନବିଂଶ ଶତାବ୍ଦୀର ତୃତୀୟ ଦଶକ। 'ଦେଶ କାଳ ପାତ୍ର'ର ଚରିତ୍ର ଓ ଘଟଣା ଆହୁରି ବିସ୍ତୃତ ଏବଂ ତାର କାଳ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ।

ପ୍ରଶ୍ନ : ଓଡ଼ିଆ ନବ୍ୟ ନାଟ୍ୟ ଆନ୍ଦୋଳନର ଆପଣ ଅନ୍ୟତମ ପ୍ରମୁଖ ଓ ସାର୍ଥକ ଶିଳ୍ପୀ। ମାତ୍ର ଅଧିକାଂଶ ନାଟକ ଆପଣଙ୍କର ଓଡ଼ିଶା ବାହାର ଅନୁବାଦିତ ହୋଇ ମଞ୍ଚସ୍ଥ ହୋଇଛି, ଆଦୃତ ହୋଇଛି। ଏ ବିଷୟରେ କିଛି କହିବେ ?

ଉତ୍ତର : ନାଟକ ଲେଖି ସାରିବା ପରେ ତାର ମଞ୍ଚନ ସମ୍ଭବ ହୋଇଥାଏ ନାଟକକାର, ନିର୍ଦ୍ଦେଶକ ଓ ନାଟ୍ୟସଂସ୍ଥାର ଯୋଗାଯୋଗରୁ। ସେଥିପାଇଁ ଅଧିକାଂଶ ନାଟକ ମଞ୍ଚନ ପରେ ହିଁ ପ୍ରକାଶ ପାଇଥାଏ। ମୁଁ ଓଡ଼ିଶା ବାହାରେ ରହୁଥିବାରୁ ଓଡ଼ିଶାର ନାଟ୍ୟ ଜଗତ ସହିତ ମୋର ସଂପର୍କ ବହୁତ କମ୍। ତେଣୁ ମୋର ନାଟକ ଲେଖିବାକୁ ମୁଁ କେବଳ ଏକ ସାହିତ୍ୟିକ କୃତି ବୋଲି ମାନି ନେଇଛି।

ପ୍ରଶ୍ନ : ଓଡ଼ିଶାର ରଙ୍ଗମଞ୍ଚ(ଆମେଚର ଥିଏଟର ଗ୍ରୁପ) ଠାରୁ ଆପଣ ଦୂରେଇ ରହିଛନ୍ତି ବୋଲି ଭାବୁ ନାହାନ୍ତି କି ? ଏଥିପାଇଁ ଦୁଃଖ ହୁଏନି ?

ଉତ୍ତର : ହଁ, ମୋର ଦୁଃଖ ଯେ ମୁଁ ବାହାରେ ରହୁଥିବାରୁ ଓଡ଼ିଶାର ରଂଗମଂଚରୁ(ହୁଏତ ଓଡ଼ିଶାର ପାଠକମାନଙ୍କ ପାଖରୁ ମଧ୍ୟ) ଦୂରେଇ ଯାଇଛି।

ପ୍ରଶ୍ନ : ଆପଣଙ୍କ ଗଳ୍ପ ଗୁଡ଼ିକର ଭାଷା କଥିତ ଭାଷା ଠାରୁ ଟିକେ ଅଲଗା। ଏହା କଣ ଇଚ୍ଛାକୃତ ?

ଉତ୍ତର : ସାହିତ୍ୟିକ ଭାଷା ସବୁବେଳେ କଥିତ ଭାଷାଠାରୁ ଭିନ୍ନ। ଲେଖକ ନିଜ ଲେଖାରେ (ବିଶେଷରେ ଗଳ୍ପ, ନାଟକ, ଉପନ୍ୟାସରେ) ଯେତେଦୂର ସମ୍ଭବ ଚରିତ୍ରମାନଙ୍କ ମୁହଁରେ କଥିତ ଭାଷା ଦେବାକୁ ଚେଷ୍ଟା କରିଥାଏ ମାତ୍ର। ('ଛ ମାଣ ଆଠ ଗୁଣ୍ଠ'ରେ ସାହିତ୍ୟିକ ଭାଷାରେ ବ୍ୟବହାର ପାଇଁ ଉପସଂହାର ପରିଚ୍ଛେଦରେ ମଙ୍ଗରାଜର ମୃତ୍ୟୁ ବର୍ଣ୍ଣନା ଦ୍ରଷ୍ଟବ୍ୟ) ଗଳ୍ପରେ ଭାଷା ବ୍ୟବହାରର ସମସ୍ୟା ବିଷୟରେ ମୁଁ ମୋର ଗଳ୍ପ 'ପ୍ରିୟ ବିଦୂଷକ'ରେ କିଛି ଆଲୋଚନା କରିଛି।

ପ୍ରଶ୍ନ : ଆପଣଙ୍କର 'ମନ୍ତ୍ର', 'ବୁଢ଼ିଆଣୀ ଜାଲ' ପରି ଗଳ୍ପଗୁଡ଼ିକ କଣ ଅନ୍ୟାନ୍ୟ ଭାରତୀୟ

ଭାଷାରେ ଅଥବା ଇଂରାଜୀରେ ଅନୁବାଦିତ ହୋଇଛି କି ? ଉପରୋକ୍ତ ଗଳ୍ପ ଭିନ୍ନ ଅନ୍ୟ କେଉଁ ଗଳ୍ପଗୁଡ଼ିକୁ ଆପଣ ଆପଣଙ୍କର ପ୍ରତିନିଧିତ୍ୱସ୍ତରୀୟ ଗଳ୍ପ ବୋଲି ମନେ କରନ୍ତି ?

ଉତ୍ତର : ମୋର କିଛି ଗଳ୍ପ(‘ମନ୍ତ୍ରୀ’ ଓ ‘ବୁଢ଼ିଆଣୀ ଜାଲ’ ସମେତ) ହିନ୍ଦୀ ଓ ଇଂରାଜୀରେ ଅନୁବାଦିତ ହୋଇଛି । ତେବେ ଏଗୁଡ଼ିକ ମୋର ପ୍ରତିନିଧିମୂଳକ ଗଳ୍ପ କି ନା ମୁଁ ଜାଣେନା । ମୁଁ ମୋର ନିଜର ଲେଖା ବିଷୟରେ ଭାବେ ନାହିଁ ବା ତାକୁ ବିଶ୍ଳେଷଣ କରିବାକୁ ଚେଷ୍ଟା କରେ ନାହିଁ । ତେଣୁ ମୋର କେଉଁ ଲେଖା ମୋର ପ୍ରତିନିଧିତ୍ୱ କରନ୍ତି ସେ ବିଷୟରେ ମୋର ଧାରଣା ନାହିଁ ।

ପ୍ରଶ୍ନ : ଏମିତି କଣ କେବେ ହୋଇଛି ଯେ ଗୋଟେ ଗଳ୍ପ ଲେଖୁ ଲେଖୁ ତାହା ଠିକ୍ ଆପଣଙ୍କର ପରିକଳ୍ପିତ ଗଳ୍ପ ନ ହୋଇ ଗୋଟେ ସଂପୂର୍ଣ୍ଣ ଅଲଗା ଗପ ହୋଇ ଯାଇଛି ?

ଉତ୍ତର : ଅନେକ ସମୟରେ ଲେଖା ଆରମ୍ଭ ପରେ ସେଇଟି ଲେଖକଙ୍କର ପରିକଳ୍ପିତ ପରିଣତ ଆଡ଼କୁ ନ ଯାଇ ନିଜସ୍ୱ ଗତିରେ ଅନ୍ୟ ଉପସଂହାର ନେଇଥାଏ । ଏ ଭଳି ମୋ କ୍ଷେତ୍ରରେ ମଧ ହୋଇଛି ।

ପ୍ରଶ୍ନ : ଗାଳ୍ପିକ ଜେ.ପି, କବି ଜେ.ପି ଓ ନାଟ୍ୟକାର ଜେ.ପିଙ୍କ ଭିତରେ କେବେ କେବେ ସଂଘର୍ଷ ହୁଏକି ? ଜଣକର ପ୍ରତିଷ୍ଠା ଓ ପତିଆରା ଅପରକୁ କ୍ଷୁଣ୍ଣ କରେ ନା ?

ଉତ୍ତର : ପେଶାଦାର ଲେଖକଙ୍କ ପାଇଁ ହୁଏ ତ ଏ ଭଳି ସଂଘର୍ଷ ସମ୍ଭବ । କିନ୍ତୁ ମୁଁ ଖସିରେ ଗପ କବିତା ନାଟକ ଲେଖୁଥିବାରୁ(କିମ୍ବା ନ ଲେଖୁ ଥିବାରୁ)ମୋ ପାଇଁ କେବେ କୌଣସି ସମସ୍ୟା ଉପୁଜି ନାହିଁ । ତେବେ ଏ ବିଷୟରେ ମୁଁ ନିଜ ପାଇଁ ନିଜେ ଏକ ଶୃଙ୍ଖଳା ରଖିଥାଏ । କିଛି ଦିନ କବିତା ଲେଖିବା ପରେ ତାକୁ ବନ୍ଦ ରଖି ଗଳ୍ପ ଲେଖେ । ପୁଣି କବିତାକୁ ଫେରିଆସେ । ଲେଖକ ଭାବରେ ମୋର ପ୍ରତିଷ୍ଠା ଓ ପତିଆରା ଅଛି କି ନା ଏବଂ କେତେ ଭଳି ଅଛି ତା ମୁଁ ଜାଣେ ନା, ମୁଁ ସେ ବିଷୟରେ ଭାବେ ନାହିଁ ବା ସଚେତନ ନୁହେଁ ।

ପ୍ରଶ୍ନ : ସାହିତ୍ୟ ପୁରସ୍କାର ପ୍ରଦାନକୁ ଆପଣ କିପରି ଦୃଷ୍ଟିରେ ଦେଖନ୍ତି ? ‘ଆହ୍ନିକ’ ପୁସ୍ତକ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରକୁ ଅପଣ ପ୍ରତ୍ୟାଖ୍ୟାନ କଲେ ଅଥଚ ଶାରଳା ପୁରସ୍କାର ଗ୍ରହଣ କଲେ । ଏପରି ଦ୍ୱୈତ ବିଚାର କାହିଁକି ? ବିଶେଷ କରି ଓଡ଼ିଶାରେ ସାହିତ୍ୟିକ ପୁରସ୍କାରକୁ କେନ୍ଦ୍ର କରି ନାନା ଅରୁଚିକର ମନ୍ତବ୍ୟମାନ ଶୁଣିବାକୁ ମିଳେ ଓ ଏହାର ପୃଷ୍ଠଭାଗରେ ଥିବା ରୁଚିହୀନ ଅଭିଯୋଗ, ଆରୋପ, ପ୍ରତ୍ୟାରୋପ ସବୁ ସାହିତ୍ୟ ପତ୍ରିକା ଓ ସମ୍ବାଦପତ୍ରରେ ଛପାଯାଏ । ଏହା ଆପଣଙ୍କୁ ଆହତ କରେନି ?

ଉତ୍ତର : ଅନ୍ୟ ଶୃଙ୍ଖଳା–କ୍ରୀଡ଼ା, ସଂସ୍କୃତି, ବିଜ୍ଞାନ–ମାନଙ୍କରେ ଯେଉଁଭଳି ପୁରସ୍କାର ଦେବାର

ପ୍ରଥା ଅଛି, ସେଭଳି ସାହିତ୍ୟରେ ତ ରହିବ ହିଁ ରହିବ। ତେବେ ଆପତ୍ତି ହେଉଛି ଏହି ପୁରସ୍କାରମାନଙ୍କ ପାଇଁ ଚେଷ୍ଟା, ଧାଁ ଦଉଡ଼ ଓ ପ୍ରଭାବିତ କରିବାରେ। ମୋ ମତରେ ଯଦି ଏପରି ଅପଚେଷ୍ଟାମାନ ହୁଏ ତାକୁ ଲୋକଲୋଚନକୁ ଆଣିବାରେ କୌଣସି କ୍ଷତି ନାହିଁ।

ମୋର ନିଜର ପୁରସ୍କାର ଗ୍ରହଣ କରିବା ନ କରିବାର କାରଣ ସଂପୂର୍ଣ୍ଣ ବ୍ୟକ୍ତିଗତ, ତାର କୌଣସି ସାହିତ୍ୟିକ କାରଣ ନାହିଁ।

ପ୍ରଶ୍ନ : ପଟ୍ଟଚିତ୍ର ଉପରେ ଗବେଷଣା କରି ଆପଣ ପିଏଚ୍.ଡି. ପାଇଛନ୍ତି। ସାହିତ୍ୟର କବିତା, ଗଳ୍ପ, ନାଟକ ସହିତ ରଂଗ ତୂଳୀର ଜଗତକୁ ପ୍ରବେଶ କଲେ କିପରି ଓ ଆପଣ ସେଥିପ୍ରତି ଆକୃଷ୍ଟ ହେଲେ କେମିତି ?

ଉତ୍ତର : ମୋର ଅନେକ ଦିନରୁ ଚିତ୍ରକଳା ପ୍ରତି ଆଗ୍ରହ ଥିଲା ଏବଂ ମୁଁ ନିଜେ କିଛି କିଛି ଚିତ୍ର କରୁଥିଲି। ମୋର ପଟ୍ଟଚିତ୍ର ବିଷୟରେ ଗବେଷଣା କରିବାର କାରଣ ଥିଲା ଯେ ଯଦିଓ ଓଡ଼ିଶାର ଭାସ୍କର୍ଯ୍ୟ ଉପରେ ଅନେକ ଗବେଷଣା ହୋଇ ସାରିଥିଲା, ସେତେବେଳେକୁ ଓଡ଼ିଶାର ଚିତ୍ରକଳା ଉପରେ କିଛି କାମ ହୋଇନଥିଲା।

ପ୍ରଶ୍ନ : ଆପଣ ତ Children's Film Society ସହ ସଂପୃକ୍ତ। ସେ ବିଷୟରେ ଆପଣଙ୍କର ନୂଆ ଯୋଜନା କଥା ପାଠକଙ୍କୁ କହିବେ ?

ଉତ୍ତର : ମୁଁ ବିଭିନ୍ନ ସମୟରେ ଯେଉଁ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନ ଓ କାର୍ଯ୍ୟକ୍ରମ ସହିତ ଜଡ଼ିତ ରହିଛି, ସେଥିରୁ ଶିଶୁ ଚଳଚ୍ଚିତ୍ର ସମିତି ଅନ୍ୟତମ। ମୁଁ ୧୯୮୫ରୁ ୧୯୯୦ ପର୍ଯ୍ୟନ୍ତ ପାଞ୍ଚ ବର୍ଷ ଏହି ଅନୁଷ୍ଠାନ ସହିତ ସଂପୃକ୍ତ ଥିଲି। ସେହି ସହଯୋଗର ମୋ ପାଇଁ ଦୁଇଟି ସାହିତ୍ୟିକ ସୁଫଳ ଥିଲା : ମୁଁ ଗୋଟିଏ ଶିଶୁ କବିତା ବହି ଲେଖିଥିଲି ('ଆଳିମାଳିକା' ୧୯୯୩) ଏବଂ ସମିତିର ଆନ୍ତର୍ଜାତିକ ଶିଶୁ ଚଳଚ୍ଚିତ୍ର ସମାରୋହ ବେଳେ(୧୯୮୭) ଭୁବନେଶ୍ୱରରେ ଅନେକ ଦିନ ରହିବା ସମୟରେ 'ଦେଶ କାଳ ପାତ୍ର' ପାଇଁ ଗବେଷଣା କରି ପାରିଥିଲି।

ପ୍ରଶ୍ନ : ଆଉ କଣ ସବୁ ଭବିଷ୍ୟତରେ ଲେଖିବା ପାଇଁ ଲକ୍ଷ୍ୟ ରଖିଛନ୍ତି ?

ଉତ୍ତର : ସେମିତି କୌଣସି ଯୋଜନା ନାହିଁ, ତେବେ ଆରମ୍ଭ କରିବା ଉପନ୍ୟାସ ଶେଷ କରିବାକୁ ଚେଷ୍ଟା କରିବି।

ପ୍ରଶ୍ନ : ଓଡ଼ିଶାରେ ରଂଗମଞ୍ଚ ଗୁଡ଼ିକର ପୁନରୁତ୍ଥାନ ବିଷୟରେ କିଛି ପ୍ରସ୍ତାବ ଦେବେ ?

ଉତ୍ତର : ଭଲ ନାଟକ ପାଇଁ ଦର୍ଶକ ଅଭାବ।(ଓଡ଼ିଆ ଯାତ୍ରା ପାଇଁ ଦର୍ଶକମାନଙ୍କ ଅଭାବ ନାହିଁ), ମଞ୍ଚନ ଖର୍ଚ୍ଚର ଅସ୍ୱାଭାବିକ ବୃଦ୍ଧି, କଳାକାରମାନଙ୍କର ଫିଲ୍ମ, ଟେଲିଭିଜନକୁ ଚାଲିଯିବା ଇତ୍ୟାଦି ଓଡ଼ିଆ ରଂଗମଂଚରେ ଅନେକ ସମସ୍ୟା। ଓଡ଼ିଶାରେ ଥିଏଟରର ପୁନଃ ଜାଗରଣ ପାଇଁ ନିକଟରେ ଏକ ଉତ୍କଳ ରଂଗମଞ୍ଚ ଟ୍ରଷ୍ଟ ତିଆରି ହୋଇଛି, ଯାହା ସହିତ ମୁଁ ମଧ୍ୟ ସଂପୃକ୍ତ। ତେବେ ସରକାରୀ ଓ ବେସରକାରୀ ଆନୁଷ୍ଠାନିକ

ପୃଷ୍ଠପୋଷକତା ବିନା ରଂଗମଂଚର ତିଷ୍ଠିବା ଅସମ୍ଭବ ହୋଇ ପଡୁଛି।

**ପ୍ରଶ୍ନ :** ନିଜ ସାହିତ୍ୟକୃତି ବିଷୟରେ ଆପଣଙ୍କର ନିଜ ଧାରଣା କଣ ?

**ଉତ୍ତର :** ମୁଁ ସେ ବିଷୟରେ କେବେ ଭାବି ନାହିଁ।

**ପ୍ରଶ୍ନ :** ଜୀବନରେ କିଛି ଅବସୋସ ରହିଯାଇଛି କି ?

**ଉତ୍ତର :** ନା।

**ପ୍ରଶ୍ନ :** କୌଣସି ଓଡ଼ିଆ/ ଭାରତୀୟ ସାହିତ୍ୟିକ ସାହିତ୍ୟରେ ନୋବେଲ ପୁରସ୍କାର ପାଇବେ ବୋଲି ଆପଣ ଭାବୁଛନ୍ତି ?

**ଉତ୍ତର :** କେବଳ ଭଗବାନ(ନା ନୋବେଲ କମିଟି) କହି ପାରିବେ।

**ପ୍ରଶ୍ନ :** ମୁଁ ଆଉ କଣ ପଚାରି ନାହିଁ ଅଥଚ ଆପଣ କହିବାକୁ ଚାହିଁବେ ?

**ଉତ୍ତର :** ମୁଁ ବୋଧହୁଏ ପ୍ରୟୋଜନରୁ ବେଶି କହି ସାରିଲିଣି। ଧନ୍ୟବାଦ।

*(ଗୋଧୂଳି ଲଗ୍ନ/ ଜାନୁଆରୀ- ମାର୍ଚ୍ଚ :୨୦୦୦)*

# ସାକ୍ଷାତ୍କାର : ୩

ପ୍ରଶ୍ନ : କବିତା, ଗଳ୍ପ, ନାଟକ, ଚିତ୍ର, ଗବେଷଣା – ଏମିତି ଆପଣ ଅନେକ କ୍ଷେତ୍ରରେ ପ୍ରତିଷ୍ଠିତ। ତେବେ ଆପଣଙ୍କର ପ୍ରିୟ ମାଧ୍ୟମଟି କିଏ? ଏତେ ସବୁ ମାଧ୍ୟମ ଆପଣେଇବାର କାରଣ କଣ?

ଉତ୍ତର : ବିଭିନ୍ନ ମାଧ୍ୟମରେ ମୋର ପ୍ରତିଷ୍ଠା ବିଷୟରେ ମୁଁ ଜଣେ ନା, ତେବେ ଏତିକି କହିବି ଯେ ଏଥିରୁ କୌଣସିଟି ମୋର ବୃତ୍ତି ନୁହେଁ ଏବଂ ମୁଁ ଏ ସବୁ କେବଳ ନିଜର ଖୁସି ପାଇଁ ଲେଖୁଛି। ଓଡ଼ିଶାରେ ବୋଧହୁଏ କୌଣସି ପେଷାଦାର ସାହିତ୍ୟିକ ନାହାନ୍ତି, ଯାହାର ବୃତ୍ତି ସାହିତ୍ୟ ହିଁ। ଅବଶ୍ୟ ଖୁସିରେ ସାହିତ୍ୟ ଚର୍ଚ୍ଚା କରିବାର ଅର୍ଥ ନୁହେଁ ଯେ ଏ କାମକୁ ଗଭୀରତାର ସାହିତ ନିଆଯିବ ନାହିଁ। ଅଥବା ଏହାକୁ ଯଥା କଥା ଅଯତ୍ନର ସହିତ କରାଯିବ। ମୁଁ ଯେତିକି କବିତା, ଗଳ୍ପ, ନାଟକ ଲେଖିଛି, ବା ଯାହା ଗବେଷଣା କରିଛି, ତାହା ଯେତେ ସମ୍ଭବ ଶ୍ରମ, ଧ୍ୟାନ ଓ ଅଧ୍ୟବସାୟ ସହିତ। ଏଥିପାଇଁ ମୋର ପ୍ରିୟ ମାଧ୍ୟମର ପ୍ରଶ୍ନ ଉଠୁନାହିଁ। ଯଦି ଏଥିରୁ କୌଣସି ପ୍ରିୟ ହୋଇ ନଥାନ୍ତା ମୁଁ ତାହା କରି ନଥାନ୍ତି।

ପ୍ରଶ୍ନ : ସୃଜନ ଜଗତକୁ ପ୍ରବେଶର ଅନୁଭବ ଓ ଅନୁଭବ ସଂପର୍କରେ କୁହନ୍ତୁ? ଆପଣଙ୍କ ଭାବ, ଭୂମି ଓ ପ୍ରେରଣାର ଆବେଗ କଣ?

ଉତ୍ତର : ସୃଜନର ଅନୁଭୂତି ବା ପ୍ରେରଣା ବିଷୟରେ କେବେହେଲେ ପଛକୁ ଫେରି ଚିନ୍ତାକରିବାକୁ ଚାହିଁନାହିଁ। ମୁଁ ଯେତେବେଳେ ଯେପରି ଚାହିଁଛି, ଲେଖିଛି। ବିଭିନ୍ନ ସମୟରେ ବିଭିନ୍ନ ପ୍ରକାରର ଲେଖା ଭିନ୍ନ ଭିନ୍ନ ପ୍ରେରଣା ପରିସ୍ଥିତି ମନୋଭାବରୁ ଲେଖା ହୋଇଥାଏ। ଏଣୁ କେଉଁ ଲେଖା କେବେ କେଉଁଠି କିପରି ଓ କାହିଁକି ଲେଖା ହୋଇଥିଲା, ଏକଥା କହିବା କଷ୍ଟ। ଏବଂ ମୋ ମତରେ ଅପ୍ରାସଙ୍ଗିକ। ଗୋଟିଏ ଲେଖା ପଛରେ ଯେତେ ଗଭୀର ଅନୁଭବ ପ୍ରେରଣା ନିଷ୍ଠା ବିଶ୍ବସ୍ତତା ଥାଉ ପଛେ ଯଦି ଲେଖାଟି ଶେଷରେ ଉଚ୍ଚମାନର ହେଲା ନାହିଁ, ତେବେ ଲେଖାଟିର ଏତେ ସବୁ ପୃଷ୍ଠଭୂମି ଖୋଜିବାରେ କି ଲାଭ? ପ୍ରକାରାନ୍ତରେ ଗୋଟିଏ ଭଲ ଲେଖାର ଲେଖନ ପ୍ରକ୍ରିୟାର ଭୂମିକା । ବିଷୟରେ ଜାଣିବା ମଧ୍ୟ ଅନାବଶ୍ୟକ। କବିତାକୁ ବୁଝିବା ପାଇଁ କବିର ଜୀବନ ଯେପରି ଅବାନ୍ତର (କବିକୁ ତାର ଜୀବନ ଚରିତରେ ପାଇବ ନାହିଁ : ରବୀନ୍ଦ୍ରନାଥ) ସେହିପରି

ସାହିତ୍ୟର ମୂଲ୍ୟାୟନ ପାଇଁ ଲେଖକର ଅନୁଭବ ପ୍ରେରଣାର ଉତ୍ସ ଓ ଉନ୍ମେଷ ଖୋଜିବା ଅର୍ଥହୀନ।

ପ୍ରଶ୍ନ : ଆପଣ କବିତା କ୍ଷେତ୍ରରେ ବହୁ ପରୀକ୍ଷା ନିରୀକ୍ଷା କରିଛନ୍ତି ଓ ଅନ୍ୟମାନଙ୍କୁ ପ୍ରଭାବିତ ମଧ୍ୟ କରିଛନ୍ତି। ତେବେ କେଉଁ ପରୀକ୍ଷା/ ପ୍ରୟୋଗରେ ଆପଣ ବେଶି ସଫଳ ବୋଲି ନିଜେ ଅନୁଭବ କରନ୍ତି ?

ଉତ୍ତର : ମୁଁ ଯେ କବିତା କ୍ଷେତ୍ରରେ ବହୁ ପରୀକ୍ଷା ନିରୀକ୍ଷା ଓ ପ୍ରୟୋଗ କରିଛି, ସେ କଥା ମୋତେ ଜଣା ନଥିଲା। ହୁଏତ କେହି ପାଠକ ସମାଲୋଚକ ( ବା ଯଦି କେହି ମୋ ଦ୍ଵାରା ପ୍ରଭାବିତ ହୋଇଥାନ୍ତି ସେପରି କବି) ମୋ କବିତାରୁ ଏଭଳି ପରୀକ୍ଷା ନିରୀକ୍ଷାର ଆଭାସ ପାଇ ପାରିଥାନ୍ତି, (ସେଥିପାଇଁ ମୁଁ ଦୋଷୀ ନୁହେଁ)। ମୁଁ କିନ୍ତୁ ସଚେତ ଭାବରେ କୌଣସି ପରୀକ୍ଷା ନିରୀକ୍ଷା ଓ ନୂଆ ପ୍ରୟୋଗ କରିବା ପାଇଁ ଚେଷ୍ଟା କରି ନାହିଁ। ତେଣୁ ଏହାର ସଫଳତା ବିଫଳତା ବିଷୟରେ କହିବା ମୋ ପକ୍ଷରେ ସମ୍ଭବ ନୁହେଁ।

ପ୍ରଶ୍ନ : ଆପଣ ଇଂରାଜୀରେ ମଧ୍ୟ ଲେଖନ୍ତି। ମାତୃଭାଷା ଭିନ୍ନ ଅନ୍ୟ ଭାଷାରେ ସୃଜନ ସମ୍ଭବ କି ?

ଉତ୍ତର : ମୁଁ ଇଂରାଜୀରେ କେବଳ ଗବେଷଣାମୂଳକ ବହି ଲେଖିଛି, ମୋର ସମସ୍ତ ସୃଜନଶୀଳ ଲେଖା କେବଳ ଓଡ଼ିଆରେ। (ମୁଁ କେବେ ନିଜର କିଛି ଲେଖା ଇଂରାଜୀରେ ଅନୁବାଦ କରିଥିବାରୁ ହୁଏତ କେହି ଅନୁମାନ କରି ପାରିଥାନ୍ତି ଯେ ମୁଁ ମୂଳ ଇଂରାଜୀର ମଧ୍ୟ ଲେଖେ।)

ଏଭଳି ଏକ ଧାରଣା ଅଛି ଯେ ମାତୃଭାଷା ଭିନ୍ନ ଅନ୍ୟ ଭାଷାରେ ସୃଜନ କର୍ମ, ବିଶେଷରେ କବିତା ରଚନା, ସମ୍ଭବ ନୁହେଁ। ବିଶ୍ୱ ସାହିତ୍ୟରେ ଅନ୍ୟ ଭାଷାରେ ଲେଖୁଥିବା ଅନେକ ଲେଖକଙ୍କର ଉଦାହରଣ ଅଛି, ଯଥା ନାବୋକଭ ଓ ବେକେଟ। ଏ ସନ୍ଦର୍ଭରେ ଦୁଇଜଣ ଓଡ଼ିଆ ଲେଖକଙ୍କର ଦୃଷ୍ଟାନ୍ତ ଦିଆଯାଇପାରେ। ଜୟନ୍ତ ମହାପାତ୍ରଙ୍କର ଇଂରାଜୀ କବିତା ବିଶ୍ୱବିଦିତ ଏବଂ ତାଙ୍କର ଏବେ ଲେଖୁଥିବା ଓଡ଼ିଆ କବିତାଠାରୁ କୌଣସି ମତେ ନ୍ୟୂନ ନୁହେଁ। ମନୋଜ ଦାସ ( ହଁ, ମନୋଜ ଦାସ ତାଙ୍କର କିଛି ଗଳ୍ପ ଉପନ୍ୟାସ ମୂଳ ଇଂରାଜୀରେ ଲେଖି ତାକୁ ପୁଣି ଥରେ ଓଡ଼ିଆରେ ଲେଖିଛନ୍ତି,) ଅନ୍ୟ ଏକ ଉଦାହରଣ।

ପ୍ରଶ୍ନ : ଆପଣ ବହୁ ବର୍ଷ ଧରି ଓଡ଼ିଶାରେ ରହୁ ନାହାନ୍ତି। ଓଡ଼ିଆ ଭାଷାରେ ଲେଖିଲା ବେଳେ କେମିତି ଲାଗେ ? କେବେ ଅଭାବ ଅନୁଭବ କରିଛନ୍ତି କି ?

ଉତ୍ତର : ମୁଁ ଗତ ତିରିଶ ବର୍ଷ ହେଲା ଦିଲ୍ଲୀରେ ରହୁଛି। କିନ୍ତୁ ସେଥିପାଇଁ ଓଡ଼ିଶା, ଓଡ଼ିଆ ଲୋକ, ଓଡ଼ିଆ ଭାଷା ସାହିତ୍ୟ ସହିତ ସଂପର୍କ କଟି ଯିବାର ପ୍ରଶ୍ନ ଉଠୁ ନାହିଁ। ମୁଁ ଭାବୁଛି ବାହାରେ ରହୁଥିବାରୁ ଏବଂ ଅନ୍ୟ ଭାଷାର ସଂସ୍ପର୍ଶରେ ଆସୁଥିବାରୁ

ମୋର ଓଡ଼ିଆ ଭାଷା ବ୍ୟବହାର ଦକ୍ଷତା ହୁଏତ ଆହୁରି ଉନ୍ନତ ହୋଇ ନଥାଇ ପାରେ, କିନ୍ତୁ କଦାପି ହ୍ରାସ ପାଇନାହିଁ। ମୁଁ ଏ ବିଷୟରେ କେବେ କୌଣସି ଅଭାବ ଅନୁଭବ କରି ନାହିଁ। ସେପରି ଭାବରେ ଦେଖିବାକୁ ଗଲେ ଏବେର ଆଇ.ଟି. ଯୁଗରେ ଦିଲ୍ଲୀ ବି ଓଡ଼ିଶାରୁ ଏତେ ବେଶି ଦୂରରେ ନୁହେଁ।

ପ୍ରଶ୍ନ : ଆପଣଙ୍କର ପାଠକ କିଏ ? ଏକ ନିର୍ଦ୍ଦିଷ୍ଟ ପାଠକ ଗୋଷ୍ଠୀକୁ ଆପଣ ଆଖି ଆଗରେ ରଖିଥାନ୍ତି କି ?

ଉତ୍ତର : ଲେଖକ ପାଇଁ ଏ ଏକ ଜଟିଳ ପ୍ରଶ୍ନ, କାରଣ ପାଠକ ତା ପାଇଁ ଏକ ଅମୂର୍ତ୍ତ ଜୀବ। ତେବେ ଗଳ୍ପ କବିତା ପ୍ରଥମେ ପତ୍ରପତ୍ରିକାମାନଙ୍କରେ ପ୍ରକାଶ ପାଉଥିବାରୁ ବୁଝିବାକୁ ଯେ ସେଇମାନଙ୍କର ପାଠକ ହେଉଛନ୍ତି ଲେଖକର ନିର୍ବାଚନ ମଣ୍ଡଳୀ। ପତ୍ରିକାର ସଂପାଦକ ମୋଠାରୁ ଗପ ନ ପାଇ କ୍ଷୁଣ୍ଣ ହୁଅନ୍ତି, ଏବଂ ଭବିଷ୍ୟତରେ କେବଳ ଗଳ୍ପ ପଠାଇବା ପାଇଁ ତାଗିଦ୍ କରନ୍ତି। ଏଥିରୁ ମୁଁ ବୁଝୁଛି ଯେ କବିତା ପଢୁଥିବା ପାଠକ ଆହୁରି କମ୍ ଏବଂ ପତ୍ରିକା ପଢୁଥିବା ଅଧିକାଂଶ ପାଠକ ସେଥିରେ ପ୍ରକାଶିତ କବିତାକୁ ପଢ଼ନ୍ତି ନାହିଁ। ଯଦି ପ୍ରକାଶିତ ବହିର ବିକ୍ରି ସଂଖ୍ୟାକୁ ଦେଖାଯାଏ(ବିଭିନ୍ନ କାରଣରୁ ଲାଇବ୍ରେରୀମାନଙ୍କୁ ଯୋଗାଣ ହେଉଥିବା ବହି ବ୍ୟତୀତ), ତେବେ ମାନିନେବାକୁ ହେବ ଯେ ଓଡ଼ିଶାରେ ପାଠକ ଗୋଷ୍ଠୀ ବୋଲି କେହି ନାହାନ୍ତି। ତେବେ ପତ୍ରପତ୍ରିକାରେ ଗପ କବିତା ବାହାରୁ ଥିବାରୁ ଏବଂ କିଛି ବହି ବିକ୍ରି ହେଉଥିବାରୁ ଅନ୍ତତଃ କିଛି ପାଠକ ଅଛନ୍ତି ବୋଲି ଆଶା କରାଯାଇପାରେ। ଲେଖକର ଯଦି ମିଥ୍ୟା ଅଭିମାନ ଥାଏ, ତେବେ ସେ କେଉଁ ଅଦୂର ଭବିଷ୍ୟତରେ ନିଜ ଲେଖା ପାଇଁ ଭବଭୂତିଙ୍କ ଭଳି ଏକ ସମାନଧର୍ମା ବିରାଟ ପାଠକ ଗୋଷ୍ଠୀର ସ୍ୱପ୍ନ ଦେଖିପାରେ।

ପ୍ରଶ୍ନ : ଦେଶ କାଳ ପାତ୍ର ଓଡ଼ିଆ ଭାଷାର ଏକ ଅନନ୍ୟ ସୃଷ୍ଟି । ଏହାକୁ କେମିତି ଲେଖିଥିଲେ ?

ଉତ୍ତର : ବହୁ କଷ୍ଟରେ।(ଏହାକୁ ଆପଣ କାହିଁକି ଅନନ୍ୟ ସୃଷ୍ଟି କରୁଛନ୍ତି, ତାହା ଆପଣଙ୍କୁ ହିଁ ବୁଝାଇବାକୁ ପଡ଼ିବ।

ପ୍ରଶ୍ନ : ଆଉ ଏପରି କିଛି ଲେଖିବାର ଯୋଜନା ଅଛି କି ?

ଉତ୍ତର : ନା, ନା।

ପ୍ରଶ୍ନ : ଆପଣଙ୍କର ସୃଷ୍ଟିର ସାମଗ୍ରିକ ମୂଲ୍ୟାୟନ ଏ ଯାବତ ହୋଇ ପାରିନାହିଁ। ଓଡ଼ିଆ ସମାଲୋଚନାର ଦୁର୍ବଳତା ଓଡ଼ିଆ ସାହିତ୍ୟର ବେଶି କ୍ଷତି କରୁନି କି ?

ଉତ୍ତର : ସାମଗ୍ରିକ ମୂଲ୍ୟାୟନ ବିଷୟରେ ଜାଣେନା, କିନ୍ତୁ ମୋର ବହିମାନଙ୍କର କ୍ୱଚିତ ସମୀକ୍ଷା ହେବା ଦେଖିଛି। ମୋ ମତରେ କାହା ସାହିତ୍ୟର କାହିଁକି ଓ କିପରି ମୂଲ୍ୟାୟନ ହେବ ସେ ସମସ୍ୟାକୁ ସମାଲୋଚକଙ୍କ ଉପରେ ଛାଡ଼ି ଦେବା ଉଚିତ।

ସୃଜନଶୀଳ ଲେଖକ ସେ ବିଷୟରେ ମତାମତ ଦେବା ଧୃଷ୍ଟତା ହେବ।

ପ୍ରଶ୍ନ : ଓଡ଼ିଆ ଭାଷା ସାହିତ୍ୟର ଭବିଷ୍ୟତ ସଂପର୍କରେ ଆପଣ କଣ ଭାବୁଛନ୍ତି ?

ଉତ୍ତର : ମୁଁ ଜଣେ ଆଶାବାଦୀ ହୋଇଥିବାରୁ ଓଡ଼ିଆ ଭାଷା ଓ ସାହିତ୍ୟର ଭବିଷ୍ୟତ ଅନ୍ଧକାରାଚ୍ଛନ୍ନ ବୋଲି ଭାବୁ ନାହିଁ।

ପ୍ରଶ୍ନ : ଆପଣ ଆସନ୍ତା ଜନ୍ମରେ କଣ ହୋଇ ଜନ୍ମ ହେବାକୁ ଚାହିଁବେ ? ଆପଣଙ୍କର ଆଗାମୀ ଯୋଜନା କଣ ?

ଉତ୍ତର : କୌଣସି ଯୋଜନା ନାହିଁ, ତେଣୁ ଆଉ ଗୋଟିଏ ଜନ୍ମ ନେଇ କ'ଣ କରିବି ?

*(ଦ୍ରବବାକ୍ୟ : ପୂଜା ସଂଖ୍ୟା– ୨୦୦୧)*

# ସାକ୍ଷାତ୍‌କାର : ୪

ପ୍ରଶ୍ନ : ଆପଣଙ୍କର କୈଶୋର ସାହିତ୍ୟିକ ପରିବେଶ, ଲେଖାଲେଖି କରିବାର ଆଦ୍ୟ ପ୍ରେରଣା, ପ୍ରଥମ ପ୍ରକାଶିତ ଲେଖାର ସ୍ମୃତି ସଂପର୍କରେ କିଛି କୁହନ୍ତୁ।

ଉତ୍ତର : ସ୍କୁଲରେ ପଢ଼ିବା ବେଳୁ ସାହିତ୍ୟ ପଢ଼ିବା ଲେଖିବା ପ୍ରତି ଆଗ୍ରହ ହୋଇଥିଲା। ଘରେ ଥିବା ଅଜସ୍ର ବହି ହୁଏତ ତାର ପ୍ରେରଣା ହୋଇ ପାରନ୍ତି। ମୁଁ ସବୁ କିଛି ପଢୁଥିଲି ଏବଂ ସେତେବେଳେ ଆମ ଘରେ ଥିବା ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ଭାଷାକୋଷକୁ ଖୋଲି ପୃଷ୍ଠା ପୃଷ୍ଠା ପଢୁଥିବାର ମୋର ମନେ ଅଛି। ନବଭାରତ, ସହକାର, ନିଆଁଖୁଣ୍ଟାର ଗଦା ଗଦା ପୁରୁଣା ସଂଖ୍ୟା ମଧ୍ୟ ମୋର ପଠନ ସାମଗ୍ରୀ ଥିଲେ।

ପ୍ରଶ୍ନ : ଆପଣ ଲେଖାଲେଖି ଆରମ୍ଭ କଲାବେଳେ କେଉଁ କେଉଁ ସାହିତ୍ୟ ପତ୍ରିକା ପ୍ରକାଶ ପାଉଥିଲା ?

ଉତ୍ତର : ସେ ସମୟରେ 'ଡଗର' ଏକ ଜନପ୍ରିୟ ପତ୍ରିକା ଥିଲା। କିଛି ବର୍ଷ ବମ୍ବେରୁ ପ୍ରକାଶ ପାଉଥିବା 'କୁଙ୍କୁମ' ମଧ୍ୟ ଚହଳ ପକାଇଥିଲା। ତା' ବ୍ୟତୀତ 'ପ୍ରଜାତନ୍ତ୍ର' ଓ ଦୈନିକ 'ଆଶା'ରେ ମଧ୍ୟ ନିୟମିତ ଗଳ୍ପ କବିତା ପ୍ରକାଶ ପାଉଥିଲା। ଏହି ପତ୍ରିକାମାନଙ୍କରେ ୧୯୪୯ ମସିହାରୁ ମୋର କିଛି କିଛି କବିତା ପ୍ରକାଶ ପାଇଥିଲା।

ପ୍ରଶ୍ନ : ଛାତ୍ର ବୟସରେ ଆପଣ କେଉଁ କେଉଁ ପତ୍ରିକା ପଢୁଥିଲେ ? ଏବଂ ସେଥି ମଧ୍ୟରୁ କେଉଁ କେଉଁ ଲେଖକଙ୍କ ଲେଖା ଆପଣଙ୍କ ମନରେ ପ୍ରଭାବ ବିସ୍ତାର କରିଥିଲା, ସେ ସଂପର୍କରେ କିଛି ସ୍ମୃତି ଚାରଣ କରନ୍ତୁ।

ଉତ୍ତର : ମୁଁ କଲେଜ ପଢ଼ିଲା ବେଳକୁ 'ଝଂକାର' ଓଡ଼ିଶାର ଶ୍ରେଷ୍ଠ ପତ୍ରିକା ଭାବେ ସ୍ୱୀକୃତି ପାଇ ସାରିଲାଣି। ଏହା ବ୍ୟତୀତ କଲିକତାରୁ ପ୍ରକାଶ ପାଉଥିବା 'ଆସନ୍ତାକାଲି' ବହୁ ପ୍ରସାରିତ ଥିଲା। ଆମେ ଯେଉଁମାନେ ସାହିତ୍ୟରେ ରୁଚି ରଖୁଥିଲୁ, ଏ ସବୁ ପତ୍ରିକା ଆମ ପାଇଁ ବାଧ୍ୟତାମୂଳକ ପାଠ୍ୟ ଥିଲା। ପଚାଶ ଦଶକରେ କିଛି ପତ୍ରିକା ଅଳ୍ପ ଦିନ ପ୍ରକାଶ ପାଇ ନାଁ କରି ପାରିଥିଲେ, ଯଥା ରାଧାମୋହନ ଗଡ଼ନାୟକ ପ୍ରକାଶିତ 'ଏକଚକ୍ର', ବ୍ରହ୍ମାନନ୍ଦ ପଣ୍ଡା ସଂପାଦିତ 'ପ୍ରଭାତୀ', କୃଷ୍ଣଚରଣ ବେହେରା ସଂପାଦିତ 'କବିତା', ଚିନ୍ତାମଣି

ପାଣିଗ୍ରାହୀ ସଂପାଦିତ 'ଶାନ୍ତି ସମାଚାର'।

ଆଉ ଗୋଟିଏ ପତ୍ରିକା କଥା ମନେ ପଡୁଛି, 'ଆଗାମୀ'। ଏହା ୧୯୫୪ରେ ଆରମ୍ଭ ହୋଇ ମାତ୍ର କିଛି ବର୍ଷ ଚାଲିଥିଲା। ଏଇଟି ଥିଲା ମାର୍କସ୍‌ବାଦୀ ଦୃଷ୍ଟିକୋଣର ପତ୍ରିକା। ଏହାର ସଂପାଦନା ମଣ୍ଡଳୀର ସଭାପତି ଥିଲେ ମନୋଜ ଦାସ ଏବଂ ମୁଁ ସଂପାଦକ ମଣ୍ଡଳୀ ସଭ୍ୟ ଥିଲି।

ଉପରୋକ୍ତ ପତ୍ରପତ୍ରିକାମାନଙ୍କରେ ସେତେବେଳର ଓଡ଼ିଶାର ସମସ୍ତ ବିଖ୍ୟାତ ଲେଖକ(ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ ନୀଳକଣ୍ଠ ଦାସ, କାଳିନ୍ଦୀଚରଣ ପାଣିଗ୍ରାହୀଙ୍କଠାରୁ ଆରମ୍ଭ କରି) ଲେଖୁଥିଲେ। ଏସବୁ ପତ୍ରପତ୍ରିକାରେ ସେତେବେଳେ ପ୍ରକାଶିତ ମୋର(ବା ମୋର ସମସାମୟିକ ଲେଖକମାନଙ୍କର) ଯେଉଁସବୁ ଲେଖା ପ୍ରକାଶ ପାଇଥିଲା, ପରବର୍ତ୍ତୀ କାଳରେ ମୋର (ଏବଂ ମୋର ଲେଖକ ବଂଧୁମାନଙ୍କର ମଧ୍ୟ) ମନେ ହୋଇଛି ଯେ, ସେ ଲେଖା ସବୁ ପରିପକ୍ୱ ନଥିଲା। ସେଥିପାଇଁ ଏ ଲେଖାମାନ ପରବର୍ତ୍ତୀ ସଂକଳନରେ ସଂଗୃହୀତ ହୋଇନାହିଁ। ପ୍ରଭାବ ବିଷୟରେ ଏତିକି କହିବି ଯେ, ମୁଁ ଯାହା କିଛି ପଢ଼ିଛି – ସେ ଭଲ ମନ୍ଦ ହେଉ ବା ଯେ କୌଣସି ଭାଷାର ହେଉ (ମୁଁ ସେତେବେଳେ ଅନେକ ଇଂଗ୍ରାଜୀ ଓ ତା'ଠାରୁ ବେଶୀ ବଙ୍ଗଳା ବହି ପଢୁଥିଲି) ବା ଯେ କୌଣସି ବିଷୟରେ ହେଉ – ସବୁ ମତେ କୌଣସି ନା କୌଣସି ଭାବରେ କିଛି ନା କିଛି ପ୍ରଭାବିତ କରିଛନ୍ତି। କୌଣସି ନିର୍ଦ୍ଦିଷ୍ଟ ଲେଖକ, ଲେଖା ବା ବହିର ପ୍ରଭାବ ମୋର ମନେ ପଡୁ ନାହିଁ।

ପ୍ରଶ୍ନ : ଆପଣଙ୍କର ପିତା ଓଡ଼ିଆ ବିଭାଗର ପ୍ରଫେସର ଶ୍ରୀଧର ଦାସ ଜଣେ ବିଶିଷ୍ଟ ଲେଖକ ଓ ଅନୁବାଦକ। ତାଙ୍କ ଦ୍ୱାରା ଲେଖାଲେଖି ପାଇଁ କିପରି ଉଦ୍‌ବୁଦ୍ଧ ହୋଇଥିଲେ ?

ଉତ୍ତର : ଅଗାରୁ କହିଛି ଯେ, ଆମ ଘରେ ଅନେକ ବହି ଓ ପୁରୁଣା ପତ୍ର-ପତ୍ରିକା ଥିଲା। ତା' ବ୍ୟତୀତ ଆମ ଘରକୁ ଅନେକ ଲେଖକ ଆସୁଥିଲେ ଏବଂ ସବୁବେଳେ ଏକ ସାହିତ୍ୟିକ ବାତାବରଣ ରହୁଥିଲା। ବୋଧହୁଏ ଏହା ଦ୍ୱାରା ମୁଁ ସାହିତ୍ୟ ଆଡ଼କୁ ଆକର୍ଷିତ ହୋଇଥିଲି।

ପ୍ରଶ୍ନ : ଆପଣଙ୍କ ପ୍ରଥମ ପ୍ରକାଶିତ ପୁସ୍ତକର ନାମ କଣ ? ଏହାର ପ୍ରକାଶନ ସମୟ, ପ୍ରଚ୍ଛଦ ଚିତ୍ର ଓ ପ୍ରକାଶନ ପରେ ପାଠକୀୟ ପ୍ରତିକ୍ରିୟା ସଂପର୍କରେ କିଛି କୁହନ୍ତୁ।

ଉତ୍ତର : ପ୍ରଥମ ବୟସର ଲେଖାମାନଙ୍କୁ ଛାଡ଼ି ଦେଲେ ମୋର ପ୍ରଥମ ପୁସ୍ତକ କବିତା ସଂକଳନ 'ପ୍ରଥମ ପୁରୁଷ'। ୧୯୭୧ରେ ଏହାକୁ ପ୍ରକାଶ କରିଥିଲେ ମୋର ବଂଧୁ ଅନନ୍ତ ମହାପାତ୍ର। ଏହି ବହିର ପ୍ରଚ୍ଛଦ କରିଥିଲେ ସତ୍ୟଜିତ୍ ରାୟ। ଏବଂ ଏହା ହୁଏତ ବହିଟିର ପ୍ରଚାରରେ କିଛି ସାହାଯ୍ୟ କରିଥିଲା। ପ୍ରଥମ ପୁରୁଷ

ସେତେବେଳେ ବେଶ ପ୍ରସାରିତ ଓ ଆଲୋଚିତ ହୋଇଥିଲା। ମୁଁ ଭାବୁଛି ବହିଟିର ଗୁଣ ଅପେକ୍ଷା ଏହା ପ୍ରକାଶକଙ୍କର ଉଦ୍ୟମର ଫଳ ହୋଇପାରେ। (କାରଣ ଏହାପରେ ମୋର କୌଣସି ବହି - ଦେଶ କାଳ ପାତ୍ର ବ୍ୟତୀତ - ଏତେ ଆଲୋଚିତ ହୋଇ ନାହିଁ । ଏପରିକି ମୋର ଅନେକ ବହିର କୌଣସି ସମୀକ୍ଷା ପ୍ରକାଶ ହୋଇନାହିଁ।)

ପ୍ରଶ୍ନ : ଲେଖା ଲେଖି ପାଇଁ ଅଧିକ ମନୋଯୋଗ ଦେବା ପାଇଁ ଆପଣ ଆଇ.ଏ.ଏସ୍ ଚାକିରି ଛାଡ଼ି ଦେଇଥିଲେ ବୋଲି କୁହାଯାଏ। ଏହା କେତେ ଦୂର ସତ୍ୟ? ଭାରତୀୟ ସେବା ସଂସ୍ଥାରୁ ଅବସର ନେବା ପରେ ସାହିତ୍ୟ ସାଧନା କ୍ଷେତ୍ରରେ ଆପଣ କିପରି ସମୟ ବିନିଯୋଗ କରୁଛନ୍ତି, କୁହନ୍ତୁ।

ଉତ୍ତର : ହଁ, ମୁଁ ଭାବିଥିଲି ଚାକିରି ଛାଡ଼ିବା ପରେ ଲେଖାଲେଖିରେ ଅଧିକ ସମୟ ଓ ମନ ଦେଇ ପାରିବି। କିଛି ବର୍ଷ ଏ କଥା କରିଥିଲି ମଧ୍ୟ। ପରବର୍ତ୍ତୀ ସମୟରେ ସ୍ୱାସ୍ଥ୍ୟ, ମାନସିକ ଅବସ୍ଥା ଇତ୍ୟାଦି ବିଭିନ୍ନ କାରଣରୁ ମୁଁ ଯେତେ ଲେଖିବା ଉଚିତ୍ ସେତିକି ଲେଖିପାରୁ ନାହିଁ।

ପ୍ରଶ୍ନ : ଆପଣ କବିତା ଲେଖାରୁ ନିଜ ସାହିତ୍ୟିକ ଜୀବନ ଆରମ୍ଭ କରିଥିଲେ। ପରବର୍ତ୍ତୀ କାଳରେ ଜଣେ କୀର୍ତ୍ତିମାନ କଥା ସାହିତ୍ୟିକ ଭାବରେ ଆପଣ ପ୍ରସିଦ୍ଧି ଲାଭ କରିଛନ୍ତି। କେବଳ କବିତା ନ ଲେଖି ଗଳ୍ପ ଲେଖାରେ ଆପଣ କାହିଁକି ହାତ ଦେଲେ? ଆପଣ ଗଳ୍ପର ଭାବବସ୍ତୁ, କଥାବସ୍ତୁ, ଭାଷା ଓ ଶୈଳୀ ଏଥି ମଧ୍ୟରେ କାହାକୁ ଅଧିକ ପ୍ରାଧାନ୍ୟ ଦିଅନ୍ତି?

ଉତ୍ତର : ସ୍କୁଲରେ ପଢ଼ିବା ବେଳେ କବିତା ଲେଖୁଥିଲି(ସେତେବେଳେ କିଛି ଅପରିପକ୍ୱ ଗଳ୍ପ ମଧ୍ୟ ଲେଖିଥିଲି)। ୧୯୬୦ରେ ଦୁଇଟି ନାଟିକା ଲେଖିଥିଲି (ଯାହା ୧୯୮୩ରେ 'ପୂର୍ବରାଗ' ଶିରୋନାମାରେ ପ୍ରକାଶ ପାଇଥିଲା) ଏବଂ ୧୯୭୧ରେ ନାଟକ ଲେଖିଥିଲି 'ସୂର୍ଯ୍ୟାସ୍ତ ପୂର୍ବରୁ'(ବହି ଆକାରରେ ୧୯୭୭ରେ ପ୍ରକାଶିତ)।ମୁଁ ପ୍ରଥମ ଗଳ୍ପ ଲେଖିଲି ୧୯୮୦ରେ। କବିତା ଛାଡ଼ି ନାଟକ ଲେଖିଲି ଏଇଥିପାଇଁ ଯେ, ମୁଁ ଭାବିଲି କିଛି କଥା କବିତାରେ ନ କହି ଗପ ନାଟକରେ କହିବା ବେଶି ଉପଯୁକ୍ତ ହେବ।

(ଏ ବିଷୟରେ ପ୍ରାସଂଗିକ ଯେ ମୁ ଉନବିଂଶ ଶତାବ୍ଦୀ ଓଡ଼ିଶା ବିଷୟରେ ଗବେଷଣା କରିବା ବେଳେ ସାଧୁ ସୁନ୍ଦର ଦାସ ଓ ମିଶନାରୀମାନଙ୍କ ବିଷୟରେ ଯେଉଁ ତଥ୍ୟ ସଂଗ୍ରହ କରିଥିଲି ତାକୁ ଗୋଟିଏ ଉପନ୍ୟାସରେ ଲେଖିପାରିଥାନ୍ତି। ତେବେ ଏଇ ମାତ୍ର ଦେଶ କାଳ ପାତ୍ର ପ୍ରକାଶ ପାଇ ଥିବାରୁ ଭାବିଲି ଯେ, ସେ ବିଷୟ ନେଇ ଏକ ନାଟକ ଲେଖିବା ଠିକ୍ ହେବ।)

ଗଳ୍ପର(ବା କବିତାର ଭାଷା ଶୈଳୀ ଇତ୍ୟାଦି ବିଷୟରେ ମୁଁ କେବେ ଭାବି

ନାହିଁ। ମତେ ଯେଭଳି ଠିକ୍ ଲାଗେ ମୁଁ ସେହି ଭଳି ଲେଖେ। ତେବେ ଭାବି ଚିନ୍ତି ଶବ୍ଦ ପ୍ରୟୋଗ ଓ ବାକ୍ୟ ଗଠନ କରିବାକୁ ଚେଷ୍ଟା କରିଥାଏ। (ଏବଂ ଅଭିଧାନର ସାହାଯ୍ୟ ନେଇଥାଏ) ଏବଂ ଲେଖାକୁ ବାରମ୍ବାର ସଂଶୋଧନ କରିଥାଏ।

ପ୍ରଶ୍ନ : ସାହିତ୍ୟିକର ସମାଜ ପ୍ରତି ଅଙ୍ଗୀକାର ରହିବା ଉଚିତ। ଏ ସଂପର୍କରେ ଆପଣଙ୍କ ନିଜସ୍ୱ ମତ କ'ଣ ?

ଉତ୍ତର : ସାହିତ୍ୟିକର ସମାଜବଦ୍ଧତା ଓ ସାମାଜିକ ଦାୟିତ୍ୱ ବିଷୟରେ ଦ୍ୱିମତ ହୋଇପାରେ ନା, ସାହିତ୍ୟିକକୁ ସମାଜମନସ୍କ ହେବାକୁ ହିଁ ହେବ। ସମାଜ ସାହିତ୍ୟିକ ଓ ତାର କୃତିକୁ ସମ୍ମାନ ଦେଉଥିବାରୁ ଲେଖକର ସମାଜ ପ୍ରତି ଏକ ବିଶେଷ ଦାୟିତ୍ୱ ରହିଛି। କୌଣସି ସମସ୍ୟାର ସମାଧାନ ନିରୂପଣ କରିବା ଲେଖକର କର୍ତ୍ତବ୍ୟ ହୋଇ ନପାରେ। କିନ୍ତୁ ସାମାଜିକ ସମସ୍ୟାକୁ ଲୋକମାନଙ୍କ ଆଗରେ ଠିକ୍ ଭାବରେ ଉପସ୍ଥାପିତ କରିବା ସାହିତ୍ୟିକର ଦାୟିତ୍ୱ ନିଶ୍ଚୟ।

ଏ କଥା ଆଶା କରିବା ଉଚିତ୍ ନୁହେଁ ଯେ ପ୍ରତି ଲେଖକର ପ୍ରତିଟି ଲେଖା ସମାଜର କୌଣସି ବିଶେଷ ସମସ୍ୟାକୁ ନେଇ ଲେଖା ହେବ। ତେବେ ସବୁ ଲେଖକ ଯଦି ନିଜର ଲେଖାକୁ ସମାଜ ଓ ରାଜନୀତିରୁ ଅଲଗା କରି ନିଅନ୍ତି ତାହା ଚିନ୍ତାର ବିଷୟ ହେବ। ଏ ବିଷୟରେ ନିକଟରେ ଜୟନ୍ତ ମହାପାତ୍ର ଓଡ଼ିଆ କବିତା ସଂପର୍କରେ ଦେଇଥିବା ମନ୍ତବ୍ୟ ପ୍ରଣିଧାନଯୋଗ୍ୟ। ସେ କହିଛନ୍ତି,'ଗତ ପଚାଶ ବର୍ଷର ବହୁ ପ୍ରଶଂସିତ ଓ ତଥାକଥିତ ସଫଳ ଓଡ଼ିଆ କବିତା ପ୍ରାସଂଗିକ ସାମାଜିକ ଓ ରାଜନୈତିକ ଓ ସାଧାରଣ ମଣିଷର ସମସ୍ୟାକୁ ଏଡ଼ାଇ ଯାଇଛି, ଏହା 'ପଳାୟନ'ର କବିତା ଏବଂ ଶହେ ବର୍ଷ ତଳେ କବିମାନେ ଯେଉଁ ସବୁ ପୁରୁଣା କଥା ବିଷୟରେ କହୁଥିଲେ ତାହାରି ଚାରିପାଖେ ପର୍ଯ୍ୟବସିତ।'

ପ୍ରଶ୍ନ : ଆପଣଙ୍କ ରଚିତ 'ଆହ୍ନିକ' କବିତା ସଂକଳନ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରତ୍ୟାଖ୍ୟାନ କରିଥିଲେ। ଅଥଚ ଆପଣଙ୍କ ଗଳ୍ପ ଗ୍ରନ୍ଥ ପାଇଁ ପ୍ରଦତ୍ତ ଶାରଳା ପୁରସ୍କାର ଗ୍ରହଣ କରିଥିଲେ। ଏହାର କାରଣ କ'ଣ ?

ଉତ୍ତର : ପୁରସ୍କାର ସବୁ ସମୟରେ ଏକ ବିବାଦାସ୍ପଦ ଜିନିଷ। ତେବେ ଓଡ଼ିଶାରେ ସାହିତ୍ୟ ପୁରସ୍କାରର ପୂର୍ବ ଓ ପରବର୍ତ୍ତୀ ସମୟରେ ଯେତେ ପ୍ରକାରର ଅପଚେଷ୍ଟା, କଳ କୌଶଳ, ଈର୍ଷା, ବିଦ୍ୱେଷ, ବିରୂପତା ଦେଖା ଯାଇଥାଏ, ତାର ତୁଳନା ନାହିଁ। ତେଣୁ ଏ ବିଷୟରେ ଯେତେ କମ୍ ଆଲୋଚନା ହେବ ସେତିକି ଭଲ।

ପ୍ରଶ୍ନ : ଶିଳ୍ପପତିମାନଙ୍କଠାରୁ ଆରମ୍ଭ କରି ସାହିତ୍ୟ ଅନୁଷ୍ଠାନମାନଙ୍କ ପର୍ଯ୍ୟନ୍ତ ବହୁ ବ୍ୟକ୍ତି ଓ ଅନୁଷ୍ଠାନ ସାହିତ୍ୟ ପୁରସ୍କାର ପ୍ରଦାନ କରୁଛନ୍ତି। ଏହି ସାହିତ୍ୟ ପୁରସ୍କାର ସାହିତ୍ୟ ସୃଷ୍ଟିରେ କେତେ ଦୂର ସହାୟକ ହେଉଛି ?

ଉତ୍ତର : ସାହିତ୍ୟ ପୁରସ୍କାର ସାହିତ୍ୟ ସୃଷ୍ଟି ପାଇଁ ଆଦୌ ସହାୟକ ନୁହେଁ। ଏହା ଦ୍ୱାରା ସାହିତ୍ୟିକକୁ ସ୍ୱୀକୃତି ଓ ସମ୍ମାନ ମିଳିଥାଏ ଏବଂ ଏହା ତା'ର ବହିର ବିକ୍ରୟରେ ସାହାଯ୍ୟ କରିଥାଏ। କିନ୍ତୁ ଓଡ଼ିଶାରେ ତା' ମଧ୍ୟ ହୁଏ ନାହିଁ।

ପ୍ରଶ୍ନ : 'ଦେଶ କାଳ ପାତ୍ର' ଆପଣଙ୍କର ଓଡ଼ିଆ ସାହିତ୍ୟରେ ଏକ ଅନନ୍ୟ ସୃଷ୍ଟି। ଏହି ଗ୍ରନ୍ଥ ପଶ୍ଚାଦ୍ ଭାଗରେ ଥିବା ଆଭିମୁଖ୍ୟ, ସଂଗୃହୀତ ତଥ୍ୟ ଓ ବିଷୟ ବିନ୍ୟାସ ସଂପର୍କରେ କିଛି କୁହନ୍ତୁ।

ଉତ୍ତର : ଓଡ଼ିଶା ଚିତ୍ରକଳା ସଂପର୍କରେ ଗବେଷଣା କରିବା ସମୟରେ ମୁଁ ଊନବିଂଶ ଶତାବ୍ଦୀର ଓଡ଼ିଶା ବିଷୟରେ ପଢ଼ାପଢ଼ି କରୁଥିଲି। ସେ ସମୟରେ ଓଡ଼ିଶାରେ ସାମାଜିକ ସାଂସ୍କୃତିକ ଜୀବନ ଓ ସେଥିରେ ଅଦଳବଦଳ ମତେ ଅତ୍ୟନ୍ତ ଚିତ୍ତାକର୍ଷକ ମନେ ହୋଇଥିଲା। ସେତେବେଳେ ସେ ବିଷୟକୁ ନେଇ ବହି ଲେଖିବା ମୋର କଳ୍ପନାରେ ନଥିଲା। ତେବେ ସେ ସମୟରେ ଅନ୍ୟମାନଙ୍କ ସହିତ କଥାବାର୍ତ୍ତା କରି ଜାଣିଲି ଯେ, ଯଦିଓ ଏ ସମୟଟି ଆମର ଅତି ପୁରୁଣା ନୁହେଁ (ଅନେକେ ବର୍ତ୍ତମାନ ଶୁଣି ବିଶ୍ୱାସ କରନ୍ତି ନାହିଁ ଯେ ଦେଶ କାଳ ପାତ୍ରର ଜଣେ ଚରିତ୍ରଙ୍କୁ ମୁଁ କଲେଜରେ ପଢ଼ିଲା ବେଳେ ଭେଟିଥିଲି), ଆମେ ସେ ସମୟ ବିଷୟରେ ଅଜ୍ଞ। ଉଦାହରଣ ସ୍ୱରୂପ, ପ୍ୟାରୀ ମୋହନ ଆଚାର୍ଯ୍ୟଙ୍କର ଦାଢ଼ି ଥିବା ଟୋପି ପିନ୍ଧା ଫଟୋ ଦେଖି ସାଧାରଣଙ୍କର ଧାରଣା ଥିଲା ଯେ ସେ ଅନେକ ଦିନ ବଞ୍ଚିଥିଲେ – କିନ୍ତୁ ସେ ବଞ୍ଚିଥିଲେ ମାତ୍ର ତିରିଶ ବର୍ଷ। ସେହିପରି ନଅଙ୍କ ଦୁର୍ଭିକ୍ଷ ବିଷୟରେ ସମସ୍ତେ ଶୁଣିଥିଲେ ମଧ୍ୟ ଏହାର କରାଳତା ବିଷୟରେ କାହାରି ବିଶେଷ ଧାରଣା ନାହିଁ। (ଫକୀର ମୋହନଙ୍କ ଆତ୍ମଜୀବନୀରେ ଅଳ୍ପ ବର୍ଣ୍ଣନା ଓ 'ମୁକ୍ତାଗଡ଼ର କ୍ଷୁଧା' ଓ 'ହା ଅନ୍ନ' ଉପନ୍ୟାସର ରୋମାଞ୍ଚଧର୍ମୀ ଚିତ୍ର ବ୍ୟତୀତ)। ମୁଁ ଭାବିଲି ଯେ ସେ ସମୟ ବିଷୟରେ ଯଦି ସରଳ ଭାବରେ ଲେଖାଯାଏ, ସାଧାରଣ ଓଡ଼ିଆ ପାଠକ ନିଜ ଜାତିର ଏକ ମହତ୍ତ୍ୱପୂର୍ଣ୍ଣ ଅଧ୍ୟାୟ ବିଷୟରେ ଜାଣି ଖୁସି ଓ ଲାଭବାନ ହେବେ।

ଦେଶ କାଳ ପାତ୍ରର ସମସ୍ତ ତଥ୍ୟ ପ୍ରକାଶିତ ପୁସ୍ତକ ତଥା ରାଜ୍ୟ ଅଭିଲେଖାଗାରର ଦଲିଲମାନଙ୍କରୁ ସଂଗୃହୀତ। ଦୁଃଖର ବିଷୟ ଯେ ଓଡ଼ିଶା ସଂପର୍କିତ ଅନେକ ଦଲିଲ ଓଡ଼ିଶାରେ ଉପଲବ୍ଧ ନୁହେଁ। ଦୁର୍ଭିକ୍ଷ କମିଶନଙ୍କ ରିପୋର୍ଟ ମତେ କଲିକତା ନ୍ୟାସନାଲ ଲାଇବ୍ରେରୀରୁ ପଢ଼ିବାକୁ ହୋଇଥିଲା! ସେହିପରି ସୁନ୍ଦର ଦାସ ନାଟକରେ ବ୍ୟବହାର କରିଥିବା ତଥ୍ୟମାନ ମତେ ମିଳିଥିଲା ଶ୍ରୀରାମପୁର ମିଶନ କଲେଜ ଲାଇବ୍ରେରୀରୁ। ଦେଶ କାଳ ପାତ୍ରର ବଷୟ ବିନ୍ୟାସ ବିଷୟରେ ଏତିକି କହିବି ଯେ ଗବେଷଣା ସମୟରେ ସଂଗ୍ରହ କରିଥିବା ସମସ୍ତ ତଥ୍ୟ ବହିରେ ବ୍ୟବହାର କରିବା ସମ୍ଭବ ନୁହେଁ। ତେଣୁ ଏ ବହିର ପରିସର ସେତେବେଳେ

ଇଂରାଜୀ ଶାସିତ ଅଞ୍ଚଳ ଏବଂ ଯେଉଁମାନଙ୍କ ବିଷୟରେ ଲିଖିତ ବିବରଣୀ ଉପଲବ୍‌ଧ ସେଥିରେ ସୀମାବଦ୍ଧ। ବହିର ସମୟ କାଳ ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧ, ଏଥିରେ କୌଣସି କାଳ୍ପନିକ ଚରିତ୍ର ବା ଘଟଣା ନାହିଁ। (ବହିର ଦୁଇଟି 'କାଳ୍ପନିକ' ଚରିତ୍ର ଗୋବିନ୍ଦ ସାମନ୍ତ ଓ ପ୍ରଭୁଦୟାଳଙ୍କୁ କଳ୍ପନା କରିଥିଲେ ଲାଲ ବିହାରୀ ଦେ ଓ ଫକୀର ମୋହନ ସେନାପତି, ବେଙ୍ଗଲ ପେଜାଣ୍ଟ ଲାଇଫ ଓ ମାମୁଁ ବହିରେ। ଏମାନଙ୍କୁ ବ୍ୟବହାର କରିବା ଦୁଇ ଜଣ ବିଶିଷ୍ଟ ଲେଖକଙ୍କ ପାଇଁ ମୋର ଶ୍ରଦ୍ଧାଞ୍ଜଳି) ଯଦି ବହିରେ କୌଣସି ନାଟକୀୟତା ଥାଏ, ତାହା ଚରିତ୍ର ଓ ଘଟଣାର ନିଜସ୍ୱ କିମ୍ବା ସେମାନଙ୍କର ସାନିଧ୍ୟ ଜନିତ।

ପ୍ରଶ୍ନ : ଆପଣଙ୍କ ବହୁ ଗଳ୍ପ, କବିତା ଗ୍ରନ୍ଥ ଇଂରାଜୀ ଏବଂ ଅନ୍ୟାନ୍ୟ ଭାରତୀୟ ଭାଷାରେ ଅନୂଦିତ ହୋଇଛି। ଅନ୍ୟାନ୍ୟ ପ୍ରାନ୍ତୀୟ ଭାରତୀୟ ସାହିତ୍ୟର ପ୍ରେକ୍ଷାପଟରେ ଓଡ଼ିଆ କାବ୍ୟ କବିତା ଓ କଥାସାହିତ୍ୟ କେତେ ଦୂର ତୁଳନୀୟ, ଏ ସଂପର୍କରେ ଆପଣଙ୍କ ନିଜସ୍ୱ ମତ ବ୍ୟକ୍ତ କରନ୍ତୁ।

ଉତ୍ତର : ହଁ, ମୋର କିଛି ଲେଖା ଅନୁବାଦ ହୋଇଛି ଓ ଭିନ୍ନ ଭାଷାରେ କିଛି ପ୍ରସାରିତ ହୋଇଛି। କିନ୍ତୁ ମୁଁ ଓଡ଼ିଆ ଲେଖୁଥିବାରୁ ଓଡ଼ିଶା ହିଁ ମୋର କର୍ମକ୍ଷେତ୍ର ଏବଂ ମୁଁ ସ୍ୱୀକୃତି ଖୋଜିବି ଓଡ଼ିଆ ପାଠକମାନଙ୍କ ପାଖରୁ ହିଁ।

ମୁଁ ଅନ୍ୟାନ୍ୟ ଭାଷାର ଖୁବ୍ ବେଶି ଲେଖା ପଢ଼ି ନ ଥିବାରୁ ତୁଳନା କରିବା ସମ୍ଭବ ନୁହେଁ । ତେବେ ସାଧାରଣ ଭାବେ ଏତିକି କହିବି ଯେ, ଉପନ୍ୟାସକୁ ଛାଡ଼ିଦେଲେ ଓଡ଼ିଆ ଲେଖାର ସ୍ଥାନ ଆଉ କୌଣସି ସାହିତ୍ୟଠାରୁ ପଛରେ ନାହିଁ।

ପ୍ରଶ୍ନ : ବର୍ତ୍ତମାନ ଆପଣ ନିଜେ କ'ଣ ଲେଖା ଲେଖି କରୁଛନ୍ତି, ସେ ସଂପର୍କରେ କିଛି ସୂଚନା ଦିଅନ୍ତୁ। ଆପଣ ଉପନ୍ୟାସ ଲେଖୁଛନ୍ତି କି ?

ଉତ୍ତର : ଅନେକ ଦିନ ହେଲା ବିଶେଷ କିଛି ଲେଖା ଲେଖି କରି ନଥିବାରୁ ମୋର ମନରେ ଅନେକ ଦୁଃଖ। ଏ ଭଳି ପ୍ରଶ୍ନ କରି ଆଉ କଷ୍ଟ ଦିଅନ୍ତୁ ନାହିଁ।

*(ନବରବି/ପୂଜା ବିଶେଷାଙ୍କ : ୨୦୦୧)*

# ସାକ୍ଷାତ୍‌କାର : ୫

ପ୍ରଶ୍ନ : ଆପଣ ଗଳ୍ପ ଲେଖିବା ଆରମ୍ଭ କଲା ବେଳକୁ ଓଡ଼ିଆ ଗଳ୍ପର ସ୍ଥିତି କ'ଣ ଥିଲା? ବର୍ତ୍ତମାନର ସ୍ଥିତି ତା'ଠାରୁ ଉନ୍ନତି ନା ଅବନତି କରିଛି?

ଉତ୍ତର : କବିତା ଲେଖିବାର ଅନେକ ଦିନ ପରେ ମୁଁ ଗଳ୍ପ ଲେଖାରେ ହାତ ଦେଲି। ମୋର ପ୍ରଥମ ଗଳ୍ପ ପ୍ରକାଶ ପାଇଲା ୧୯୮୦ରେ। ସେତେବେଳେ ଓଡ଼ିଆ ଗଳ୍ପର ସ୍ଥିତି କ'ଣ ଥିଲା, ସେ ବିଷୟରେ ମୁଁ କୌଣସି ମତ ଦେଇ ପାରୁନାହିଁ। କାରଣ ଓଡ଼ିଆ ଗଳ୍ପ ସାହିତ୍ୟର ଇତିହାସ ବିଷୟରେ ମୋର କୌଣସି ଅଧ୍ୟୟନ ନାହିଁ। ମୁଁ ଯେତିକି ପଢ଼ିଛି, ସେଥିରୁ ଜାଣୁଛି ଯେ ବର୍ତ୍ତମାନ ଗଳ୍ପର ସ୍ଥିତି ନିଶ୍ଚିତ ଭାବେ ପୂର୍ବ ସ୍ଥିତିଠାରୁ ଉନ୍ନତ।

ପ୍ରଶ୍ନ : ପ୍ରକୃତ ଅର୍ଥରେ ଆପଣ ଗଳ୍ପ କାହାକୁ କହିବେ? (ଯେପରିକି ଗଳ୍ପର ପୃଷ୍ଠଭୂମି ଚୟନ, ଶବ୍ଦ ସଂଯୋଜନା, ବାକ୍ୟ ବିନ୍ୟାସ ଓ ଘଟଣା ଚରିତ୍ର କିପରି ହେବା ଉଚିତ? ଏଥିରେ କେଉଁ ପ୍ରକାର ବାର୍ତ୍ତା ଥିଲେ ଭଲ? ଏହାର ସୀମାବଦ୍ଧତା କିପରି ହେବା ଉଚିତ? ଇତ୍ୟାଦି ଇତ୍ୟାଦି।

ଉତ୍ତର : ଗଳ୍ପର ପରିଭାଷା କ'ଣ, ତା' ତାତ୍ତ୍ୱିକ ଓ ସାହିତ୍ୟବିତ୍‌ମାନେ ହିଁ କହିପାରିବେ। ଗଳ୍ପ କିପରି ହେବା ଉଚିତ, ସେ ବିଷୟରେ ନିର୍ଦ୍ଦିଷ୍ଟ ମତ ହୋଇ ନ ପାରେ ଏବଂ ମୁଁ ସେ ବିଷୟରେ କୌଣସି ଚିନ୍ତା କରିନାହିଁ। ସଂପୂର୍ଣ୍ଣ ଭିନ୍ନ ପୃଷ୍ଠଭୂମି, ଶବ୍ଦ ଯୋଜନା ଏବଂ ଘଟଣା ଓ ଚରିତ୍ରକୁ ନେଇ ନିଶ୍ଚୟ ବିଭିନ୍ନ ପ୍ରକାରର ଗଳ୍ପ ଲେଖା ଯାଇପାରେ। ସେଥିରେ ଔଚିତ୍ୟର କୌଣସି ପ୍ରଶ୍ନ ନାହିଁ। ଗଳ୍ପରେ କୌଣସି ବାର୍ତ୍ତା ନଥିଲେ ଭଲ। ଯାହାର କୌଣସି ବାର୍ତ୍ତା ଦେବାର ଥାଏ ସେ ବାର୍ତ୍ତା ଲେଖିବା ଉଚିତ, ଗଳ୍ପ ନୁହେଁ।

ପ୍ରଶ୍ନ : ଓଡ଼ିଆ ସାହିତ୍ୟରେ ଆପଣଙ୍କର ଆବିର୍ଭାବ ଘଟି ନଥିଲେ ଓଡ଼ିଆ ସାହିତ୍ୟର କିପରି କ୍ଷତି ଅଥବା ଲାଭ ହୋଇଥାନ୍ତା?

ଉତ୍ତର : ଆବିର୍ଭାବ ଏକ ଭାରି ଶବ୍ଦ। ମୁଁ ଲେଖି ନଥିଲେ କାହାରି ଲାଭ ବା କ୍ଷତି ହୋଇ ନଥାନ୍ତା।

ପ୍ରଶ୍ନ : ନୂତନ ପୀଢ଼ୀର ଗାଳ୍ପିକମାନଙ୍କୁ ପଢ଼ନ୍ତି କି? ନୂତନ ପୀଢ଼ୀର ଗଳ୍ପ ସଂପର୍କରେ କ'ଣ କହିବାକୁ ଚାହିଁବେ? ଆଗାମୀ ଦିନମାନଙ୍କରେ ଓଡ଼ିଶା ଗଳ୍ପ-ସାହିତ୍ୟର

ଭବିଷ୍ୟତ କିପରି ହେବ ବୋଲି ଆପଣ ଭାବୁଛନ୍ତି ?

ଉତ୍ତର : ପତ୍ର ପତ୍ରିକାରେ ମୁଁ ଅନେକ ନୂଆ ଲେଖକଙ୍କର ଗଳ୍ପ ପଢ଼ିଛି ଏବଂ ସେଥିରୁ କିଛି ନିଶ୍ଚୟ ଉଚ୍ଚକୋଟିର। ଭବିଷ୍ୟତରେ କ'ଣ ହେବ କିଏ ଜାଣେ ?

ପ୍ରଶ୍ନ : ଓଡ଼ିଆ ଗଳ୍ପ-ସାହିତ୍ୟ ବିଷୟରେ ଆପଣ ଆଉ କିଛି କହିବାକୁ ଚାହୁଁଛନ୍ତି କି ଯାହା ପଚରା ଯାଇ ନାହିଁ ?

ଉତ୍ତର : ସାହିତ୍ୟରେ ଗଳ୍ପ ଏକ ଗୌଣ ବିଭାଗ। କୌଣସି ଦେଶ ବା ଭାଷାର ସାହିତ୍ୟକୁ ଉପନ୍ୟାସ, କବିତା ଓ ନାଟକ ମାଧ୍ୟମରେ ଆକଳନ କରାଯାଇଥାଏ, ଗଳ୍ପ ଦେଇ ନୁହେଁ। ତେଣୁ ଗଳ୍ପ ଲେଖକମାନେ ଉପନ୍ୟାସ ଲେଖିଲେ ବୋଧହୁଏ ଓଡ଼ିଆ ସାହିତ୍ୟର ମଙ୍ଗଳ ହେବ।

*(ଅବୋଲକରା ଜିଜ୍ଞାସା: କାଦମ୍ବିନୀ/ ଜାନୁଆରୀ, ୨୦୦୪)*

# ସାକ୍ଷାତ୍କାର : ୬

ପ୍ରଶ୍ନବଳୀ:

୧. ଲେଖକୀୟ ଜୀବନର ପ୍ରଥମ ପର୍ବର କେଉଁ ଘଟଣାଟି ଆପଣ ଏବେ ବି ସ୍ମରଣ କରନ୍ତି ?

୨. ଆପଣଙ୍କ ପ୍ରଥମ ଲେଖାଟି କ'ଣ ଓ କେଉଁ ପ୍ରେକ୍ଷାପଟରେ ଏହା ରଚିତ ?

୩. ଲେଖକ ହେବା ପାଇଁ କିଛି ପ୍ରେରଣା ମିଳିଥିଲା କି ? ଯଦି ହଁ, ତେବେ ପ୍ରଥମ ପ୍ରେରଣା ଦାତା କିଏ ?

୪. ଅପଣଙ୍କ ସୃଜନ କର୍ମ ପ୍ରତି ଯଶସ୍ୱୀ ଶିକ୍ଷକ ପିତାଙ୍କ ପ୍ରେରଣା ରହିଛି କି ? ସେ ସଂପର୍କରେ ସୂଚନା ଦିଅନ୍ତୁ ।

୫. ଲେଖକ ଜୀବନର ଦୀର୍ଘପଥ ଅତିକ୍ରମ କଲା ପରେ କୁହନ୍ତୁ କେଉଁ ପର୍ଯ୍ୟାୟରେ ପହଞ୍ଚିଲା ବେଳେ ଏ କ୍ଷେତ୍ରରେ ଆପଣଙ୍କର ଆତ୍ମବିଶ୍ୱାସ ପାଇଲେ ?

୬. ସୃଜନକର୍ମକୁ ନେଇ ପହିଲି ପୁଲକ କେବେ ପାଇଲେ ସେ ସଂପର୍କରେ ସୂଚନା ଦିଅନ୍ତୁ ।

ସମସ୍ତ ପ୍ରଶ୍ନର ଉତ୍ତର :

ଅନେକଙ୍କ ଭଳି ମୁଁ ମଧ୍ୟ ପିଲା ଦିନରୁ କବିତା ଲେଖା ଆରମ୍ଭ କରିଥିଲି, ତେଣୁ ପ୍ରଥମ ଲେଖାଟି କଣ ଏବଂ କେଉଁ ପ୍ରେକ୍ଷାପଟରେ ରଚିତ ଏତେ ବର୍ଷ ପରେ ମନେ ପକାଇବା ସମ୍ଭବ ନୁହେଁ । ତା ବ୍ୟତୀତ, ମୁଁ ଏ ପର୍ଯ୍ୟନ୍ତ ମୋର ଲେଖକୀୟ ଜୀବନର ସ୍ମୃତିଚାରଣ ଆରମ୍ଭ କରି ନାହିଁ ।

ପୁରୁଣା କାଗଜପତ୍ରରୁ ମିଳିଥିବା ମୋର କେତୋଟି ପ୍ରଥମ ଲେଖାର ବିବରଣୀ ଏପରି :

୧. ପ୍ରତ୍ୟୁତ୍ତର(କବିତା) : କୁଂକୁମ(ବମ୍ବେ)/ ଡିସେମ୍ବର, ୧୯୪୯– ଜାନୁଆରୀ, ୧୯୫୦ ସଂଖ୍ୟା ।( ଏ ସଂଖ୍ୟାର ଅନ୍ୟାନ୍ୟ ଲେଖକମାନଙ୍କ ଭିତରେ ଥିଲେ ଅଖିଳ ମୋହନ ପଟ୍ଟନାୟକ, ମହାପାତ୍ର ନୀଳମଣି ସାହୁ, ମନୋଜ କୁମାର ଦାସ, ନଟବର ସାମନ୍ତରାୟ)

୨. ଲାଲ ଚକଡି(ଗଳ୍ପ) କୁଂକୁମ(ବମ୍ବେ) / ଏପ୍ରିଲ–ମେ, ୧୯୫୦ । (ଅନ୍ୟାନ୍ୟ ଲେଖକ ହେଲେ ଫତୁରାନନ୍ଦ, ବିଦ୍ୟୁତପ୍ରଭା ଦେବୀ)

୩. ସ୍ତବକ(୩୯ଟି କବିତା ସଂଗ୍ରହ) : ୧୯୫୧, ପ୍ରକାଶକ : ଓଡ଼ିଶା ପବ୍ଲିଶିଂ

ସାକ୍ଷାତକାରହାଉସ। ମୂଲ୍ୟ ଆଠ ଅଣା, ଅତିରିକ୍ତ ମୂଲ୍ୟ ଦୁଇ ଅଣା।

୪. ଶପଥ(କବିତା) : ଆସନ୍ତାକାଲି/ଜାନୁଆରୀ, ୧୯୫୧।(ଅନ୍ୟାନ୍ୟ ଲେଖକ ହେଲେ ନିତ୍ୟାନନ୍ଦ ମହାପାତ୍ର, ଜାନକୀ ମହାନ୍ତି)

୫. ପଲ୍ଲୀକବି ନନ୍ଦ କିଶୋର(ପ୍ରବନ୍ଧ) : ଆସନ୍ତାକାଲି/ ଅଗଷ୍ଟ ୧୯୫୩।

୬. ଶଶିଭୂଷଣ(କବିତା) : ପ୍ରଜାତନ୍ତ୍ର / ସେପ୍ଟେମ୍ବର, ୧୯୫୩।

୭. ଦୁଃଖ ନାହିଁ(କବିତା) : ଡଗର/ ଜୁଲାଇ, ୧୯୫୩( ଅନ୍ୟାନ୍ୟ ଲେଖା ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ କଣାମାମୁ ଓ ଚିତ୍ତରଂଜନ ଦାସଙ୍କର ସାଗର ଯାତ୍ରୀ)

୮. ଛୋଟ କଥା(କବିତା) : କବିତା (କଲିକତା, ସଂପାଦକ ଦୁର୍ଗାଚରଣ ପରିଡ଼ା ଓ କୃଷ୍ଣଚରଣ ବେହେରା) ତୃତୀୟ ସଂକଳନ, ୧୯୫୪(ଅନ୍ୟାନ୍ୟ ଲେଖକ କାଳିନ୍ଦୀ ଚରଣ ପାଣିଗ୍ରାହୀ, ନିତ୍ୟାନନ୍ଦ ମହାପାତ୍ର, ଦେବୀ ପ୍ରସନ୍ନ ପଟ୍ଟନାୟକ)

୯. ମୁହୂର୍ତ୍ତ(କବିତା) : ଆଗାମୀ (ସଂପାଦକ ପରିଷଦ- ମନୋଜ ଦାସ, ଜଗନ୍ନାଥ ପ୍ରସାଦ ଦାସ ଇତ୍ୟାଦି) ନଭେମ୍ବର, ୧୯୫୪(ଅନ୍ୟାନ୍ୟ ଲେଖକ ପ୍ରାଣକୃଷ୍ଣ ପରିଜା, କାଳିନ୍ଦୀଚରଣ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ରମାକାନ୍ତ ନାଥ, ବ୍ରଜନାଥ ନାଥ)

ମୋର ଏ ସବୁ ଲେଖା ଅତ୍ୟନ୍ତ ଅପରିପକ୍ୱ ଥିଲା। ଏହାର ବିଶଦ ବିବରଣୀ ଦେବାର ଉଦ୍ଦେଶ୍ୟ ସେତେବେଳର ସାହିତ୍ୟିକ ପତ୍ରିକା ଓ ତାର ଲେଖକମାନଙ୍କ ସଂପର୍କରେ ଧାରଣା ଦେବା। ସଂପାଦକମାନେ ପ୍ରତିଷ୍ଠିତ ଲେଖକମାନଙ୍କ ସହିତ ଅର୍ବାଚୀନମାନଙ୍କୁ ସ୍ଥାନ ଦେବା ସେମାନଙ୍କର ଉଦାରତା ହିଁ ସୂଚାଏ।

ଲେଖକ ପାଇଁ ପ୍ରେରଣା ସବୁ ଦିଗରୁ ଆସେ : ଶିକ୍ଷକ, ପିତା, ପରିବାର, ଗୁରୁ ଗୁରୁଜନ, ପୁସ୍ତକ, ସମାଜ, ପରିବେଶ ଇତ୍ୟାଦି ଇତ୍ୟାଦି। ମୋ ପାଇଁ ଲେଖିବାର କୌଣସି ବିଶେଷ ପ୍ରେରଣା ଥିବାର ମୋର ମନେ ହେଉ ନାହିଁ।

ନିଜ ଲେଖା ବିଷୟରେ ଆତ୍ମବିଶ୍ୱାସ (ତା ନିରାଧାର ଭ୍ରମାତ୍ମକ ଓ ନିର୍ବୋଧ ହୋଇଥାଉ ପଛେ) ନ ଥିଲେ ମୁଁ କାହିଁକି କିଶୋର ବୟସରେ ପ୍ରତିଷ୍ଠିତ ପତ୍ରିକାକୁ ଲେଖା ପଠାଇଥାନ୍ତି ?

ପ୍ରତିଟି ଲେଖିବା ବେଳେ ସେଇଟି ପ୍ରଥମ ଲେଖା ଭଳି ମନେ ହୁଏ, ଏବଂ ସେଇଟି ସଂପୂର୍ଣ୍ଣ କରିବାର ଆନନ୍ଦ ପ୍ରତିଥର ଏକ ପ୍ରଥମ ପୁଲକ।

*(ସୃଜନର ପହିଲି ପୁଲକ : ପ୍ରଜାତନ୍ତ୍ର, ୫ ଡିସେମ୍ବର, ୨୦୦୪)*

# ସାକ୍ଷାତ୍କାର : ୭

ପ୍ରଶ୍ନ : କୁହାଯାଏ କଳା ଓ ସାହିତ୍ୟ ରକ୍ତରେ ଥାଏ। ଆପଣଙ୍କ ସାହିତ୍ୟ ପ୍ରତି ଆକୃଷ୍ଟ ହେବା ପଛରେ ପୂର୍ବଜଙ୍କ ଭୂମିକା ଅଛି କି ?

ଉତ୍ତର : କଳା ଓ ସାହିତ୍ୟ ରକ୍ତରେ ଥାଏ, ଏହା ଏକ ଆଳଙ୍କାରିକ ଓ ପ୍ରତୀକାତ୍ମକ କଥା ମାତ୍ର। ମଣିଷ ମୋଟା ହେବା, ମଦ୍ୟପ ହେବା ବା ମନ୍ଦବୁଦ୍ଧି ହେବା 'ଜେନେଟିକ' ବା ଜିନ୍‌ଗତ ହୋଇପାରେ ବୋଲି ବୈଜ୍ଞାନିକ କହୁଛନ୍ତି, କିନ୍ତୁ ସେମାନେ ଏ ପର୍ଯ୍ୟନ୍ତ କହି ନାହାନ୍ତି ଯେ, ଜିନ୍‌ରେ କଳା ଓ ସାହିତ୍ୟ ମଧ୍ୟ ଅଛି। ରକ୍ତରେ ଥିବା କହିବାର ଅର୍ଥ ଯଦି ହୁଏ ଯେ, କଳାକାର ବା ସାହିତ୍ୟକାର ହେବା ଜନ୍ମଗତ, ଏ କଥା ସଂପୂର୍ଣ୍ଣ ଅମୂଳକ। ପ୍ରଚେଷ୍ଟା ଓ ସାଧନାକରି ଜଣେ ନିଜକୁ ସାହିତ୍ୟକାର ଭାବରେ ତିଆରି କରେ। କାହାରି ସାହିତ୍ୟ ପ୍ରତି ଆକୃଷ୍ଟ ହେବା ପଛରେ ଯେତିକି ପୂର୍ବଜଙ୍କର ଭୂମିକା ନଥାଏ, ସେତିକି ଥାଏ ପୂର୍ବବର୍ତ୍ତୀ ଲେଖକଙ୍କର।

ପ୍ରଶ୍ନ : କଳାହାଣ୍ଡିର ଜିଲ୍ଲାପାଳ ଥିଲାବେଳେ ଆପଣ କଳାହାଣ୍ଡିକୁ ଅତି ନିବିଡ଼ ଭାବରେ ଦେଖିଛନ୍ତି, ଅନୁଭବ କରିଛନ୍ତି ଓ ଏ ମାଟିର ମର୍ମ ବେଦନାକୁ ବୁଝିପାରିଛନ୍ତି। ସେ ସମୟର କଳାହାଣ୍ଡି ଓ ବର୍ତ୍ତମାନର କଳାହାଣ୍ଡି ଭିତରେ କି ପ୍ରକାର ପାର୍ଥକ୍ୟ ଦେଖିପାରୁଛନ୍ତି ?

ଉତ୍ତର : ଅନେକ ଦିନ ତଳେ ମୁଁ କଳାହାଣ୍ଡିରେ ତିନିବର୍ଷ(୧୯୬୩-୬୬) ଥିଲି ଏବଂ ସେଠାରେ କାମ କରିବାର ସୁଯୋଗ ପାଇଥିଲି। ସେହି ଦିନଠାରୁ ମୁଁ କଳାହାଣ୍ଡି ସହିତ ଯୋଗାଯୋଗ ରଖି ଆସିଛି। ଯଦିଓ ଏଇ ସମୟ ଭିତରେ ସେଠାରେ ଅନେକ ଯୋଜନା କାର୍ଯ୍ୟକାରୀ ହୋଇଛି, ଦାରିଦ୍ର୍ୟ ଦୂରୀକରଣରେ ସଫଳତା ମିଳି ନାହିଁ। ଆଜି ବି ଖବରକାଗଜର ଅନାହାର, ପିଲା ବିକ୍ରି, କାମ ପାଇଁ ବାହାରକୁ ଯିବା ଇତ୍ୟାଦିର ବିବରଣୀ ତା'ର ପ୍ରମାଣ।

ପ୍ରଶ୍ନ : ଭାରତୀୟ ପ୍ରଶାସନିକ ସେବାର ଅଧିକାରୀ ଭାବରେ ଆପଣ ଓଡ଼ିଶା ସରକାରଙ୍କ ବହୁ ଗୁରୁତ୍ୱପୂର୍ଣ୍ଣ ପଦପଦବୀରେ ଥିଲେ। ଏତେ କାର୍ଯ୍ୟ ବ୍ୟସ୍ତତା ଭିତରେ ସାହିତ୍ୟ ପାଇଁ କିପରି ସମୟ ବାହାର କରନ୍ତି ?

ଉତ୍ତର : ଓଡ଼ିଆ ସାହିତ୍ୟକୁ ସମ୍ବଳ କରି ଚଳିବା ସମ୍ଭବ ନୁହେଁ। ସେଥିପାଇଁ ସବୁ ଲେଖକଙ୍କର ଅନ୍ୟ କୌଣସି ପେଶା ଥାଏ ଏବଂ ସେଥିରୁ ସମୟ ମିଳିଲେ ହିଁ

ସେମାନେ ଲେଖିପାରନ୍ତି । ମୁଁ ବି ସେଇଭଳି ରବିବାରିଆ ଲେଖକ ଥିଲି ।

ପ୍ରଶ୍ନ : କଳାହାଣ୍ଡିର ମାଟି ଆପଣଙ୍କର ଭିତରେ ଥିବା କାବ୍ୟ ପୁରୁଷକୁ କିପରି ପ୍ରଭାବିତ କରିପାରିଛି ବୋଲି ଭାବନ୍ତି ?

ଉତ୍ତର : ବୟସ୍କ ଜୀବନର କେବଳ ତିନି ବର୍ଷ ହିଁ ମୁଁ ଗାଁଗଣ୍ଡା, ପାଣି, ମାଟି, କ୍ଷେତବାଡ଼ି, ଚାଷୀ ଆଦିବାସୀଙ୍କୁ ନିକଟରୁ ଦେଖିଛି, ମୋର ବାକି ସମୟ ସବୁ କଟିଛି ସହରରେ । ସେ ତିନିବର୍ଷ ଏକ ଅପୂର୍ବ ଅନୁଭୂତି ଯାହାର ବିକଳ୍ପ ନାହିଁ । ଏହା ମୋର ଲେଖାକୁ ନ ହେଉ ପଛେ ମୋ ଜୀବନକୁ ନିଶ୍ଚିତ ଭାବେ ପ୍ରଭାବିତ କରିଛି ।

ପ୍ରଶ୍ନ : ଆପଣ ଦିଲ୍ଲୀରେ ଅବସ୍ଥାନ କରୁଛନ୍ତି । ସେଠାରେ ସାହିତ୍ୟ ସାଧନା କେମିତି ଚାଲିଛି ?

ଉତ୍ତର : ଦିଲ୍ଲୀ ମୋର ସାହିତ୍ୟିକ ଘର ନୁହେଁ ମୋର ଠିକଣା ମାତ୍ର । ମୋର ଅଧିକାଂଶ ଲେଖା ମୁଁ ଦିଲ୍ଲୀରେ ଥିବାବେଳେ ହିଁ ଲେଖିଛି, ସେଥିପାଇଁ ମୋର କୌଣସି ସମସ୍ୟା ହୋଇନାହିଁ । ଲେଖକମାନଙ୍କ ପାଇଁ ଦିଲ୍ଲୀ ମନ୍ଦ ସହର ନୁହେଁ ।

ପ୍ରଶ୍ନ : ଆପଣଙ୍କ ସୃଷ୍ଟି ସମ୍ଭାର ସଂପର୍କରେ ପାଠକଙ୍କୁ କିଛି ସୂଚନା ଦେବେ କି ?

ଉତ୍ତର : ଲେଖିସାରିବା ପରେ ଲେଖାଟି ସର୍ବସାଧାରଣଙ୍କର ସଂପତ୍ତି ହୋଇଯାଏ, ମୋ ମତରେ ଲେଖକ ନିଜେ ନିଜର ଲେଖା ବିଷୟରେ କହିବା ଉଚିତ ନୁହେଁ, ଯଦି ସେ କିଛି କୁହେ, ତାକୁ ବିଶ୍ୱାସ କରିବା ଉଚିତ ନୁହେଁ ।

ପ୍ରଶ୍ନ : କୁହାଯାଏ ପ୍ରତ୍ୟେକ କବି ଜଣେ ଦରଦୀ ହୃଦୟର ମଣିଷଟିଏ । ଆପଣଙ୍କ ଦରଦ କିପରି ଓ କେଉଁମାନଙ୍କ ପାଇଁ ?

ଉତ୍ତର : କବି ମଧ ସଂସାରର ଆଉ ସବୁ ମଣିଷଙ୍କ ଭଳି ଜଣେ, ତାର ହୃଦୟ ଅନ୍ୟମାନଙ୍କ ଅପେକ୍ଷା ବେଶୀ ବା କମ୍ 'ଦରଦୀ' ନୁହେଁ । ମୋର ଦରଦ ନିଶ୍ଚୟ ଅଭାବୀ ଲୋକଙ୍କ ପାଇଁ ।

ପ୍ରଶ୍ନ : କବିଙ୍କୁ ଦ୍ୱିତୀୟ ଈଶ୍ୱର କୁହାଯାଏ । ଆପଣ ଏ ଉକ୍ତି ସହ ଏକମତ କି ? ଯଦି ହଁ, ତେବେ କାହିଁକି, ଯଦି ନା ତେବେ କାହିଁକି ?

ଉତ୍ତର : କବିଙ୍କୁ 'ଦ୍ୱିତୀୟ ଈଶ୍ୱର' ବୋଲି କିଏ କହିଥିଲା ମୁଁ ଜାଣେନା । (ଏ ପ୍ରସଙ୍ଗରେ ମୁଁ କହି ରଖେ ଯେ, ମୁଁ ଈଶ୍ୱରରେ ବିଶ୍ୱାସ କରେ ନାହିଁ ।) ଏହା ନିଶ୍ଚୟ କବିମାନଙ୍କ ତିଆରି ଏକ ତୁଳନାପୂର୍ଣ୍ଣ ଅତିଶୟୋକ୍ତି । ସଂସାରରେ କବିର କୌଣସି ଉଚ୍ଚ ବା ବିଶେଷ ସ୍ଥାନ ନାହିଁ ବା ରହିବା ଉଚିତ ନୁହେଁ ।

ପ୍ରଶ୍ନ : ପୁଣି ଯଦି ଆପଣଙ୍କୁ କଳାହାଣ୍ଡି ଯିବାକୁ ଓ କିଛିଦିନ ରହିବାକୁ ଅନୁରୋଧ କରାଯାଏ, ତାହା ହେଲେ କେଉଁ ସ୍ଥାନକୁ ବାଛିବେ ?

ଉତ୍ତର : ଭବାନୀପାଟଣା, ଯେଉଁଠାରେ ମୁଁ ମୋର ଜୀବନର ତିନୋଟି ବର୍ଷ କର୍ମ ଓ

ଅଭିଜ୍ଞତା ବହୁଳ ଜୀବନ କଟାଇଥିଲି। ସେହିଠାରୁ ମୁଁ ମୋର ପ୍ରକୃତ ଜୀବନର ଆରମ୍ଭ ବୋଲି ମୁଁ ମନେ କରେ।

ପ୍ରଶ୍ନ : ଆପଣଙ୍କର ବୌଦ୍ଧିକ ସଂପତ୍ତିର ଉତ୍ତରାଧିକାରୀ ଚୟନ କଲେଣି କି ? ତାହାର ପ୍ରଶିକ୍ଷଣ କାମ ଆରମ୍ଭ କଲେଣି କି ?

ଉତ୍ତର : ମୋ ପାଖରେ ଏପରି କୌଣସି ବିଶେଷ ଭୌତିକ ବା ବୌଦ୍ଧିକ ସଂପତ୍ତି ଅଛି ବୋଲି ମୁଁ ଭାବୁ ନାହିଁ ଯାହା ପାଇଁ ଉତ୍ତରାଧିକାରୀ ଦରକାର। ମୁଁ ସାମାନ୍ୟ ଯେତିକି ଲେଖିଛି ତାହା ପ୍ରକାଶିତ ହୋଇ ସର୍ବସାଧାରଣଙ୍କର ସଂପତ୍ତି। ଏ ସଂପତ୍ତି କେତେ ଦିନ ରହିବ ସେ ବିଷୟରେ ମଧ୍ୟ ମୋର କୌଣସି ଧାରଣା ନାହିଁ।

*ଅଭ୍ୟୁତ୍ଥାନମ୍, ଡିସେମ୍ବର ୨୦୧୧*

# ସାକ୍ଷାତ୍‌କାର : ୮

## ବିଜୟାନନ୍ଦ ସିଂହଙ୍କ ପ୍ରଶ୍ନର ଉତ୍ତର

୧) ମୋର ବାପା ସାହିତ୍ୟିକ ଓ ସାହିତ୍ୟ ଅଧ୍ୟାପକ ହୋଇଥିବାରୁ ଆମ ଘରେ ସବୁବେଳେ ସାହିତ୍ୟିକ ବାତାବରଣ ଥିଲା। ମୋର ପିଲାଦିନେ ଆମ ଘରକୁ ଅନେକ ଲେଖକ ଯିବା ଆସିବା କରୁଥିଲେ। ଆମ ଘରକୁ ସବୁ ଓଡ଼ିଆ ପତ୍ରପତ୍ରିକା ବି ଆସୁଥିଲା ଓ ଘରର ଆଲମାରି ସବୁ ବହିରେ ଭର୍ତ୍ତି ଥିଲା। ଏ ସବୁ ହୁଏତ ମତେ ସାହିତ୍ୟ ଆଡ଼କୁ ଆକର୍ଷିତ କରିଥିଲା।

୨) ମୋର ବାପାଙ୍କର ଲେଖା ବିଷୟରେ କହିବା ମୋ ପକ୍ଷରେ ଧୃଷ୍ଟତା ହେବ। ସେ ବିଶେଷରେ ଅନୁବାଦକ ଓ ବୈୟାକରଣିକ ଭାବରେ ଜଣାଶୁଣା ଥିଲେ। ମୁଁ ଏବେ ବି ସେ ସଂକଳନ କରିଥିବା ଅଭିଧାନ ଓ ବିବିଧ କୋଷ ବ୍ୟବହାର କରେ। ମୁଁ ଭାବୁଛି ତାଙ୍କର ଆତ୍ମଜୀବନୀ 'ସୁଅ ମୁହଁର ପତର' ଗୋଟିଏ ଭଲ ବହି।

୩) ମୁଁ ଅତି ପିଲା ଦିନରୁ କବିତା ଲେଖିବା ଆରମ୍ଭ କରିଥିଲି। ସେତେବେଳର ପତ୍ରପତ୍ରିକାର ସଂପାଦକମାନେ ନୂଆ ଲେଖକମାନଙ୍କୁ ପ୍ରୋତ୍ସାହିତ କରୁଥିଲେ ଓ ବରିଷ୍ଠ ଲେଖକମାନଙ୍କ ସହିତ ଅଳ୍ପ ବୟସର ଲେଖା ମଧ୍ୟ ପ୍ରକାଶ କରୁଥିଲେ। ମୋର ପ୍ରଥମ କବିତା ବୋଧହୁଏ ପ୍ରକାଶ ପାଇଥିଲା ମତେ ଯେତେବେଳେ ୧୩ବର୍ଷ (ବମ୍ବେରୁ ପ୍ରକାଶିତ 'କୁଙ୍କୁମ' ପତ୍ରିକାରେ, ୧୯୪୯ରେ!)।

୪) ୧୯୫୧ରେ ମୋର 'ସ୍ତବକ' ନାଁରେ ଯେଉଁ କବିତା ବହିଟି ପ୍ରକାଶିତ ହୋଇଥିଲା ସେ ସବୁ ପିଲାଳିଆ କବିତା ଥିଲା ଯାହାକୁ ଇଂରେଜୀରେ କହନ୍ତି ଜୁଭେନିଲିଆ। ତାର ବର୍ତ୍ତମାନ କୌଣସି ସାହିତ୍ୟିକ ମୂଲ୍ୟ ନାହିଁ ବୋଲି ମୁଁ ଭାବୁଛି। ସେଥିପାଇଁ ମୁଁ ୧୯୭୦ରେ ଲେଖିଥିବା ଓ ତାର ପରବର୍ଷ ପ୍ରକାଶ ପାଇଥିବା 'ପ୍ରଥମ ପୁରୁଷ'କୁ ହିଁ ମୋର ପ୍ରଥମ କବିତା ବୋଲି କହିଥାଏ।

୫) ୧୯୫୧ରେ ଖ୍ରୀଷ୍ଟ କଲେଜରେ ପଢ଼ା ଆରମ୍ଭ କରିବା ବେଳେ ମୁଁ ସାହିତ୍ୟରେ ଆହୁରି ସକ୍ରିୟ ଅଂଶ ନେଲି। ଆମ କଲେଜରେ ଅଧ୍ୟାପକ ପଠାଣି ପଟ୍ଟନାୟକ ଏକ 'ଅଭ୍ୟୁଦୟ ସାହିତ୍ୟ ସମାଜ' ଗଢ଼ି ସାହିତ୍ୟ ସଭାମାନ କରାଉଥିଲେ। କଲେଜ ସକାଳ

ବେଳା ହେଉଥିବାରୁ କେତେକ ବୟସ୍କ ଲେଖକ ମଧ୍ୟ (ରାଧାମୋହନ ଗଡ଼ନାୟକ, ଭଂଜ କିଶୋର ପଟ୍ଟନାୟକ) ସୌଖୀନ ଛାତ୍ର ଭାବରେ ଯୋଗ ଦେଇଥିଲେ। ସେତେବେଳେ ମାସିକ ପତ୍ରିକା 'ଆସନ୍ତାକାଲି' ଅତ୍ୟନ୍ତ ଲୋକପ୍ରିୟ ଥିଲା ଏବଂ ପ୍ରଜାତନ୍ତ୍ର ଓ ଦୈନିକ ଆଶାରେ ମଧ୍ୟ ସମୃଦ୍ଧ ସାହିତ୍ୟ ପୃଷ୍ଠା ରହୁଥିଲା। ଏ ସବୁ ପତ୍ରପତ୍ରିକା ଯୁବ ଲେଖକମାନଙ୍କୁ ସ୍ଥାନ ଦେଉଥିଲେ ନିଜ ପୃଷ୍ଠାରେ। କଟକରେ ସେତେବେଳେ ଅନେକ ସାହିତ୍ୟ ସଭା ହେଉଥିଲା ଏବଂ ସେଥିରେ ଆମମାନଙ୍କୁ ସକ୍ରିୟ ଭାଗ ନେବାକୁ ଉତ୍ସାହିତ କରା ହେଉଥିଲା।

୬) କଲେଜରେ ପଢ଼ିବା ବେଳେ ମୁଁ ଷ୍ଟୁଡେଣ୍ଟସ ଫେଡେରେଶନର ସଭ୍ୟ ଥିଲି। ଆମମାନଙ୍କର ଚିନ୍ତାଧାରା ସେତେବେଳେ ବାମପନ୍ଥୀ ଥିଲା। ୧୯୫୪ରେ ଆମେ 'ଆଗାମୀ' ନାମରେ ଏକ ପତ୍ରିକା ବାହାର କରୁଥିଲୁ। ଏହାର ସଂପାଦନା ପରିଷଦର ସଭାପତି ଥିଲେ ମନୋଜ ଦାସ, ମୋ ବ୍ୟତୀତ ପରିଷଦର ଅନ୍ୟ ସଭ୍ୟ ଥିଲେ ଅବନୀ କୁମାର ବରାଳ, ବିଶ୍ୱମ୍ଭର ସାମନ୍ତ ଓ ଶିବାଜୀ ପଟ୍ଟନାୟକ। ଏହାର ମୁଦ୍ରାକର ଓ ପ୍ରକାଶକ ଥିଲେ ହରିଶଚନ୍ଦ୍ର ବକ୍ସିପାତ୍ର। ଏ ପତ୍ରିକାର ପ୍ରଥମ ସଂଖ୍ୟା (ନଭେମ୍ବର ୧୯୫୪)ରେ ଆମମାନଙ୍କ ବ୍ୟତୀତ ଅନ୍ୟ ଲେଖକ ଥିଲେ ପ୍ରାଣକୃଷ୍ଣ ପରିଜା, କାଳିନ୍ଦୀ ଚରଣ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ନନ୍ଦିନୀ ଶତପଥୀ, ମନମୋହନ ମିଶ୍ର ଇତ୍ୟାଦି। ୧୯୫୫ରେ ମୁଁ ଏମ୍.ଏ. ପଢ଼ିବା ପାଇଁ ଆଲାହାବାଦ ଚାଲିଗଲି ଏବଂ ଏହି ପତ୍ରିକାରୁ (ଓ ସାହିତ୍ୟରୁ) ମୋର ସଂପର୍କ କଟିଗଲା। 'ଆଗାମୀ' ପତ୍ରିକା ଆଉ କିଛି ବର୍ଷ ଅନିୟମିତ ଭାବରେ ବାହାରି ବନ୍ଦ ହୋଇଯାଇଥିଲା।

୭) ୧୯୫୯ରେ ଚାକିରିରେ ଯୋଗ ଦେଇ ମୁଁ ଓଡ଼ିଶା ଫେରିଲି, ଓ ୧୯୬୩ରୁ ତିନିବର୍ଷ କଳାହାଣ୍ଡିରେ ଥିଲି। ଏଇଟିକୁ ମୋ ଚାକିରି ଜୀବନର ଓ ସଂପୂର୍ଣ୍ଣ ଜୀବନର ମହତ୍ତ୍ୱପୂର୍ଣ୍ଣ ସମୟ ବୋଲି ଭାବେ। ଏହି ସମୟରେ ମୁଁ ଓଡ଼ିଶାର ଗାଁ, ମାଟି, ଚାଷବାସ, ଆଦିବାସୀ ଜୀବନ, ଗଛଲତା ଓ ପଶୁପକ୍ଷୀଙ୍କ ସଂପର୍କରେ ଆସିଲି। ଏହା ପୂର୍ବରୁ ଗାଁ ବିଷୟରେ ମୋର କୌଣସି ଅଭିଜ୍ଞତା ନଥିଲା। ମୁଁ କଳାହାଣ୍ଡିରେ ଥିବା ସମୟରେ ସେଠାରେ ଅକାଳ ପଡ଼ିଥିଲା(୧୯୬୫-୬୬)। ସେ ସମୟର କାମ ମୋ ଜୀବନର ଏକ ବିଶେଷ ଅଭିଜ୍ଞତା। ପରବର୍ତ୍ତୀ ସମୟରେ ମୁଁ 'କଳାହାଣ୍ଡି' ଶୀର୍ଷକ କବିତା ଲେଖିଥିଲି ଯାହା କିଛି ଲୋକ ଜାଣନ୍ତି କିନ୍ତୁ କଳାହାଣ୍ଡିରେ କରିଥିବା କାମ ଅଜଣା ରହିଯିବ।

୮) କଳାହାଣ୍ଡିରୁ ଭୁବନେଶ୍ୱର ଫେରିବା ପରେ ମୁଁ କିଛି ଦିନ ଚିତ୍ର କରିବାରେ ମନ ଦେଇଥିଲି। ମୁଁ ଆଗରୁ ମଧ୍ୟ କିଛି କିଛି ଚିତ୍ର କରୁଥିଲି ଏବଂ ଆଲାହାବାଦରେ ପଢ଼ିବା ସମୟରେ ପେଣ୍ଟିଙ୍ଗ ଡିପ୍ଲୋମା କ୍ଲାସରେ ଯୋଗ ଦେଇଥିଲି।(ସେଠାରେ ମୋର ଅନ୍ୟତମ ସହପାଠୀ ଥିଲେ ଶରତ ପୂଜାରୀ)। ବଂଧୁ ଅସୀମ ବସୁ ଓ ଦିନନାଥ ପାଠୀଙ୍କ ଆଗ୍ରହରେ ମୋର ଚିତ୍ରର ମଧ୍ୟ ଏକ ଏକକ ପ୍ରଦର୍ଶନୀ ହୋଇଥିଲା ୧୯୭୧ରେ। ୧୯୭୩ରେ ମୁଁ ଦିଲ୍ଲୀ ଚାଲିଆସିଲି ଏବଂ ସୁବିଧା ସୁଯୋଗ ଅଭାବରୁ ଚିତ୍ର ଆଙ୍କିବା ଛାଡ଼ି ଦେଲି।

୯) ଚିତ୍ର କରିବା ଭଳି ମୁଁ କେବେ କେବେ ରଂଗମଞ୍ଚ ଓ ଟେଲିଭିଜନରେ ଅଭିନୟ ମଧ୍ୟ କରିଛି। ସେ ସବୁ ବିଷୟରେ ମୋର ନିଜର ମନୋରଂଜନ ପାଇଁ ଓ ମୋର ନିର୍ଦ୍ଦେଶକ ବନ୍ଧୁଙ୍କର ଅନୁରୋଧ ରକ୍ଷା କରି। ଏହା ଦ୍ଵାରା ଅବଶ୍ୟ ମୋର ମଂଚ ଓ ଫିଲ୍ମ କଳା ବିଷୟରେ ଜ୍ଞାନ ଓ ଅଭିଜ୍ଞତା ହୋଇଛି।

୧୦) ଫିଲ୍ମ ସହିତ ମୋର ଅନ୍ୟ ଭାବରେ ମଧ୍ୟ ସଂପର୍କ ରହିଛି। ୧୯୮୦ ଦଶକରେ ମୁଁ କେତେ ଥର ଜାତୀୟ ଫିଲ୍ମ ପୁରସ୍କାର ଜୁରିର ସଭ୍ୟ ଥିଲି ଏବଂ ଚିଲଡ୍ରେନ୍ସ ଫିଲ୍ମ ସୋସାଇଟି କାର୍ଯ୍ୟକାରିଣୀ ସଭ୍ୟ ଥିଲି। ମୋର ଉଦ୍ୟମରେ ୧୯୮୭ରେ ଭୁବନେଶ୍ଵରରେ ଏକ ଆନ୍ତର୍ଜାତିକ ଶିଶୁ ଚଳଚ୍ଚିତ୍ର ଉତ୍ସବ ହୋଇଥିଲା ଏବଂ ମୁଁ ଶିଶୁ ଚଳଚ୍ଚିତ୍ର ଉପରେ ଏକ ବହି ସଂପାଦନା କରିଥିଲି। ଏ ସବୁ ମୋ ପାଇଁ ପ୍ରୀତିକର ଅନୁଭବ ଓ ଅଭିଜ୍ଞତା ଥିଲା।

୧୧) ୧୯୭୦ରେ ମୁଁ ପୁଣି କବିତା ଲେଖା ଆରମ୍ଭ କଲା ବେଳେ ଭୁବନେଶ୍ଵର ମୋର ବିଶେଷ ବନ୍ଧୁ ଥିଲେ ଅଖିଳମୋହନ ପଟ୍ଟନାୟକ, ଅନନ୍ତ ମହାପାତ୍ର, ବିବେକ ଜେନା ପ୍ରମୁଖ। ସେମାନଙ୍କର ଆଗ୍ରହରେ 'ପ୍ରଥମ ପୁରୁଷ' ପ୍ରକାଶ ପାଇଲା, ପ୍ରକାଶକ ଥିଲେ ଅନନ୍ତ ମହାପାତ୍ର। ସେ ଏହାକୁ ସୁନ୍ଦର ଭାବରେ ଛପାଇଥିଲେ ସତ୍ୟଜିତ ରାୟଙ୍କ ପ୍ରଚ୍ଛଦପଟ ସହିତ। ସେ ସମୟରେ ନୂଆ ହୋଇ ପ୍ରକାଶ ପାଉଥିବା ବହିମାନଙ୍କର ସମାଲୋଚନା ପତ୍ରପତ୍ରିକାରେ ପ୍ରକାଶ ପାଉଥିଲା। 'ପ୍ରଥମ ପୁରୁଷ'ର ସମାଲୋଚନା ଅନେକ ବିଶିଷ୍ଟ ଲେଖକ କରିଥିଲେ, ଯଥା ସଚ୍ଚି ରାଉତରାୟ, ନିତ୍ୟାନନ୍ଦ ମହାପାତ୍ର, ଅଖିଳ ମୋହନ ପଟ୍ଟନାୟକ, ହର ପ୍ରସାଦ ଦାସ। ୧୯୮୧ରେ ଏହି ବହିର ଦ୍ଵିତୟ ସଂସ୍କରଣ ବାହାରିଥିଲା ଖଗେଶ୍ଵର ମହାପାତ୍ରଙ୍କ ତତ୍ତ୍ୱାବଧାନରେ ଗିରିବାଳା ମହାନ୍ତିଙ୍କ ମୁଖବନ୍ଧ ସହ। ଏଇ ମାତ୍ର 'ଟାଇମ ପାସ' ପ୍ରକାଶନ ସଂସ୍ଥାରୁ ତାର ତୃତୀୟ ସଂସ୍କରଣ ପ୍ରକାଶ ପାଇଛି ଗଣେଶ୍ଵର ମିଶ୍ରଙ୍କ ମୁଖବନ୍ଧ ସହ। ଏହା ଗୋଟିଏ ଖୁସିର ଖବର କାରଣ ଅନେକ ଲେଖକଙ୍କର ବହି ସବୁ ଆଉ ବଜାରରେକିଣିବାକୁ ମିଳୁନାହିଁ।

୧୨) ଓଡ଼ିଆ ଯାତ୍ରା, ନାଟକ ପ୍ରତି ମୋର ସବୁବେଳେ ଆଗ୍ରହ ଥିଲା ଏବଂ କଟକରେ ମୋର ସ୍କୁଲ କଲେଜ ବେଳେ ଏ ସବୁ ଦେଖିବାର ସୁଯୋଗ ମିଳୁଥିଲା। ମୁଁ ୧୯୬୦ରେ ଦୁଇଟି ଏକାଙ୍କିକା ଲେଖିଥିଲି ଯାହା ପରବର୍ତ୍ତୀ ସମୟରେ 'ପୂର୍ବରାଗ' ନାଁରେ ଲାର୍କବୁକ୍‌ସରୁ ପ୍ରକାଶିତ ହୋଇଥିଲା। ମୁଁ ମୋର ପ୍ରଥମ ପୂର୍ଣ୍ଣାଙ୍ଗ ନାଟକ 'ସୂର୍ଯ୍ୟାସ୍ତ ପୂର୍ବରୁ' ଲେଖିଲି ୧୯୭୧ରେ ଏବଂ ଏହା ପ୍ରଥମେ ପ୍ରକାଶ ପାଇଥିଲା କସ୍ତୁରୀ ଚରଣ ଦାସଙ୍କ ସଂପାଦିତ କଲିକତାରୁ ବାହାରୁଥିବା ପତ୍ରିକା 'ନବରବି'ରେ। ଆକାଶବାଣୀରେ କାମ କରୁଥିବା ଶିବଶେଖର ସରକାର ଏହାର ବଙ୍ଗଳା ଅନୁବାଦ କରିଥିଲେ ଏବଂ ଏହା କଲିକତାରେ ମଞ୍ଚସ୍ଥ ହୋଇଥିଲା ୧୯୭୨ରେ। ପରେ ଏହା କଟକ ଆକାଶବାଣୀରୁ ପ୍ରଚାରିତ ହୋଇ କୌଣସି ପୁରସ୍କାର ପାଇଥିବାରୁ ଏହାର ଅନୁବାଦ ଦିଲ୍ଲୀକୁ ପଠାଯାଇଥିଲା। ମୁଁ

୧୯୭୩ରେ ଦିଲ୍ଲୀକୁ ଆସିଲି ଏବଂ ୧୯୭୬ରେ 'ସୂର୍ଯ୍ୟାସ୍ତ ପୂର୍ବରୁ'ର ହିନ୍ଦୀ ଅନୁବାଦ ଏଠାରେ ମଞ୍ଚସ୍ଥ ହେଲା। ଏହା ସଫଳ ହେବାର ଅନ୍ୟତମ କାରଣ ଥିଲା ଏହାର ନିର୍ଦ୍ଦେଶନା ଦେଇଥିଲେ ରାମଗୋପାଳ ବଜାଜ ଓ ମୁଖ୍ୟ ଭୂମିକାରେ ଅଭିନୟ କରିଥିଲେ ଓମ୍ ପୁରୀ।

୧୩) ୧୯୭୨ରେ ମୋର ଗୋଟିଏ ଏକାଙ୍କିକାର ନିର୍ଦ୍ଦେଶନା ଦେଇଥିଲେ ଅନନ୍ତ ମହାପାତ୍ର।ଏଥିରେ ସେ ମୋତେ ଗୋଟିଏ ଭୂମିକା ମଧ୍ୟ ଦେଇଥିଲେ। ଦିଲ୍ଲୀରେ 'ସୂର୍ଯ୍ୟାସ୍ତ ପୂର୍ବରୁ'ର ପ୍ରସ୍ତୁତି ସମୟରେ ମୁଁ ରଙ୍ଗମଞ୍ଚକୁ ନିକଟରୁ ଦେଖିବାର ସୁଯୋଗ ପାଇଲି ଏବଂ ଏହା ମୋର ପରବର୍ତ୍ତୀ ନାଟକ ଲେଖିବାରେ ସହାୟକ ହୋଇଥିଲା। ମୁଁ ମୋର ଶେଷ ନାଟକ 'ସୁନ୍ଦର ଦାସ' ଲେଖିଥିଲି ୧୯୯୩ରେ, ଏହା ଇତିହାସ ଭିତ୍ତିକ। ଏ ନାଟକ ପାଇଁ ମତେ ଇଣ୍ଡିଆ ଅଫିସ ଲାଇବ୍ରେରୀରୁ ଆରମ୍ଭ କରି ଶ୍ରୀରାମ କଲେଜ ଲାଇବ୍ରେରୀକୁ ଯିବାକୁ ହୋଇଥିଲା। ଏହି ଗବେଷଣା ଲବ୍ଧ ବିଷୟକୁ ନେଇ ମୁଁ ଗୋଟିଏ ଉପନ୍ୟାସ ଲେଖି ପାରିଥାନ୍ତି, କିନ୍ତୁ କିଛି ଦିନ ଆଗରୁ 'ଦେଶ କାଳ ପାତ୍ର' ବାହାରିଥିବାରୁ ଏହାକୁ ନାଟକ ଭାବରେ ଲେଖିବାକୁ ଠିକ୍ କଲି।

୧୪) ୧୯୭୯ରୁ ୧୯୯୦ ମୁଁ ଓଡ଼ିଶା ଚିତ୍ରକଳା ବିଷୟରେ ଗବେଷଣା କରିଥିଲି ଏବଂ ଏ ବିଷୟରେ ମୋର ତିନିଟି ବହି ପ୍ରକାଶ ପାଇଛି, ପୁରୀ ପେଣ୍ଟିଙ୍ଗସ୍, ଚିତ୍ର-ପୋଥି ଓ ପାମ୍ ଲିଫ୍ ମିନିଏଚର୍ସ୍। ଶେଷ ବହିଟିରେ ମୋର ସହଲେଖିକା ଜୋଆନ୍ନା ଉଇଲିଆମ୍ସ୍। ଏ ବହିଟି ଧରାକୋଟ ମୁଣ୍ଡମରାଇର ତାଳପତ୍ର ଚିତ୍ରକାର ରଘୁନାଥ ପୃଷ୍ଟିଙ୍କ ବିଷୟରେ। ସେ ଉନବିଂଶ ଶତାବ୍ଦୀର ଲୋକ ହୋଇଥିବାରୁ ମତେ ସେତେବେଳେ ସେ ସମୟର ଓଡ଼ିଶା ବିଷୟରେ ପଢ଼ିବାକୁ ହୋଇଥିଲା। ଏହା ଓଡ଼ିଶା ପାଇଁ ଏକ ଯୁଗାନ୍ତକାରୀ ସମୟ ଥିଲା ଓ ମୁଁ ଏହାକୁ ନେଇ ଲେଖିବା ଠିକ୍ କଲି, ଯାହାର ପରିଣତି ହେଲା 'ଦେଶ କାଳ ପାତ୍ର'।

୧୫) ହଁ, ମୁଁ ମୋର ପ୍ରଥମ ଗଳ୍ପ ଲେଖିଥିଲା ଅନେକ ଡେରିରେ। ମୋର ପ୍ରଥମ ଗଳ୍ପ 'ଶବ୍ଦଭେଦ' ପ୍ରକାଶ ପାଇଥିଲା ୧୯୮୦ରେ। ମୁଁ ସେ ପର୍ଯ୍ୟନ୍ତ ଯେଉଁ ପ୍ରକାରର କବିତା ଲେଖୁଥିଲି (ପ୍ରେମ, ମୃତ୍ୟୁ, ସମୟକୁ ନେଇ) ମୋର ମନେ ହୋଇଥିଲା ଯେ ମୋର କବିତାରେ ସମାଜମନସ୍କ ବିଷୟ ଲେଖିପାରିବି ନାହିଁ। ମୁଁ ତେଣୁ ଏ ଭଳି ବିଷୟକୁ ନେଇ ଗଳ୍ପ ଲେଖିଲି ଯାହା 'ଭବନାଥ ଏବଂ ଅନ୍ୟମାନେ' ବହିରେ ସଂକଳିତ ହୋଇଛି। ଏଥିରେ ଲକ୍ଷ୍ୟ କରି ହେବ ଯେ ଏହି ଗଳ୍ପମାନଙ୍କରେ ପ୍ରେମ ଗଳ୍ପ ନାହିଁ ବରଂ ଅଛି ରାଜନୀତି, ବର୍ଣ୍ଣ ବ୍ୟବସ୍ଥା, ନାରୀ ନିର୍ଯାତନା ଇତ୍ୟାଦିକୁ ନେଇ ଗଳ୍ପ। ପରେ ଅବଶ୍ୟ ମୁଁ ଉପଲବ୍ଧି କଲି ଯେ କବିତାରେ ମଧ୍ୟ ମୁଁ ଏ ସବୁ ବିଷୟରେ ଲେଖି ପାରିବି।

୧୬) ମୁଁ ବିଭିନ୍ନ ସମୟରେ କିଛି କିଛି ଅନୁବାଦ କରିଛି। କିନ୍ତୁ ସେ ସବୁ ଆକସ୍ମିକ ଭାବରେ, ବ୍ୟକ୍ତିଗତ ଅନୁରୋଧ ଓ ସଂପର୍କ ଜନିତ, ବିଧିବଦ୍ଧ ଭାବରେ ନୁହେଁ। ଏବେ ପୁରୁଣା କାଗଜକୁ ଦେଖିଲି ୧୯୫୪ରେ ଚିନ୍ତାମଣି ପାଣିଗ୍ରାହୀ ମତେ ଲୁ ଶୁନ୍‌ଙ୍କର ଗୋଟିଏ ଗଳ୍ପର ଅନୁବାଦ କରିବାକୁ ଦେଇଥିଲେ ଯାହା 'ମୋର ସେଇ ଗାଁଟି' ଶିରୋନାମାରେ ପ୍ରକାଶିତ ହୋଇଥିଲା ତାଙ୍କ ଦ୍ୱାରା ସଂପାଦିତ ପତ୍ରିକା 'ଶାନ୍ତି ସମାଚାର'ରେ। ୧୯୮୩ରେ ମୋର ସଂପାଦନାରେ ଓଡ଼ିଆ କ୍ଷୁଦ୍ରଗଳ୍ପରଇଂରେଜୀ ଅନୁବାଦ ବାହାରିଥିଲା ଯାହା ପାଇଁ ମୁଁ କାଳିନ୍ଦୀ ଚରଣ ପାଣିଗ୍ରାହୀ ଓ ବାମାଚରଣ ମିତ୍ରଙ୍କର ଗଳ୍ପ ଅନୁବାଦ କରିଥିଲି। ଥରେ ସ୍ୱିଡେନ ଯାଇଥିବା ସମୟରେ ସେଠାରେ କବି ଓ୍ୱେର୍ନର ଆସ୍‌ପେନ୍‌ଷ୍ଟ୍ରମଙ୍କର କବିତା ଭଲ ଲାଗିଥିଲା ଏବଂ ତାଙ୍କ କବିତାର ଅନୁବାଦ କରି 'ସ୍ୱପ୍ନବିଚାର' ବହି ବାହାର କରିଥିଲି। ୧୯୯୦ରେ ଆର୍ଲିନ ଜାଇଦ୍ ଭାରତୀୟ ନାରୀକବିମାନଙ୍କର କବିତା ଅନୁବାଦ କରିବା ବେଳେ ଓଡ଼ିଆ କବିତା ପାଇଁ ମୋର ସହାୟତା ନେଇଥିଲେ। ଓଡ଼ିଆ ନାରୀ କବିଙ୍କର ଏହି ସଂକଳନଟି 'ଅଣର ଦି ସାଇଲେଣ୍ଟସନ୍' ନାଁରେ ପ୍ରକାଶ ପାଇଥିଲା ୧୯୯୨ରେ। ନିକଟରେ ଯୁବା ନାରୀ କବିଙ୍କର ଏକ ଇଂରେଜୀ ଅନୁବାଦ ସଂକଳନ ପାଇଁ ମୁଁ କିଛି କବିତା ଅନୁବାଦ କରିଥିଲି। ୨୦୦୮ରେ ପ୍ରକାଶ ପାଇଥିଲା ମୋର ବାସୁଦେବ ସୁନାନୀଙ୍କ କବିତାର ଇଂରେଜୀ ଅନୁବାଦ 'କାସ୍ଟଆଉଟ୍'। ଏ ସବୁ ବ୍ୟତୀତ ମୁଁ ମୋ ନିଜର ଲେଖାର କିଛି ଅନୁବାଦ କରିଥିଲି, ଯାହା ଅନେକ ଦିନରୁ କରୁନାହିଁ। ମୋର ଅନୁବାଦ କାମ ବାସ୍ ଏତିକି।

୧୭) ତରୁଣ ପୀଢ଼ୀର ଲେଖକମାନଙ୍କୁ ମୋର ପରାମର୍ଶ ସେମାନେ ମୋ ଭଳି ବୟସ୍କ ଲୋକଙ୍କ ପରାମର୍ଶରୁ ଦୂରରେ ରହନ୍ତୁ।

୧୮) ୧୯୯୧ ମସିହାରେ ମୁଁ ଅନେକ ଦିନ ଶଯ୍ୟାଶାୟୀ ଥିଲି ଓ ଟେବୁଲ ପାଖରେ ବସି ଲେଖାପଢ଼ା କରିପାରୁ ନଥିଲି। ସେତିକିବେଳେ ବିଛଣାରେ ଶୋଇ ଶୋଇ ମୁଁ କିଛି ଛୋଟ ପିଲାଙ୍କ କବିତା ଓ ନନ୍‌ସେନ୍ସ କବିତା ଲେଖିଥିଲି। ଏଗୁଡ଼ିକ ୧୯୯୩ରେ ସଂକଳିତ ହୋଇ ପ୍ରକାଶିତ ହୋଇଥିଲା 'ଆଲିମାଳିକା' ଓ 'ଆଁଳୁକୁଚି ମାଳୁକୁଚି' ନାଁରେ। ପରବର୍ତ୍ତୀ ସମୟରେ ପିଲାଙ୍କ ପାଇଁ ଲେଖିଥିବା କବିତା 'ଅନାବନା' ନାଁରେ ପ୍ରକାଶିତ ହୋଇଛି। ନିକଟରେ ମୁଁ ପୁଣିଥରେ ଶଯ୍ୟାଶାୟୀ ହୋଇଥିବା ବେଳେ ପିଲାଙ୍କ ପାଇଁ ଯେଉଁ 'ଆନମାନ' କବିତା ସଂକଳନ ଲେଖିଛି, ତାହା ପ୍ରକାଶ ଅପେକ୍ଷାରେ।

ଏ ସଂପର୍କରେ ମୁଁ କହିବାକୁ ଚାହିଁବି ଯେ ଓଡ଼ିଶାରେ ଶିଶୁ ସାହିତ୍ୟ ଲେଖକଙ୍କର ଆଦର ଓ ସମ୍ମାନ ନାହିଁ। ଆମର କୌଣସି ବିଶିଷ୍ଟ ଲେଖକ ପିଲାଙ୍କ ପାଇଁ ଲେଖିବାକୁ ଚାହାନ୍ତି ନାହିଁ। ଏହାର ଓଲଟା ହେଲା ଯେ ରବୀନ୍ଦ୍ର ନାଥଙ୍କ ସମେତ ସବୁ ବିଖ୍ୟାତ ବଙ୍ଗଳା ଲେଖକ ପିଲାଙ୍କ ପାଇଁ ବହି ଲେଖିଛନ୍ତି।

ସେହିପରି ସାହିତ୍ୟରେ 'ନନ୍‌ସେନ୍‌ସ୍' ବୋଲି ଯେଉଁ ବିଭାଗ ଅଛି ସେଥିରେ ମଧ୍ୟ ଓଡ଼ିଆ ସାହିତ୍ୟ ଅବହେଳିତ। ନିକଟରେ ପ୍ରକାଶିତ ସୁମନ ଶତପଥୀ ସଂପାଦିତ 'ତିନିମଂଜିକା' ବହି ଏହାର ଏକ ଉଦାହରଣ।

୧୯) ନା, 'ଦେଶ କାଳ ପାତ୍ର' ଭଳି ଆଉ ଏକ ବହି ଲେଖିବାର ଯୋଜନା ନାହିଁ। କିଛି ବର୍ଷ ହେଲା ମୁଁ କିଛି ଲେଖା ଲେଖି କରି ନାହିଁ ଚଳେ। ଯଦି ସମ୍ଭବ ହୁଏ ତେବେ ମୋର ଅଧା ରହିଥିବା କିଛି ଲେଖାକୁ ସଂପୂର୍ଣ୍ଣ କରିବି।

୨୦) ମୋର ନିଜ ଲେଖା ବିଷୟରେ କୌଣସି ଆଲୋଚନା କରିବାରେ ମୋର ଆଦୌ ଆଗ୍ରହ ନାହିଁ। କେଉଁ ପୃଷ୍ଠଭୂମି ଓ ପରିବେଶରେ ଗୋଟିଏ ଗଳ୍ପ ବା କବିତା ଲେଖା ଯାଇଥିଲା ତା ଜାଣି ପାଠକର କୌଣସି ଲାଭ ନାହିଁ। ପାଠଟି ହିଁ ସବୁ କିଛି, ପାଠକ ସେଥିରୁ ଯାହା ବୁଝିଲା ସେତିକି। କୌଣସି ଲେଖକ କେବେହେଲେ ନିଜର ଲେଖାକୁ ବୁଝାଇ ପାଠକ ବା ସମାଲୋଚକଙ୍କୁ ସନ୍ତୁଷ୍ଟ କରିପାରିନାହାଁନ୍ତି। ଲେଖାଟି ପ୍ରକାଶିତ ହେବା ପରେ ତା ସର୍ବସାଧାରଣଙ୍କର ସଂପତ୍ତି, ସେଥିରୁ ଯେ ଯେତିକି ପାଇଲା ତାର ପ୍ରାପ୍ୟ ସେତିକି।

୨୧) ସାହିତ୍ୟିକ ପୁରସ୍କାର (ବା ଯେ କୌଣସି ପୁରସ୍କାର) ସବୁବେଳେ ବିବଦମାନ। ପୁରସ୍କାର ପ୍ରାପ୍ତ ପୁସ୍ତକ(ଲୋକ) ଯେ ସବୁଠାରୁ ଶ୍ରେଷ୍ଠ ପୁସ୍ତକ(ଲୋକ) ତା ସବୁବେଳେ ଠିକ୍ ନୁହେଁ। ଅନ୍ୟ ଭାଷାରେ ପୁରସ୍କାର ପ୍ରାପ୍ତ ପୁସ୍ତକର ବିକ୍ରି ବଢ଼ିଯାଏ, ଓଡ଼ିଆରେ ତା ମଧ୍ୟ ହୁଏ ନା। ସାମାନ୍ୟ ଟଙ୍କା ପାଇବା ଓ ସାମୟିକ ଖବରକାଗଜରେ ନାଁ ବାହାରିବା ବ୍ୟତୀତ ପୁରସ୍କାରର ବୋଧହୁଏ ଆଉ କୌଣସି ମୂଲ୍ୟ ନାହିଁ। ଅବଶ୍ୟ ଅନେକ ପୁରସ୍କାର ପ୍ରାପ୍ତ ଲେଖକ କହନ୍ତି ଯେ ଯଦି ସେମାନେ ପୂର୍ବରୁ ପୁରସ୍କାର ପାଇଥାନ୍ତେ ତା ହେଲେ ଆହୁରି ଉତ୍ସାହର ସହିତ ଲେଖିଥାନ୍ତେ। ତେବେ ସେମାନେ ଯେ ବିନା ପୁରସ୍କାରରେ ଲେଖିବାରେ ଅବହେଳା କରିନାହାନ୍ତି ତାହା ତାଙ୍କର ଏ କଥାକୁ ଖଣ୍ଡନ କରୁଛି।

ହୁଏ ତ ପୁରସ୍କାରର କିଭଳି ଏକ ଅହେତୁକ ସାମାଜିକ ସ୍ୱୀକୃତି ଓ ସମ୍ମାନ ଅଛି ଯେଉଁଥିପାଇଁ ତା ପଛରେ ଦୌଡ଼ ଲାଗିଥାଏ।

୨୨) ଆମମାନଙ୍କର ଧାରଣା ଯେ ଯେଉଁ ଓଡ଼ିଆ ଲେଖକର ବହି ହିନ୍ଦୀରେ ଅନୁବାଦ ହୋଇ ବାହାରିଲା ସେ ଜାତୀୟ ସ୍ତରର ଲେଖକ, ଯାହାର ବହି ଇଂରେଜୀରେ ବାହାରିଲା ସେ ଆନ୍ତର୍ଜାତିକ ଲେଖକ। ଏହା ଏକ ଅତ୍ୟନ୍ତ ଭ୍ରମାତ୍ମକ ଧାରଣା। ଓଡ଼ିଶା ବାହାରର ଉନ୍ନାସିକ ଲେଖକ ଓ ସାଧାରଣ ପାଠକ ଓଡ଼ିଆ ସାହିତ୍ୟର ଧାର ଧାରନ୍ତି ନାହିଁ। ଆମର ଅତି ପଡ଼ୋଶୀ ବଙ୍ଗଳାର ଲେଖକ ଓ ପାଠକ କେବେହେଲେ ଓଡ଼ିଆ ସାହିତ୍ୟରେ ଆଗ୍ରହୀ ଥିବା ଦେଖାଯାଏ ନାହିଁ। ଓଡ଼ିଆ ଲେଖକର

ନିର୍ବାଚନ ମଣ୍ଡଳୀ ହେଉଛି ଓଡ଼ିଶା ହିଁ। ଯଦି ତାର ବହି ଅନୁବାଦରେ କିଛି ଲୋକ ପଢ଼ିଲେ ତା ଉପୁରି ମାତ୍ର।

ଜଣେ ଲେଖକ ଓଡ଼ିଆ ସାହିତ୍ୟର ବିକାଶରେ ସାହାଯ୍ୟ କରି ପାରିବ ଓଡ଼ିଆରେ ଲେଖି। ଏ ବିଷୟରେ ବୈଷୟିକ ସାହାଯ୍ୟ କରିପାରିବେ ସେଇମାନେ ଯେଉଁମାନେ ହାତରେ କ୍ଷମତା ଅଛି।

ପ୍ରଥିତଯଶା କବି ଜଗନ୍ନାଥ ପ୍ରସାଦ ଦାସ(ଜେପି)ଙ୍କର ବହୁମୁଖୀ ପ୍ରତିଭାର ଉଜ୍ଜ୍ୱଳ ସ୍ୱାକ୍ଷର ସାହିତ୍ୟର ଅନ୍ୟ ବିଭାଗରେ ମଧ୍ୟ ଦେଖିବାକୁ ମିଳେ । ପ୍ରବନ୍ଧ, ବକ୍ତୃତା ଓ ସାକ୍ଷାତ୍‌କାର ମାଧ୍ୟମରେ ଓଡ଼ିଆ ସାହିତ୍ୟକୁ ବିଭିନ୍ନ ଭାବରେ ସେ ଋଦ୍ଧିମନ୍ତ କରିଛନ୍ତି ଏବଂ ପାଠକମାନଙ୍କର ଚିନ୍ତା ଓ ଚେତନାର ଦିଗନ୍ତକୁ ପ୍ରସାରିତ କରିପାରିଛନ୍ତି । ଗଭୀର ଅଧ୍ୟୟନ ଓ ମୌଳିକ ଚିନ୍ତାପ୍ରସୂତ ତାଙ୍କର ମତାମତ ପାଠକମାନଙ୍କୁ ସାହିତ୍ୟ, ସଂସ୍କୃତି ଓ ଇତିହାସକୁ ଭିନ୍ନ ଦୃଷ୍ଟିକୋଣରୁ ବିଚାର କରିବା ପାଇଁ ଅନୁପ୍ରେରିତ କରିଥାଏ । ତାଙ୍କ ଚିନ୍ତାଜଗତ ସଂପର୍କରେ ଏହି ପୁସ୍ତକରେ ସ୍ଥାନିତ ଭାଷଣ, ପ୍ରବନ୍ଧ ଓ ସାକ୍ଷାତ୍‌କାରଗୁଡ଼ିକରୁ ପାଠକମାନେ ଏକ ସମ୍ୟକ୍ ଧାରଣା ପାଇ ପାରିବେ ।

ଜଗନ୍ନାଥ ପ୍ରସାଦ ଦାସ କବି, ଗାଳ୍ପିକ, କଳା ଐତିହାସିକ, ନାଟ୍ୟକାର ଭାବରେ ଓଡ଼ିଶା ଓ ଓଡ଼ିଶା ବାହାରେ ସୁପରିଚିତ । ତାଙ୍କ ରଚିତ ଅନେକ ପୁସ୍ତକ ଇଂରାଜୀ ଓ ଅନ୍ୟାନ୍ୟ ଭାରତୀୟ ଭାଷାରେ ଅନୂଦିତ ହୋଇ ପାଠକୀୟ ଆଦୃତି ଲାଭ କରିଛି । ସେ ବହୁ ପୁରସ୍କାର ଓ ସମ୍ମାନରେ ଭୂଷିତ । ୨୦୦୭ ମସିହାରେ ତାଙ୍କୁ ସରସ୍ୱତୀ ସମ୍ମାନ ପ୍ରଦାନ କରାଯାଇଥିଲା ।




Price : 120/-